ନାତ୍ସୀ କନ୍ସେଣ୍ଟ୍ରେସନ୍ କ୍ୟାମ୍ପ

# ଆଉସ୍‌ଭିତ୍‌ଜ୍

## ଏକ ବିଡମ୍ବିତ ଭୂମିର ସତ୍ୟ କାହାଣୀ



ଲେଖିକା- ସାରା ନୋୟେଆର୍ଗ ପ୍ରିଷ୍ଟିକ୍

ଭାଷାନ୍ତର- ପ୍ରଫୁଲ୍ଲ ଦାସ



ବ୍ରିଟିଶ ସାମ୍ରାଜ୍ୟବାଦ ଓ କନିକାର ରାଜତନ୍ତ୍ରବାଦ ବିରୁଦ୍ଧରେ ଛାତ୍ରାବସ୍ଥାରୁ ଆରମ୍ଭ ହୋଇଥିବା ସଂଗ୍ରାମ ଏବେ ବି ଅବ୍ୟାହତ । ଗାନ୍ଧିବାଦୀ ଜୀବନଚର୍ଯ୍ୟା ଓ ମାର୍କ୍ସବାଦୀ ଦର୍ଶନ ପ୍ରତି ଅଟଳ ବିଶ୍ୱାସ ଓ ନିଷ୍ଠା, ସ୍ୱାଧୀନତା ସଂଗ୍ରାମରେ ସଶସ୍ତ୍ର ବୈପ୍ଳବିକ ଆନ୍ଦୋଳନର ଅବଦାନ ସମ୍ପର୍କରେ ବିଶେଷ ଗବେଷଣା ଓ ସଂକଳନ । ଅଦ୍ୟାବଧି ପ୍ରକାଶିତ ୧୫ ଗୋଟି ପୁସ୍ତକ ମଧ୍ୟରୁ ୧୧ ଗୋଟି ସମର ସାହିତ୍ୟ ପର୍ଯ୍ୟାୟର । 'ଭାରତର ସଶସ୍ତ୍ର ମୁକ୍ତି ସଂଗ୍ରାମ' ସର୍ବଶ୍ରେଷ୍ଠ କୃତି ।

ଜନ୍ମ, ୩୦ ସେପ୍ଟେମ୍ବର ୧୯୨୭, କରିସାହି, ରାଜକନିକା ।

ନାତ୍‌ସୀ କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପ

# ।। ଆଉସ୍‌ଭିତ୍‌ଜ୍ ।।

## ଏକ ବିଡମ୍ବିତ ଭୂମିର ସତ୍ୟ କାହାଣୀ

(ଜଣେ ବନ୍ଦିନୀଙ୍କ ଆତ୍ମକଥା)

ଲେଖିକା
ସାରା ନୋମ୍ୱେଆର୍ଗ ପ୍ରିଷ୍ଟିକ୍

ଭାଷାନ୍ତର
ପ୍ରଫୁଲ୍ଲ ଦାସ

ଲୋହିଆ ଏକାଡେମୀ ଟ୍ରଷ୍ଟ
ଭୁବନେଶ୍ୱର

ଆଉସ୍‌ଭିତ୍‌ଜ୍‌: ଏକ ବିଡମ୍ବିତ ଭୂମିର ସତ୍ୟ କାହାଣୀ
ଲେଖିକା : ସାରା ନୋମ୍ବେଆର୍ଗ ପ୍ରିଷ୍ଟିକ୍
ଭାଷାନ୍ତର : ପ୍ରଫୁଲ୍ଲ ଦାସ
ପ୍ରକାଶକ : ଲୋହିଆ ଏକାଡେମୀ ଟ୍ରଷ୍ଟ, ଭୁବନେଶ୍ୱର
ଅଙ୍ଗସଜ୍ଜା : ଆକୃତି ଗ୍ରାଫିକସ୍, ଦାସ ସାହି, କଟକ - ୧୨
ପ୍ରଥମ ପ୍ରକାଶ : ୨୦୦୮
ମୂଲ୍ୟ : ଟ.୧୦୦/-ଙ୍କା
//----------------------------------//
**AUSCHWITZ**
**YEKA BIDAMBITA BHUMIRA SATYA KAHANI**
Writer : Sara Nomberg-Przytyk
Translation : Prafulla Das
Publisher : Lohia Academy Trust, BBSR
DTP & Printing : AKRUTI GRAPHICS
Dash Sahi, Sankarpur, Cuttack - 753 012
Year of Publication : 2008
Price : Rs.100/-

ଆଉସ୍‌ଭିତ୍‌ଜ୍‌: ଏକ ବିଡ଼ମ୍ବିତ ଭୂମିର ସତ୍ୟ କାହାଣୀ

ଲେଖିକା - ସାରା ନୋମ୍ୱେଆର୍ଗ ପ୍ରିଷ୍ଟିକ୍

ସଂପାଦନା - ଏଲି ଫେଫରକ୍ରୋନ୍ ଏବଂ ଡେଭିଡ୍ ଏଚ୍. ହର୍ଚ୍ଚ

ଇଂରାଜୀ ଅନୁବାଦ - ରୋଜ୍‌ଲିନ୍ ହର୍ଚ୍ଚ



AUSCHWITZ: TRUE TALES FROM A GROTESQUE LAND by Sara Nomberg-Prztyk, edited by Eli Pfefferkorn and David H.Hirsch. Translated in English by Roslyn Hirsch. 

This edition has been published in the Oriya language courtesy of the University of North Carolina Press. www.uncpress.unc.edu

# ଭୂମିକା

ଦ୍ୱିତୀୟ ବିଶ୍ୱ ଯୁଦ୍ଧର ସେହି ଲୋମହର୍ଷଣକାରୀ ଭୟାବହ ଘଟଣାବଳୀ । ନାତ୍‌ସୀ ହିଟଲରର ଗ୍ୟାସ୍ ଚାମ୍ବରରେ ହଜାର ଦୁଇ ହଜାର ନୁହେଁ, କିମ୍ବା ଲକ୍ଷେ ଦୁଇ ଲକ୍ଷ ନୁହେଁ ଷାଠିଏ ଲକ୍ଷ ଇହୁଦୀଙ୍କର ନିର୍ମମ ହତ୍ୟା । ମାନବ ସମାଜର ଇତିହାସରେ ସବୁଠାରୁ ଲଜ୍ଜାଜନକ ଓ ଅକ୍ଷମଣୀୟ ଅପରାଧ । ସେହି କୁଖ୍ୟାତ ଯନ୍ତ୍ରଣା ଶିବିର ବା କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପରେ ବର୍ଷ ବର୍ଷ ଧରି ମରଣାନ୍ତକ ଯନ୍ତ୍ରଣା ଓ ଅମାନୁଷିକ ଜୀବନ ଅତିବାହିତ କରି କ୍ଷୁଧା ବ୍ୟାଧି ଓ ବିଷାକ୍ତ ମିଥାଇଲ୍ ଗ୍ୟାସ୍ ଆଘ୍ରାଣରୁ ବର୍ତ୍ତିଯିବା ଏକ ଅକଳ୍ପନୀୟ ବ୍ୟାପାର । ସେହି ଅବଧାରିତ ମୃତ୍ୟୁ କବଳରୁ କେତେ ଜଣ କବି ଲେଖକ ଓ ବୁଦ୍ଧିଜୀବୀ ଯଦି ବଞ୍ଚି ଯାଇ ନଥାନ୍ତେ, ତେବେ ଇତିହାସର ସେହି ଘୃଣିତ ଓ ଜଘନ୍ୟତମ ଅଧ୍ୟାୟ ଚିରଦିନ ପାଇଁ ଲୋକ ଲୋଚନରୁ ରହି ଯାଇଥାନ୍ତା ଅଦୃଶ୍ୟ, ଅଶ୍ରୁତ ଓ ଅଜ୍ଞାତ । ବିରଳ ଗୁଣ-ସମ୍ପନ୍ନ ଅସାଧାରଣ ବ୍ୟକ୍ତିମାନଙ୍କ ବ୍ୟତୀତ ସେହି ଅବଧାରିତ ମୃତ୍ୟୁ ଗହ୍ୱରରୁ ମୁକୁଳି ଆସିବାଟା ଅନ୍ୟ କାହା ପକ୍ଷରେ ଆଦୌ ସମ୍ଭବ ନୁହେଁ ।

ମୃତ୍ୟୁ ସହ ବହୁବାର ମୁହାଁ ମୁହିଁ ହୋଇ ସୂକ୍ଷ୍ମ କୌଶଳ କ୍ରମେ ସେହି ମୃତ୍ୟୁ ଯନ୍ତାରୁ ବାହାରି ଆସିଥିବା ମୁଷ୍ଟିମେୟ ଦୁଃସାହସିନୀ ମହିଳାମାନଙ୍କ ମଧ୍ୟରୁ ପୋଲାଣ୍ଡ ନିବାସିନୀ ଇହୁଦୀ ମହିଳା ଶ୍ରୀମତୀ ସାରା ନୋମ୍ବେଆର୍ଗ ପ୍ରିଷ୍ଟିକ୍ ଅନ୍ୟତମ ।

ଏଭଳି ଅସାଧ୍ୟ ସାଧନ କରିଥିବା ବୀରାଙ୍ଗନା ସାରାଙ୍କ ଜୀବନ ଚରିତ ପ୍ରତି ଦୃଷ୍ଟିପାତ କଲେ ପ୍ରାଣପ୍ରାଚୁର୍ଯ୍ୟଭରା ଅନ୍ୟତମ ପ୍ରାଚୀନ ଜାତି ଓ ଧର୍ମରେ ବିଶ୍ୱାସ କରୁଥିବା ଅପରାଜେୟ ଇହୁଦୀମାନଙ୍କ କଥା ସ୍ୱତଃ ମନରେ ଜାଗ୍ରତ ହୁଏ । ଖ୍ରୀଷ୍ଟପୂର୍ବ ଦୁଇ ହଜାର ବର୍ଷ ପୂର୍ବେ ଆରବ ମରୁଭୂମିର ଚରମ ପ୍ରତିକୂଳ ବାୟୁମଣ୍ଡଳ ଓ କଠୋର ସଂଗ୍ରାମ ଭିତରେ ଜୀବନ ଗଢ଼ିଥିବା ସେହି ଇହୁଦୀ ଜାତିର ବର୍ତ୍ତମାନ ଲୋକସଂଖ୍ୟା ଏକ କୋଟି ପନ୍ଦର ଲକ୍ଷ । ସେଥି ମଧ୍ୟରୁ ଅର୍ଦ୍ଧେକ ଯୁକ୍ତରାଷ୍ଟ୍ର ଆମେରିକାର ଅଧିବାସୀ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ହିଟ୍‌ଲର ନିର୍ଦ୍ଦେଶରେ ଷାଠିଏ ଲକ୍ଷ ଇହୁଦୀଙ୍କର ସଂହାର ପରେ ମଧ୍ୟ ଗତ ଅର୍ଦ୍ଧଶତାବ୍ଦୀରେ ସେମାନେ ଏହି ସଂଖ୍ୟାରେ ପହଞ୍ଚିଛନ୍ତି । ଇହୁଦୀଙ୍କ ଭଳି ସବୁ ମଣିଷଙ୍କ ମଧ୍ୟରେ ସର୍ବାଧିକ ପ୍ରତିଭାବାନ ଶକ୍ତିଶାଳୀ ତଥା ସର୍ବାଧିକ ନିର୍ଯାତିତ, ଦଣ୍ଡିତ

ଓ ପୃଥିବୀ ପୃଷ୍ଠରେ ସର୍ବାଧିକ ବିକ୍ଷିପ୍ତ ଜାତି ଆଉ କେହି ନାହାନ୍ତି । ଇହୁଦୀ ଜାତି ସମ୍ପର୍କରେ ନୃତତ୍ତ୍ୱବିଦ୍ ଓ ବିବର୍ତ୍ତନବାଦୀ (Evolutionist)ମାନେ କହନ୍ତି, ଇହୁଦୀମାନଙ୍କର ଶକ୍ତି ଓ ଦୃଢ଼ ଚରିତ୍ର ଯୋଗୁଁ ସେମାନେ ଅତି ପ୍ରାଚୀନ ଯୁଗରୁ ଆଜି ପର୍ଯ୍ୟନ୍ତ ସେହିପରି ଅପରିବର୍ତ୍ତିତ ରହି ଆସିଛନ୍ତି । ସେମାନଙ୍କ ଶାରୀରିକ ଉଚ୍ଚତା ଓ ଗଠନ ତଥା ସାଧାରଣ ଜୀବନଚର୍ଯ୍ୟା ବିବର୍ତ୍ତନର ବିକ୍ଷୁବ୍ଧ ସାଗର ବକ୍ଷରେ ମଧ୍ୟ ସେହିପରି ଅନାହତ ହୋଇ ରହିଅଛି । "No other people has endured greater sufferings and misfortunes and no other people is in proportion to its size can boast of higher achievement." (A book of Knowledge Vol. VIII - Page 394)

ଇହୁଦୀମାନଙ୍କ ଅପେକ୍ଷା ଅନ୍ୟ କୌଣସି ଜାତି ଏତେ ଦୁର୍ଦ୍ଦଶା ବା ଦୁର୍ଭାଗ୍ୟ ଭୋଗି ନାହିଁ କିମ୍ୱା ସେମାନଙ୍କ ଅପେକ୍ଷା ବଡ଼ କୌଣସି ଦେଶର ଅଧିବାସୀ ମଧ୍ୟ ଇହୁଦୀମାନଙ୍କ ଅପେକ୍ଷା ଅଧିକ ସାଫଲ୍ୟ ପ୍ରଦର୍ଶନ କରି ନାହାନ୍ତି । ମନୁଷ୍ୟର ପ୍ରଜ୍ଞା ବା ପାଣ୍ଡିତ୍ୟର ଏଭଳି କୌଣସି ବିଭାଗ ନାହିଁ ଯେଉଁଥିରେ ଇହୁଦୀମାନେ ଚରମ ଉତ୍କର୍ଷ ଅର୍ଜନ କରି ନାହାନ୍ତି । ଏ ପର୍ଯ୍ୟନ୍ତ ଦିଆ ଯାଇଥିବା ସର୍ବମୋଟ ତିନି ଶହଟି ନୋବେଲ୍ ପୁରସ୍କାର ମଧ୍ୟରୁ ଚାଳିଶି ଗୋଟି ପୁରସ୍କାର ବିଭିନ୍ନ ଦେଶରେ ଥିବା ଇହୁଦୀମାନେ ହିଁ ପ୍ରାପ୍ତ ହୋଇଛନ୍ତି । ସାର ଜାକବ୍ ଏପିଷ୍ଟିନ୍ (ସ୍ଥପତି) ଫେଲିକ୍ସ ମେଣ୍ଡେଲସନ୍ (ସଙ୍ଗୀତ ସାଧକ) ହେନ୍ରିକ୍ ହାଇନେ (କବି) ଆଲବର୍ଟ ଆଇନଷ୍ଟାଇନ୍ (ପଦାର୍ଥ ବିଜ୍ଞାନ) ବେନିଡ଼୍‌କଟ୍ ସ୍ପିନୋଜା (ଦାର୍ଶନିକ) ଓ ନାଥନ ମାୟର (ଅର୍ଥନୀତିଜ୍ଞ) ଆନ୍ଦ୍ରେ ମାଉରେସ୍ (ଲେଖକ) କାର୍ଲ ମାର୍କସ୍ (ସମାଜ ବିଜ୍ଞାନ) ସ୍ୱ ସ୍ୱ କ୍ଷେତ୍ରରେ ଗୋଟିଏ ଗୋଟିଏ ବିଶ୍ୱ ବିଶ୍ରୁତ ନାମ ଅଟେ । ବ୍ରିଟେନ୍, ଜର୍ମାନୀ, ଫ୍ରାନ୍‌ସ, ରୁଷିୟା ଓ ଯୁକ୍ତରାଷ୍ଟ୍ର ଆଦି ଉନ୍ନତ ଦେଶ ଗୁଡ଼ିକ ଇହୁଦୀମାନଙ୍କ ବୁଦ୍ଧି ଓ ପ୍ରତିଭାରୁ ସର୍ବାଧିକ ଲାଭ ଉଠାଇଥିଲେ ମଧ୍ୟ ସେମାନଙ୍କର ଅକଳ୍ପନୀୟ ସମୃଦ୍ଧି ଓ ଅସାଧାରଣ ସ୍ଥାନରେ ଈର୍ଷାନ୍ୱିତ ହୋଇ ସେହି ଜାତିକୁ ସମ୍ପୂର୍ଣ୍ଣ ନିଶ୍ଚିହ୍ନ କରିଦେବାକୁ ମଧ୍ୟ କମ୍ ପ୍ରଚେଷ୍ଟା କରିନାହାନ୍ତି । ତଥାପି ତାହାର ଅଗ୍ରଗତିକୁ ମଧ୍ୟ କେହି ପ୍ରତିହତ କରିପାରି ନାହିଁ । ଜର୍ମାନୀ ନାତ୍‌ସୀ ଡିକ୍ଟେଟର ହିଟ୍‌ଲର୍‌ର ଈର୍ଷା ଓ କ୍ରୋଧର ଶିକାର ହେବା ଇତିହାସର ସର୍ବଶେଷ ହୃତକମ୍ପକାରୀ ଅଧ୍ୟାୟ ।

ଇହୁଦୀ ଗଣ-ସଂହାର ଶିବିରର ଏହି ଆତ୍ମଲିପିର ଲେଖିକା ସାରା ନୋୟେଆର୍ଗଙ୍କର ଜନ୍ମ ପୋଲାଣ୍ଡର ଲୁବ୍‌ଲିନ୍ ସହରରେ । ୧୯୧୫ ମସିହାରେ ଏକ ଧର୍ମ ପରାୟଣ ଇହୁଦୀ ପରିବାରରେ ନୋୟେଆର୍ଗ ତାଙ୍କର ଶୈଶବ କାଳରୁ ହିଁ ଅନୁଭବ କରିଥିଲେ ଇହୁଦୀମାନଙ୍କ

ପ୍ରତି ସମାଜର ଅମାନୁଷିକ ବ୍ୟବହାର ଓ ଘୃଣାବ୍ୟଞ୍ଜକ ମନୋଭାବ ସାଙ୍ଗକୁ ଦରିଦ୍ର ପରିବାରର ଶିଶୁମାନଙ୍କର ଅବର୍ଣ୍ଣନୀୟ ଦୁର୍ଦ୍ଦଶା । ବେବିଲୋନ୍‌ଠାରୁ ଆରମ୍ଭ କରି ପାଲେଷ୍ଟାଇନ୍ ଓ ଇସ୍ରାଏଲ୍ ପର୍ଯ୍ୟନ୍ତ ଇହୁଦୀ ରାଷ୍ଟ୍ର ବିଦେଶୀ ଆକ୍ରମଣରେ ବାରମ୍ବାର ଧ୍ୱସ୍ତ ବିଧ୍ୱସ୍ତ ହୋଇଛି ନଚେତ୍ ସେମାନେ ବିତାଡ଼ିତ ହୋଇଛନ୍ତି ନିଜର ମାତୃଭୂମିରୁ । ଶତାବ୍ଦୀ ପରେ ଶତାବ୍ଦୀ ରାଷ୍ଟ୍ରଶୂନ୍ୟ ହୋଇ ସେମାନେ ସର୍ବତ୍ର ବିଦେଶୀ ଅନୁପ୍ରବେଶକାରୀ ଭାବରେ ବିବେଚିତ ହୋଇଛନ୍ତି । ସାରା ନୋମ୍ୟେଆର୍ଗ ମଧ୍ୟ ସେହି ପ୍ରତିକୂଳ ପରିସ୍ଥିତିରେ ଲାଳିତା ପାଳିତା ହୋଇଛନ୍ତି ଓ ବହୁ ସଂଗ୍ରାମ କରି ସେ ବିଶ୍ୱବିଦ୍ୟାଳୟ ଡିଗ୍ରୀଟିଏ ଲାଭ କରିଛନ୍ତି । କିନ୍ତୁ ଇହୁଦୀମାନଙ୍କର ଦୁର୍ଦ୍ଦଶା ଦୂର କରିବା ପାଇଁ ସେ କିଶୋର ବୟସରୁ ମଧ୍ୟ ବିଦ୍ରୋହ ଚିନ୍ତା କରିଛନ୍ତି । ତେଣୁ ତରୁଣୀ ସାରା ନୋମ୍ୟେଆର୍ଗଙ୍କୁ ପାଞ୍ଚ ବର୍ଷ କାରାଦଣ୍ଡ ଭୋଗ କରିବାକୁ ପଡ଼ିଛି । ଜର୍ମାନୀ ଶାସନ କ୍ଷେତ୍ରରେ ହିଟ୍‌ଲରର ଆବିର୍ଭାବ ପରେ ୟୁରୋପର ବିଭିନ୍ନ ଦେଶରେ ଥିବା ଲକ୍ଷ ଲକ୍ଷ ଇହୁଦୀଙ୍କ ଭାଗ୍ୟାକାଶରେ ଉଦିତ ହୋଇଛି ମହାକାଳ ଧୂମକେତୁ । ପ୍ରଥମ ମହାଯୁଦ୍ଧ (୧୯୧୪-୧୮) ପରେ ପରାଜିତ ଜର୍ମାନୀକୁ ପୁନର୍ବାର ଏକ ଶକ୍ତିଶାଳୀ ଜାତି ଭାବରେ ଗଢ଼ିବାରେ ଯେଉଁ ଇହୁଦୀମାନେ ବହୁ ଗୌରବମୟ ଭୂମିକା ଗ୍ରହଣ କରିଥିଲେ ସେହିମାନଙ୍କୁ ହିଟଲର୍ ପୃଥିବୀ ବକ୍ଷରୁ ନିଶ୍ଚିହ୍ନ କରି ଦେବାକୁ ହୋଇଥିଲା ଦୃଢ଼ ପ୍ରତିଜ୍ଞ ! ନିଜକୁ ଜଣେ ବିଶୁଦ୍ଧ ଆର୍ଯ୍ୟ ଏବଂ ଇହୁଦୀମାନଙ୍କୁ ଘୃଣ୍ୟ ଅନାର୍ଯ୍ୟ ବୋଲି ଘୋଷଣା କରି 'ସ୍ୱସ୍ତିକ' ପ୍ରତୀକଯୁକ୍ତ ନାତ୍‌ସୀ ଜର୍ମାନୀର ଆତଙ୍କ ''ଏସ୍.ଏସ୍.ମ୍ୟାନ''ଙ୍କ ସାହାଯ୍ୟରେ ଲକ୍ଷ ଲକ୍ଷ ଇହୁଦୀଙ୍କୁ ନିର୍ମମ ଭାବେ ହତ୍ୟା କରିଛି । ୬ ବର୍ଷ (୧୯୩୯-୧୯୪୫) କାଳ ହିଟଲର ଅଧିକୃତ ରାଷ୍ଟ୍ରମାନଙ୍କରେ ସେହି ଇହୁଦୀ ସଂହାର ଲୀଳା ସଙ୍ଗଠିତ ହୋଇଛି । ସ୍ୱଳ୍ପ ସମୟ ଓ ସ୍ୱଳ୍ପ ବ୍ୟୟରେ ବହୁ ସଂଖ୍ୟକ ଇହୁଦୀଙ୍କୁ ହତ୍ୟା କରିବା ପାଇଁ ବିଭିନ୍ନ ପରୀକ୍ଷା ନିରୀକ୍ଷା ହୋଇ ଶେଷରେ ଗ୍ୟାସ୍ ଚ୍ୟାମ୍ବରରେ ମାରିଦେଇ ସେହି ମୃତ ଓ ମୁମୂର୍ଷୁମାନଙ୍କୁ ବିଦ୍ୟୁତ୍ ଚୁଲାରେ ଜଳାଇ ଦିଆଯାଇଛି । ସେହି ଉପାୟରେ ଏକ ସଙ୍ଗେ ହଜାର ହଜାର ଲୋକଙ୍କୁ ଧରାପୃଷ୍ଠରୁ ନିଶ୍ଚିହ୍ନ କରି ଦିଆଯାଇଛି । ମାନବ ସମାଜ ଇତିହାସରୁ ସେହି ଜଘନ୍ୟତମ ଅପରାଧକୁ ଲୁଚାଇ ରଖିବାକୁ ନାତ୍‌ସୀ ସରକାରଙ୍କ ସମସ୍ତ ଉଦ୍ୟମ ସତ୍ତ୍ୱେ ତାହା ଲୁଚି ପାରି ନାହିଁ ।

ଆଉସ୍‌ଭିତ୍‌ଜ୍ ଗଣ ସଂହାର ଶିବିର ବା ନାତ୍‌ସୀ କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପର ସେହି ଲୋମହର୍ଷଣକାରୀ କାହାଣୀକୁ ଯେଉଁ କେତେଜଣ ସଭ୍ୟ ସମାଜର ଦୃଷ୍ଟିକୁ ଆଣିଛନ୍ତି ସାରା ନୋମ୍ୟେଆର୍ଗ ପ୍ରିଷ୍ଟିକ୍ ସେମାନଙ୍କ ମଧ୍ୟରେ ଅନ୍ୟତମ । ଯୁଦ୍ଧକାଳ ଦୀର୍ଘ ଛ' ବର୍ଷ ତାଙ୍କର ଅତିବାହିତ ହୋଇଛି ସେହିଠାରେ; ସେଥି ମଧ୍ୟରୁ ଶେଷ ଚାରି ବର୍ଷ କଟିଛି

ଆଉସ୍‌ଭିଡ୍‌ଜ୍‌ରେ । ସେଠାରେ ବାରମ୍ବାର ଅବଧାରିତ ମୃତ୍ୟୁ ମୁଖରୁ ଖସି ଆସିଥିବା ସେହି ଦୁଃସାହସିନୀ ମହିଳା ସେଠାରେ ଏକାକିନୀ ନଥିଲେ କିମ୍ବା ନଥିଲେ ଏକାନ୍ତ ଅସହାୟା । ଅକଳ୍ପନୀୟ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ସୁଦ୍ଧା ହିଟଲରର ବିରୁଦ୍ଧରେ ଗୁପ୍ତ ଷଡ଼ଯନ୍ତ୍ର ଚାଲିଥିଲା ସେହି ଶିବିର ଭିତରେ ଏବଂ ସେହି ଷଡ଼ଯନ୍ତ୍ରର ନେତୃତ୍ୱ ନେଇଥିଲେ ୟୁରୋପର ବିଭିନ୍ନ ରାଷ୍ଟ୍ରରୁ ଧୃତ ନାତ୍‌ସୀ ବିରୋଧୀ କମ୍ୟୁନିଷ୍ଟମାନେ । ସେହିମାନଙ୍କ ପ୍ରଚେଷ୍ଟାରେ ବିଭିନ୍ନ ଶିବିରରେ ବନ୍ଦୀ କମ୍ୟୁନିଷ୍ଟଙ୍କୁ ଏକତ୍ରିତ କରି Anti Hitler Forum ଗୋପନରେ ଗଠିତ ହୋଇଥିଲା । ଏପରିକି ମଝିରେ ମଝିରେ ବିସ୍ଫୋରଣରେ ଗ୍ୟାସ୍ ଚ୍ୟାମ୍ବର ଓ ବିଦ୍ୟୁତ୍ ଚୁଲାକୁ ମଧ୍ୟ ଉଡ଼ାଇ ଦିଆଯାଉଥିଲା । ବେଳେବେଳେ ମିଳିତ କଣ୍ଠରେ ଗୁଞ୍ଜରି ଉଠୁଥିଲା 'ଇଣ୍ଟରନ୍ୟାସ୍‌ନାଲ'ର ମୃଦୁ ଝଙ୍କାର We shall over come ...

— ଲେଖକ

# ଇଂରାଜୀ ଅନୁବାଦିକାଙ୍କ ଅଗ୍ରଲେଖା

ପୋଲାଣ୍ଡର ଦୁଃସାହସିନୀ ମହିଳା ସାରା ନୋମେଆର୍ଗ ପ୍ରିଷ୍ଟିକ୍ ନାତ୍‌ସୀ ଜର୍ମାନୀ ହିଟଲର୍ ଦ୍ୱାରା ସ୍ଥାପିତ 'ଇହୁଦୀ ଗଣ ସଂହାର ଶିବିର'ରୁ ମୁକ୍ତିଲାଭ କଲେ ୨ୟ ବିଶ୍ୱଯୁଦ୍ଧରେ ହିଟ୍‌ଲରର ପରାଜୟ ପରେ । ଆଉସ୍‌ଭିତ୍‌ଜ୍ ନାମକ ଲୋମହର୍ଷଣକାରୀ ସଂହାର ଶିବିରର ଭୟାବହ ଅନୁଭୂତି ନେଇ ସେ ରଚନା କରି ଯାଇଛନ୍ତି - "AUSCHWITZ - TRUE TALES FROM A GROTESQUE LAND" ନାମକ ଲୋମହର୍ଷଣକାରୀ ଅନୁଭୂତି ସମ୍ପନ୍ନ ଇତିହାସ । ସେହି ଇତିହାସକୁ ନିଜର ମାତୃଭାଷା ପୋଲିଶ୍ (Polish) ଭାଷାରେ ଟାଇପ କରି ପାଣ୍ଡୁଲିପି ୧୯୬୬ରେ ଇସ୍ରାଏଲ୍‌ର ୟାଦ୍-ଭ-ଶେମ୍ ଆର୍କିଭସ୍ (Yd Vashem Archives)ରେ ସଂରକ୍ଷିତ କରି ଯାଇଥିଲେ । ୧୯୮୧ ରେ ସେହି ପାଣ୍ଡୁଲିପିର ଇଂରାଜୀ ଅନୁବାଦିକା ଶ୍ରୀମତୀ ରୋଜ୍‌ଲିନ୍ ହର୍ଟଙ୍କ ସ୍ୱାମୀ ଏଲି ଫେଫରକ୍ରୋନ୍ (Eli Pfefferkron) ଜେରୁଜେଲମ୍ ଠାରେ ଆବିଷ୍କାର କରିଥିଲେ ।

ମୁଁ ଯେତେବେଳେ ସେହି ଟାଇପ୍ କରା କପିରୁ କିଛି ଅଂଶକୁ ଇଂରାଜୀରେ ଅନୁବାଦ କରିବାକୁ ବସିଲି ସେତେବେଳେ ଲେଖିକାଙ୍କ ସମ୍ପର୍କରେ ମୁଁ କିଛି ହେଲେ ଜାଣି ନଥିଲି । ଏପରିକି ସେ ବର୍ତ୍ତମାନ ବଞ୍ଚିଛନ୍ତି କି ନାହିଁ ତାହା ମଧ୍ୟ ମୋ ନିକଟରେ ଅଜ୍ଞାତ ଥିଲା । କପିଟିକୁ ଅଳ୍ପ କିଛି ବାଟ ପଢ଼ି ସାରିବା ପରେ ଅନୁଭବ କଲି ଯେ ମୁଁ ଜଣେ ଅସାଧାରଣ ମେଧା ସମ୍ପନ୍ନା ଲେଖିକାଙ୍କର ପାଣ୍ଡୁଲିପିଟି ଅନୁବାଦ କରିବାକୁ ଯାଉଛି । ଅବଶ୍ୟ ଆଉସ୍‌ଭିତ୍‌ଜ୍ ନରସଂହାର ସମ୍ପର୍କରେ ପୂର୍ବରୁ ବହୁ ଲେଖା ପ୍ରକାଶିତ ହୋଇଛି ଏବଂ ତାହା ବିପୁଳ ସଂଖ୍ୟାରେ ପ୍ରସାରିତ ମଧ୍ୟ ହୋଇଛି । କିନ୍ତୁ ଏ ବହିଟିରେ ବର୍ଣ୍ଣିତ ହୋଇଥିବା ନାଟକୀୟ ଶୈଳୀର ବିବରଣୀ ଥିଲା ଅସାଧାରଣ । ଏହା କେବଳ ଲେଖିକାଙ୍କର ତୀକ୍ଷ୍ଣ ଚେତନା ଶକ୍ତିର ପରିଚୟ ନଥିଲା, ତାହା ଥିଲା ପ୍ରତ୍ୟେକ ବନ୍ଦୀ ଓ ବନ୍ଦିନୀର, ଏପରିକି ତାଙ୍କୁ ଧରି ଆଣିଥିବା ଜଲ୍ଲାଦମାନଙ୍କ ମନସ୍ତତ୍ତ୍ୱର ରୋମାଞ୍ଚକର ପରିଚୟ । ସେହି ହତଭାଗ୍ୟମାନଙ୍କୁ ହିଁ ଜୀବନ୍ତ ନରମାଂସ ପେଷା ଯାଉଥିବା ସେହି ବିଶାଳ କାରଖାନାରେ ଆହୂତି ଦିଆଯାଇଥିଲା ।

ମୁଁ ଅନୁବାଦ କରୁଥିବା ପାଣ୍ଡୁଲିପିଟି ପୂର୍ବରୁ ପୋଲାଣ୍ଡର ପୋଲିଶ୍ ଭାଷା ବା ଅନ୍ୟ

କୌଣସି ଭାଷାରେ ଅନୁବାଦ ହୋଇ ପ୍ରକାଶିତ ହୋଇଛି କି ନାହିଁ ତାହା ନିର୍ଣ୍ଣୟ କରିବା ମୋର ଦ୍ୱିତୀୟ ପଦକ୍ଷେପ ଥିଲା । ମୁଁ ବ୍ରିଟିଶ୍ ମ୍ୟୁଜିୟମ୍ କ୍ୟାଟଲଗ ଏବଂ ଲାଇବ୍ରେରୀ ଅଫ୍ କଂଗ୍ରେସରେ ଅନୁସନ୍ଧାନ କରି ଜାଣିଲି ଯେ ଜନୈକା ସାରା ନୋମେୟାର୍ଗ ପ୍ରିଷ୍ଟିକ୍ଙ୍କର The Pillars of Samsong ନାମକ ପୁସ୍ତକ ପୋଲାଣ୍ଡର ଲୁବ୍ଲିନ୍ ଠାରେ ୧୯୬୬ ମସିହାରେ ପ୍ରକାଶିତ ହୋଇଛି । ଉକ୍ତ ପୁସ୍ତକ ପାଠ କଲାପରେ ଜାଣିଲି ଯେ ସାରା ନୋମେୟାର୍ଗ ଏହି ବହିଟିକୁ ବିୟଲଷ୍ଟୋକ୍ ଘେଟୋ (Bialystok Ghetto) ଠାରୁ ବନ୍ଦୀ ଜୀବନ ଯାପନ କରୁଥିବା ବେଳେ ଲେଖୁଥିଲେ । ନାତ୍‌ସୀ ଶାସକମାନେ ବିୟାଲ୍‌ଷ୍ଟୋକ୍ ବନ୍ଦୀ ଶିବିର ଭାଙ୍ଗି ଦେଇ ସାରା ନୋମେୟାର୍ଗ ଓ ଅନ୍ୟାନ୍ୟ ବନ୍ଦିନୀମାନଙ୍କୁ ଆଉସ୍‌ଭିଜ୍‌ଜକୁ ଚାଲାଣ କରିଥିଲେ । "Auschwitz, True Tales of a Groetsque land" ସେହି ବନ୍ଦୀ ଶିବିରର ଲୋମହର୍ଷଣକାରୀ ବିବରଣୀ ।

ତେଣୁ ମୁଁ ଏହି ସିଦ୍ଧାନ୍ତରେ ପହଞ୍ଚିଲି ଯେ ଦୁଇଟିଯାକ ପୁସ୍ତକର ଲେଖିକା ଜଣେ ଏବଂ ସେ ହେଉଛନ୍ତି ସାରା ନୋମେୟାର୍ଗ ପ୍ରିଷ୍ଟିକ୍ । ୧୯୮୨ ମସିହା ଡିସେମ୍ବର ସୁଦ୍ଧା ମୋର ଅନୁବାଦ କାର୍ଯ୍ୟ ଶେଷ ହୋଇଗଲା । କିନ୍ତୁ ଲେଖିକାଙ୍କ ସମ୍ପର୍କରେ ବିଶେଷତଃ ତାଙ୍କର ବର୍ତ୍ତମାନ ସ୍ଥିତି କ'ଣ ମୁଁ କିଛି ଜାଣି ପାରୁ ନଥିଲି । ମୋର ସ୍ୱାମୀ ସେ ବିଷୟରେ ଏକ ଗବେଷଣା ଅନୁଦାନରେ ଇସ୍ରାଏଲ ଯାଇ ସାରା ନୋମେୟାର୍ଗଙ୍କ ସମ୍ପର୍କରେ ଅନୁସନ୍ଧାନ କରିଥିଲେ । ସେଠାରୁ ସେ ସଂଗ୍ରହ କରିଥିବା ସୂଚନା ଅନୁସାରେ ଆମେ ଦୁହେଁ ତାଙ୍କୁ କାନାଡାର ଏକ କ୍ଷୁଦ୍ର ସହରରେ ଭେଟିଲୁ ଓ ତାଙ୍କଠାରୁ ତାଙ୍କ ବାଲ୍ୟ ଜୀବନର ଦୁଃଖ ଦୁର୍ଦ୍ଦଶାପୂର୍ଣ୍ଣ କାହାଣୀ ସବୁ ଶୁଣିଲୁ ।

ବନ୍ଦୀ ଶିବିରରୁ ମୁକ୍ତିପରେ ସେ ମାତୃଭୂମି ପୋଲାଣ୍ଡକୁ ଫେରି ଆସିଲେ । ସେଠାରେ ୧୯୪୬ ମସିହାରେ ତାଙ୍କର ଆନ୍ଦ୍ରେ ପ୍ରିଷ୍ଟିକ୍ଙ୍କ ସହ ବିବାହ ହେଲା । ସେ ଜଣେ ମାଜିଷ୍ଟ୍ରେଟ୍ ଥିଲେ । ସାରା ଲୁବଲିନ୍‌ରେ ସାମ୍ବାଦିକତା କଲେ । ଅକ୍ଟୋବର ୧୯୬୮ରେ ସେ ଇସ୍ରାଏଲ୍‌କୁ ପଳାଇ ଯିବାକୁ ବାଧ୍ୟ ହେଲେ । ୧୯୭୫ରେ ସେ ଇସ୍ରାଏଲ୍ ପରିତ୍ୟାଗ କରି ତାଙ୍କର ବଡ଼ ପୁଅ ପାଖରେ ରହିବା ପାଇଁ କାନାଡ଼ା ଚାଲିଗଲେ ।

ମୁଁ (ଶ୍ରୀମତୀ ରୋଜ୍‌ଲିନ୍) ଆଗ୍ରହ ସହକାରେ ତାଙ୍କୁ ପଚାରିଲି ଆପଣଙ୍କ ପାଣ୍ଡୁଲିପିଟି ୟାଦ-ଭ-ଶେମ ଆର୍କାଇଭରେ କେଉଁ ପରିସ୍ଥିତିରେ ପହଞ୍ଚିଲା ଏବଂ ସେଥିରେ ୧୯୬୬ ମସିହା କାହିଁକି ଉଲ୍ଲେଖ କରାଯାଇଅଛି ? Pillars of Samsong ବହି ଛପା ଯାଇଥିଲା । ତାର ଉତ୍ତରରେ ସାରା ନୋମେୟାର୍ଗ କହିଲେ, "ମୋର ଆଉସ୍‌ଭିଜ୍‌ଜ୍ ସମ୍ପର୍କରେ ବହିଟି ୧୯୬୭ରେ ଛପା ହେବା ପାଇଁ ସ୍ଥିର ହୋଇଥିଲା, କିନ୍ତୁ ହଠାତ୍ ପ୍ରକାଶକ

ଡାକି କହିଲେ ଯେ ଇସ୍ରାଏଲ୍ ଏବଂ ଆରବ ଦେଶ ସାଙ୍ଗରେ ଛଅ ଦିନିଆ ଯୁଦ୍ଧ ନିକଟରେ ହୋଇ ଯାଇଛି, ତେଣୁ ଆପଣ ବହିରେ ଇହୁଦୀମାନଙ୍କର ସମ୍ପର୍କରେ ଯାହା ଉଲ୍ଲେଖ ଅଛି ସେହି ଅଂଶଟିକୁ ବାଦ ଦେଇ ଦିଅନ୍ତୁ । ତାଙ୍କ ସାଙ୍ଗରେ ଯୁକ୍ତି କଲି ଆଉସ୍‌ଭିଦ୍‌ଜ୍ ପୁସ୍ତକରେ କେବଳ ଇହୁଦୀ ନୁହେଁ ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସବୁ ମଣିଷଙ୍କ କଥା ଉଲ୍ଲେଖ ଅଛି । ତେଣୁ ଆଉସ୍‌ଭିଦ୍‌ଜ୍ ପାଣ୍ଡୁଲିପିରୁ ମୁଁ କୌଣସି ଅଂଶ ବାଦ ଦେଇ ପାରିବି ନାହିଁ । ମୁଁ ମୋର ପାଣ୍ଡୁଲିପିଟି ଫେରାଇ ଆଣିଲି ଏବଂ ପୋଲାଣ୍ଡ ପରିତ୍ୟାଗ କଲାବେଳେ ତାକୁ ଗୋପନରେ ଇସ୍ରାଏଲ୍ ନେଇ ଆସିଲି । ଏହି ଭଳି ଭାବରେ ତାହା ୟାଦ୍-ଭ-ଶେମ୍ ଆର୍କାଇଭରେ ଡିପୋଜିଟ୍ ହେଲା ।''

— ରୋଜ୍‌ଲିନ୍ ହର୍ଟ

# ଅଭିମତ

## ଗ୍ରନ୍ଥଟି ବିଷୟରେ :

ବିଗତ ଦ୍ୱିତୀୟ ମହାଯୁଦ୍ଧର କାହାଣୀଟିରେ ତତ୍କାଳୀନ ଜର୍ମାନ୍ ନାତ୍‌ସୀ ଶାସନକୁ ସନ୍ଦର୍ଭରେ ରଖି ଯେଉଁ Concentration Camp ବା ମାରଣ ଶିବିର ଗୁଡ଼ିକର ପରିଚୟମାନ ପ୍ରାପ୍ତ ହୋଇଥାଏ, ମୁଁ ସେଥିରୁ ଦୁଇଟି ସ୍ଥାନ ନିଜେ ଦେଖିଛି । ସେକାଳେ ସେଠାରେ ନାନାବିଧ ନୃଶଂସତାର ପ୍ରଦର୍ଶନ କରାଯାଇ ଶାସନକର୍ତ୍ତାମାନେ ମଣିଷମାନଙ୍କୁ ମାରିଥିଲେ ଏବଂ ଏବେ ସେଗୁଡ଼ିକ ପ୍ରାୟତଃ ଟୁରିଷ୍ଟ୍‌ମାନଙ୍କ ସକାଶେ ଗୋଟିଏ ଖାସ୍ ଖାସ୍ ସ୍ଥାନ ରୂପେ ନାମାଙ୍କିତ ହୋଇ ରହିଛି । ସେଇ ମଣିଷ ମଉକା ପାଇଲେ ବିବେକ ହରାଇ ହତ୍ୟାମାନ କରେ ଏବଂ ପୁଣି ସେଇ ମଣିଷ ସତେ ଅବା ସମସ୍ତଙ୍କୁ ସ୍ମରଣ କରାଇ ଦେବା ପାଇଁ ସେହି ଚରମ ଅନାଚରଣ ଗୁଡ଼ିକୁ ଗୋଟିଏ ଗୋଟିଏ ପ୍ରଦର୍ଶନୀୟ ବସ୍ତୁ ରୂପେ କାହିଁକି ବ୍ୟବହାର କରେ କେଜାଣି ? ଏକାଠି ଘର କରି ଏହି ପୃଥିବୀରେ ରହିବେ, ସ୍ୱପ୍ନ ଦେଖିବେ ଏବଂ ବାଟ ଚାଲିବେ ବୋଲି ଏଠାକୁ ଆସିଥିବା ମଣିଷମାନେ ହିଁ ତ ନିମିତ୍ତ ହୋଇ ସେହି ନାଟକ ଗୁଡ଼ିକୁ ଅଭିନୟ କରନ୍ତି ।

ପ୍ରଥମ ମାରଣ-ସ୍ମାରକଟି ଜର୍ମାନୀର ପଶ୍ଚିମ ଅଞ୍ଚଳରେ– ବେଆର୍ଗେନ୍ ବେଲ୍‌ସେନ ନାମକ ଗୋଟିଏ ସ୍ଥାନରେ । ସେଠାରେ ହଜାର ହଜାର ମନୁଷ୍ୟଙ୍କୁ ଗାତମାନଙ୍କରେ ପୋତି ଦିଆ ଯାଇଥିଲା । ବର୍ତ୍ତମାନ ସେଠାରେ ସବୁଜ ଘାସ ଶଯ୍ୟା ଦ୍ୱାରା କେତେ ଉଜ୍ଜ୍ୱଳ ଏବଂ ମସୃଣ ଦେଖାଯାଉଥିବା ଜାଗାମାନେ ଦୃଷ୍ଟିଗୋଚର ହେଉଛନ୍ତି, ଯାହା ତଳେ ଏତେ ହଜାର ମନୁଷ୍ୟ ପୋତା ହୋଇଛନ୍ତି ବୋଲି ସୂଚାଇ ଦିଆଯାଇଛି । ଦ୍ୱିତୀୟ ଶିବିରଟି ଦେଶର ପୂର୍ବପଟେ ବିଖ୍ୟାତ ଭାଇମାର୍ ସହରର ଅନତି ଦୂରରେ ବୁଖେନ୍‌ଭାଲ୍‌ଡ୍ ଠାରେ । ଅପୂର୍ବ ଶୋଭା ଧାରଣ କରିଥିବା ଏକ ବୀଚ୍ ବୃକ୍ଷ ମାନଙ୍କର ଗୋଟିଏ ଘଞ୍ଚ ଜଙ୍ଗଲ ଭିତରେ । ସେଠାରେ ଗାଇଡ୍ ମାନେ ଦଳ ଦଳ ପରିଦର୍ଶକମାନଙ୍କୁ ଡାକିଆଣି ବୁଲାଇ ଅତ୍ୟନ୍ତ ନିଖୁଣ ଭାବରେ ସବୁକିଛି ବୃତ୍ତାନ୍ତ ବୁଝାଇ କହି ଦେଉଥାଆନ୍ତି । ଗୋଟିଏ ଫିଲ୍ମ ମଧ୍ୟ ପ୍ରଦର୍ଶିତ ହୁଏ । ଅନ୍ଧାର କକ୍ଷଟା ଭିତରେ ସେହି ସେକାଳେ ଏଠି ଘଟିଥିବା ଭୟାବହତା ଗୁଡ଼ାକୁ ଦେଖିବା ବେଳେ ପ୍ରାୟ ପାଞ୍ଚମିନିଟ୍ ନ ଯାଉଣୁ ସତକୁ

ସତ ବାନ୍ତି ମାତେ ଏବଂ ଆଖିମାନେ ବନ୍ଦ ହୋଇ ଆସନ୍ତି । ହଁ, ଯୁଦ୍ଧ ସରିବା ପରେ ଯେତେବେଳେ ବିଜୟୀ ପକ୍ଷଟା ସେଠାରେ ପହଞ୍ଚି ତଥାପି ଦୈବାତ୍ ବଞ୍ଚି ଯାଇଥିବା ବନ୍ଦୀମାନଙ୍କୁ ମୁକ୍ତ କରିଥିଲେ, ସେତେବେଳେ ଏମାନେ ଯେଉଁ ଗୀତଟିକୁ ଗାଇ ବାହାରକୁ ଆସିଲେ ସେଥିରେ ଥିବା ''ଏହି ବୀଭତ୍ସତାର ଆମ ପୃଥିବୀଟିରେ ଆଉ କଦାପି ପୁନରାବୃତ୍ତି ହେବ ନାହିଁ'' ବୋଲି ଧାଡିଟି ବୋଲା ହେବା ସମୟରେ ଆଖିମାନେ ପୁନର୍ବାର ଖୋଲିଯାନ୍ତି ଅତ୍ୟନ୍ତ ଅତର୍କିତ ଅଥଚ ସ୍ୱତଃ ପ୍ରେରିତ ଭାବରେ ସେହି ଧାଡିଟା ନିଜ ଭିତରୁ ମଧ ବାହାରି ଆସିବାକୁ ଆରମ୍ଭ କରେ । ନାହିଁ, ଆଉ କେବେହେଲେ ଏହି ନିର୍ବୋଧତାର ପୁନରାବୃତ୍ତି ହେବ ନାହିଁ ।

ଶ୍ରୀମତୀ ସାରା ଫ୍ରିଷ୍ଟିକ୍ ଆଉସ୍‌ଭିଜ୍‌ର ମାରଣ-ଶିବିରର ତତ୍କାଳୀନ ବର୍ଣ୍ଣନା ଗୁଡିକୁ ପ୍ରଦାନ କରିଛନ୍ତି । ସେଠାରେ ସେ ବର୍ଣ୍ଣିତ ଏକାଧିକ ବର୍ଷର ଅସହନୀୟ ଅବ୍ୟାପାର ଗୁଡିକୁ ଅଙ୍ଗେ ନିଭାଇଛନ୍ତି । ଏକ ନିତ୍ୟ ଅନିଶ୍ଚିତତା-ପୂର୍ଣ୍ଣ ଦୁର୍ବହପ୍ରାୟ ଜୀବନଧାରଣର ଆହବ ମଧ୍ୟରେ ସେ ତଥାପି ଜୀବନ ପକ୍ଷରେ ହିଁ ରହିବାକୁ ପ୍ରୟାସ କରିଛନ୍ତି । ଗୋଟିଏ ପକ୍ଷେ ଆମେ ସାଧାରଣ ମଣିଷମାନେ, ଆଉ ଗୋଟିଏ ପଟେ ସଂଗଠିତ କ୍ଷମତା, ପ୍ରବଳତା ଏବଂ ଅନ୍ଧତା । ତାହାରି ପାଖରେ ଅସ୍ତ୍ର ଏବଂ ତେଣୁ ସିଏ ସେଇ ତାହାରି ପଟେ ଅବଶ୍ୟ ନ୍ୟାୟ ରହିଛି ବୋଲି ଅନ୍ତତଃ ସେହି ସମୟଟା ଲାଗି କେତେ ବିଶ୍ୱାସ ନ କରୁଥିଲା ! ମାରଣ ଶିବିରର ଇତିବୃତ୍ତଟିକୁ ଆମେ କେବଳ ଗୋଟିଏ ରାଜନୈତିକ ବ୍ୟାପାର ବୋଲି ମୋଟେ ବିଚାର କରିବା ନାହିଁ । ଆଧୁନିକ ଯୁଗର ପ୍ରାୟ ସକଳ ଭାବାବେଦନ ପୃଥିବୀଯାକର ସବୁ ମଣିଷଙ୍କ ପାଇଁ ଏକ ପ୍ରଶସ୍ତ ପଡୋଶୀପକ୍ଷ ଜୀବନ ନିମନ୍ତେ ସର୍ବବିଧ ପ୍ରସ୍ତୁତି ନିମନ୍ତେ ବାଟ ଫିଟାଇ ଦେଉଥିବା ସମୟରେ ଏଠି ତଥାପି ଆମ ପ୍ରାୟ ସମସ୍ତଙ୍କ ଉପରେ ଲଦି ହୋଇ ରହିଥିବା ସଂଗଠିତ ନ୍ୟସ୍ତ ସ୍ୱାର୍ଥମାନେ କାହିଁକି ସେହି ଆଦିମ ଅଶାଳୀନତା ଗୁଡିକୁ ଆବୋରି ରହିଛନ୍ତି, ସେହି ବିଷୟରେ ଯଥା ସମ୍ଭବ ଅଧିକ ମୋହ ମୁକ୍ତ ଭାବରେ ଚିନ୍ତା କରାଯିବା ଉଚିତ । ଅମାପ ସମ୍ପନ୍ନତାର ଏହି ଏକାଳଟାରେ କାହିଁକି ଘୃଣା ରହିବ, କ୍ଷମତାମାନେ କାହିଁକି ଅନ୍ଧ ହେବେ ଏବଂ ଅପରପକ୍ଷରେ ଯାବତୀୟ ଅର୍ଥରେ ସାଧାରଣ ମନୁଷ୍ୟମାନେ ସେଗୁଡିକୁ କାହିଁକି ସହି ନେଉଥିବେ, ମଣିଷଠାରେ ସର୍ବୋପରି ଏକ ବିବେକ ରହିଛି ବୋଲି ମୂଳଭୁତ ବିଶ୍ୱାସଟିଏ ସହିତ ଜୀବନ ବଞ୍ଚିବା ଲାଗି ଜାଗ୍ରତ ରହିଥିବା ମନୁଷ୍ୟମାନେ ହିଁ ତାହା କରିପାରିବେ ।

ଶ୍ରୀଯୁକ୍ତ ପ୍ରଫୁଲ୍ଲ ଦାସ ପୁସ୍ତକଟିର ଓଡ଼ିଆ ଅନୁବାଦ କରିଛନ୍ତି । ଆମ ଭାଷାରେ ସେହି ମର୍ମହୀନ ଅକାଣ୍ଡ ସମ୍ବନ୍ଧରେ ମୋ ଜାଣିବାରେ ଏଇଟି ହେଉଛି ସର୍ବପ୍ରଥମ ପୁସ୍ତକ । ମୁଁ ଅନୁବାଦକଙ୍କୁ ଅଭିନନ୍ଦନ ଜଣାଉଛି । ପାଠକେ ଅବଶ୍ୟ ଲକ୍ଷ୍ୟ କରିପାରିବେ ଯେ,

ଆଉସ୍‌ଭିଡ୍‌ଜ୍‌ର ବନ୍ଦିନୀମାନେ ସେମାନଙ୍କୁ ନେଇ ଖେଳାଯାଇଥିବା ପିଶାଚପକ୍ଷଟାର ଖେଳଟାକୁ ଆଦୌ ମାନିନେଇ ନାହାନ୍ତି । ବାଧ ହୋଇଛନ୍ତି, ତଥାପି ଆପଣାର ଅନ୍ତଃକରଣରେ କଦାପି ସ୍ୱୀକାର କରି ନେଇନାହାନ୍ତି । ଆଦୌ ଭୀରୁ ପରି ନୁହେଁ, ଏକ ନୀରବ ପ୍ରତ୍ୟାଖ୍ୟାନ ସହିତ ଅବଶ୍ୟମ୍ଭାବୀ ଗୁଡ଼ିକର ସମ୍ମୁଖୀନ ହୋଇଛନ୍ତି । କେତେକ ପ୍ରତିବାଦ ବି କରିଛନ୍ତି । ଏବେ ତ ମନେ ହେଉଛି ସେହି ପ୍ରତିବାଦଟା ହିଁ ଆମର ଏହି ନିର୍ଯ୍ୟାତିତ ଏକାଳକୁ ମଧ୍ୟ ବାଟ ଦେଖାଇବ, ବଳ ଦେବ । ଏଥିରେ ସନ୍ଦେହ ନାହିଁ ଯେ, ପୃଥିବୀରେ ମନୁଷ୍ୟମାନେ ଆଉ କେବେହେଲେ ସେହି ମାରଣ—ଶିବିରର ସମ୍ମୁଖୀନ ହେବେ ନାହିଁ । କୌଣସି ରାଷ୍ଟ୍ର ସେ ଯାଏ ସାହସ କରି ପାରିବ ନାହିଁ । ବହପ ଛାଡ଼ିବ ନାହିଁ ସତ, କିନ୍ତୁ ପାରିବ ନାହିଁ । ତଥାପି ଲଢ଼େଇ ଲାଗି ରହିଥିବ, ପ୍ରତିବାଦ ଓ ପ୍ରତିରୋଧ ଲାଗିଥିବ ଏ ଯୁଗର ଅସଲ ଚେତନାଟି ହେଉଛି ସମ୍ଭବତଃ ପ୍ରତିବାଦ ତଥା ପ୍ରତିରୋଧ କରିବାର ସେହି ସାହସଯୁକ୍ତ ଅସଲ ଚେତନାଟି ।

ପ୍ରସ୍ତୁତ ଅନୁବାଦ ପୁସ୍ତକଟି ପାଠକମାନଙ୍କୁ ସର୍ବୋପରି ସେହି ଉଦ୍‌ବୋଧନଟିକୁ ଦେବାଲାଗି ସମର୍ଥ ହେଉ । ଜର୍ମାନୀରେ ଏକଦା ଆଚରିତ ହୋଇଥିବା ଏହି ଅତ୍ୟନ୍ତ ନିନ୍ଦନୀୟ କାହାଣୀଟି ମନୁଷ୍ୟମାନଙ୍କର ଏହି ସକାରାତ୍ମକ ନାନା ଆଶା ଓ ଆସ୍ଥାର ପୃଥିବୀରେ କୌଣସି ଦେଶରେ କୌଣସି ରାଷ୍ଟ୍ର ଦ୍ୱାରା କରାଯିବାର ଯେପରି କୌଣସି ଅବକାଶ କେବେହେଲେ ନଆସେ, ସେଥିପାଇଁ ଅଧିକରୁ ଅଧିକ ମଣିଷ ଚେତା ହୋଇ ରହିବାକୁ ହିଁ ଆପଣାର ସର୍ବପ୍ରଥମ ଧର୍ମ ସଦୃଶ ଗ୍ରହଣ କରିବାକୁ ସମର୍ଥ ହୁଅନ୍ତୁ ।

— ଚିତ୍ତରଞ୍ଜନ ଦାସ

# ଓଡ଼ିଆ ଅନୁବାଦକଙ୍କର ଅଭିମତ

'ନାତ୍‌ସୀ କନ୍‌ସେଣ୍ଟ୍ରେସନ୍ କ୍ୟାମ୍‌'– ଏହି ତିନିଗୋଟି ଶବ୍ଦ ସହ ଆମର ସାମ୍ବେଦନିକ ସମ୍ବନ୍ଧ ପ୍ରାୟ ପଞ୍ଚଷଠୀ ବର୍ଷ ପୁରୁଣା । କାରଣ ଯେଉଁ ବିଶ୍ୱଯୁଦ୍ଧର ଅନ୍ତରାଳରେ ମାନବ ଇତିହାସର ସେହି ଜଘନ୍ୟତମ ନାରକୀୟ ନରମେଧ ଯଜ୍ଞ ସଂଘଟିତ ହୋଇଥିଲା ସେହି ସମୟ ମଧ୍ୟରେ ଆମେ କୈଶୋର ଅତିକ୍ରମ କରି ତାରୁଣ୍ୟରେ ପ୍ରବେଶ କରିଥିବାରୁ ସେହି ଭୟାବହ ଘଟଣାଗୁଡିକ ଗଭୀର ଭାବରେ ରେଖାପାତ କରିଥିଲା ଆମ ହୃଦୟରେ । ୧୯୪୧ ମସିହାରେ କୁଳଙ୍ଗ ଉପକୂଳରେ ଜାପାନର ବୋମାମାଡରେ ବ୍ରିଟିଶ ଜାହାଜଗୁଡିକ ଧ୍ୱସ୍ତବିଧ୍ୱସ୍ତ ହୋଇଯିବା ଫଳରେ ରଣକ୍ଷେତ୍ର ଆମ ପୂର୍ବୋପକୂଳ ଅଧିବାସୀମାନଙ୍କର ଅତି ନିକଟକୁ ଚାଲି ଆସିଲା । ବୋମା ଆକ୍ରମଣରୁ ରକ୍ଷା ପାଇବା ପାଇଁ ପ୍ରତି ବାରିରେ ଟ୍ରେଞ୍ଚ ଖୋଳାହେବା ଏବଂ ରାତିରେ ଘର ବାହାରେ ଆଲୁଅ ବ୍ୟବହାର ନ କରିବା ପାଇଁ କଡା ସରକାରୀ ନିର୍ଦ୍ଦେଶ ଜାରି ହେବା ସାଙ୍ଗକୁ ଅସଂଖ୍ୟ ଯୁଦ୍ଧ ବିମାନ ଭୟଙ୍କର ଗର୍ଜନ କରି ଦିନରାତି ଆକାଶରେ ପଇଁତରା ମାରିବା ଯୋଗୁଁ ଘରେ ଘରେ ଭୟାବହ ଯୁଦ୍ଧ ଆତଙ୍କ ସୃଷ୍ଟି ହୋଇଗଲା । ଏପରିକି ହିଟ୍‌ଲର୍ ନାଁ ନିପଟ ଗାଁଗହଳରେ ବି ଏଭଳି କୋକୁଆ ଭୟ ସୃଷ୍ଟି କରିଥିଲା ଯେ ମାଆମାନେ ହିଟ୍‌ଲର ଆସୁଛି କହି ପିଲାମାନଙ୍କ କାନ୍ଦଣା ବନ୍ଦ କରୁଥିଲେ । ଓଃ ! କି ଆତଙ୍କ ଜନକ ସେ ଦିନ ଗୁଡିକ !

ଆମ ସୌଭାଗ୍ୟକୁ ଆମେ ଘରେ ସେତେବେଳେ 'ସମାଜ', 'ବସୁମତୀ' (ବଙ୍ଗଳା) ଓ 'ଅମୃତ ବଜାର ପତ୍ରିକା' (ଇଂରାଜୀ) ନିୟମିତ ପଢ଼ିବାକୁ ପାଉଥିଲୁ । ତେଣୁ ଯୁଦ୍ଧ ଚାଲୁଥିବା ସମୟରେ ସେହି ଇହୁଦୀ ସଂହାର ସଂପର୍କରେ ଯେତିକି କାଁ–ଭାଁ ସଂବାଦ ବାହାରୁଥିଲା ତାହା ମଧ୍ୟ କମ୍ ହୃଦୟ ବିଦାରକ ନଥିଲା । ଯୁଦ୍ଧ ଶେଷ ହେବା ପରେ ସେହି ନରମେଧ ଯଜ୍ଞର ଯେଉଁ ଟିକିନିଖି ବିବରଣୀ ପ୍ରକାଶ ପାଇଲା ତାହା ପାଠ କରି ନିଷ୍ଠୁରତମ ବ୍ୟକ୍ତିର ଚକ୍ଷୁ ମଧ୍ୟ ଲୋତକାର୍ଦ୍ର ହୋଇ ଯାଉଥିଲା । ଅବଶ୍ୟ ଗତ ଷାଠିଏ ବର୍ଷ ଭିତରେ ଇଂରାଜୀ ଓ ବଙ୍ଗଳାରେ ପ୍ରକାଶିତ ସେହି ସଂପର୍କୀୟ କେତେକ ପୁସ୍ତକ

ପଢ଼ିବାର ସୁଯୋଗ ମୋତେ ମିଳିଛି କିନ୍ତୁ କୌଣସି ପ୍ରତ୍ୟକ୍ଷଦର୍ଶୀ ବିବରଣୀ ମୁଁ ଆଜି ପର୍ଯ୍ୟନ୍ତ ପଢ଼ିପାରି ନଥିଲି ।

୨୦୦୦ ମସିହା ଫେବୃୟାରୀ ମାସରେ ସାରା ନୋମ୍ୱେଆର୍ଗଙ୍କ ରଚିତ ଏହି ଇଂରାଜୀ ବହି ଖଣ୍ଡିକ ହଠାତ୍ ମୋ ପାଖରେ ପହଞ୍ଚିଗଲା । ଓଡ଼ିଆ ପାକ୍ଷିକ ଅଧିକାର ପତ୍ରିକାରେ ପ୍ରକାଶ କରିବା ପାଇଁ ଏହାର ଓଡ଼ିଆ ଅନୁବାଦ କରିବାକୁ ସି.ପି.ଆଇ.ଏମ ନେତା ଶ୍ରୀ ଜନାର୍ଦ୍ଦନ ପତି ମୋ ନିକଟକୁ ବହିଟିକୁ ପଠାଇଥିଲେ । ମୁଁ ଅବଶ୍ୟ ପୂର୍ବରୁ ଇଂରାଜୀରୁ ଓଡ଼ିଆ ଅନୁବାଦ କାମ କିଛି କିଛି କରିଥିଲି ଏବଂ ତାହା ପାଠକମାନଙ୍କ ଦ୍ୱାରା ଆଦୃତ ହୋଇଥିଲା କିନ୍ତୁ ଏହି ଶ୍ରେଣୀୟ ବହି ପଢ଼ିବା ମୋ ପକ୍ଷେ ପ୍ରଥମ– ତାକୁ ଓଡ଼ିଆରେ ଅନୁବାଦ କରିବା କଥା କାହିଁ କେତେ ଦୂରରେ...... । ଏହି ବହିର ଲେଖିକା ଶ୍ରୀମତୀ ନୋମ୍ୱେଆର୍ଗ ଏହାକୁ ନିଜ ମାତୃଭାଷା ପୋଲିଶ୍ (ପୋଲାଣ୍ଡ ଦେଶର ଭାଷା)ରେ ଲେଖିଥିଲେ କିନ୍ତୁ ତାହା ପ୍ରକାଶ ପାଇବା ସମ୍ଭବ ହୋଇ ନଥିଲା । ଇସ୍ରାଏଲ୍‌ର ଅଭିଲେଖାଗାରରେ ସଂରକ୍ଷିତ ସେହି ମୂଳଲେଖାର ଟାଇପ ହୋଇଥିବା ପୋଲିଶ୍ ପାଣ୍ଡୁଲିପିରୁ ଆମେରିକୀୟ ଲେଖିକା ଇଂରାଜୀରେ ଅନୁବାଦ କରିଛନ୍ତି । କିନ୍ତୁ ସେହି ଇଂରାଜୀ ଅନୁବାଦରେ ମଧ ବହୁ ପୋଲାଣ୍ଡୀୟ ଶବ୍ଦ, ନାମ ଓ ପଦବୀ ଅପରିବର୍ତ୍ତିତ ରହିଅଛି ।

ଯାହାହେଉ, ମୁଁ ଅପେକ୍ଷା ନକରି ବହିଟିକୁ ଆମୂଳଚୂଳ ଦୁଇ ତିନିଥର ପଢ଼ିଗଲି । ଇହୁଦୀ ସାହିତ୍ୟରେ ବିଶେଷତଃ ଇହୁଦୀ ସଂହାର ସାହିତ୍ୟରେ ସାରା ନୋମ୍ୱେଆର୍ଗଙ୍କ ଅବଦାନ ଅନନ୍ୟ । ସେ ସଂପର୍କରେ ସମ୍ପାଦକଙ୍କ ଶେଷକଥାରେ ବିସ୍ତୃତ ଆଲୋଚନା କରାଯାଇଛି । ଯାହାହେଉ, କାଳବିଳମ୍ୱ ନକରି ମୁଁ ଅନୁବାଦ କାମ ମଧ ଆରମ୍ଭ କରିଦେଲି ଏବଂ ପାକ୍ଷିକ ଅଧିକାରରେ ତାହା ଧାରାବାହିକ ପ୍ରକାଶିତ ପାଇବାକୁ ଲାଗିଲା । ଅନୁବାଦଟିକୁ ପାଠକମାନେ ପସନ୍ଦ କରୁଥିବା ବିଷୟ ସଂପାଦକ ମହୋଦୟ ମୋତେ ଜଣାଉଥାନ୍ତି । ଚାରିମାସ ମଧ୍ୟରେ ଅନୁବାଦ କାର୍ଯ୍ୟ ଶେଷ ହୋଇଗଲା ।

ବହିଟି ଅନୁବାଦ ପରେ ନାତି ଜଗତମୋହନ ତିଆରି କରିଦେଲା ପ୍ରେସ କପି । ବହିଟି ଅନୁବାଦ କରିବା ବେଳେ ସେଥିରେ ଥିବା ସଂପାଦକଙ୍କ ଶେଷକଥାଟି ଅନାବଶ୍ୟକ ବୋଲି ଭାବି ଛାଡି ଦେଇଥିଲି । କିନ୍ତୁ କପି ରାଇଟ୍ସ ହୋଲଡର୍ 'ନର୍ଥ କାରୋଲିନା ପ୍ରେସ୍ କର୍ତ୍ତୃପକ୍ଷ' ଦେଖିବା ପାଇଁ ଏହାକୁ ଅନୁବାଦ କରିବାକୁ ପଡିଲା । ସେତେବେଳେ ମୁଁ ଅସୁସ୍ଥ । କଲମ ଧରିବା ମୋ ପକ୍ଷେ ସମ୍ଭବ ନଥିଲା । ସେହି ଦୁଃସମୟରେ ମୋତେ

ସହାୟତା ଦେଲେ ମୋର ପରମ ଆତ୍ମୀୟ ଗାନ୍ଧିପଲ୍ଲୀର ଶ୍ରୀଅର୍ଜ୍ଜୁନ ଚରଣ ଦାସ । ସେ ଜଣେ ସଂସ୍କୃତିପ୍ରେମୀ ଓ ସାହିତ୍ୟାନୁରାଗୀ ବ୍ୟକ୍ତି । ଶ୍ରୁତଲିଖନ ନେବାରେ ତାଙ୍କର ପୂର୍ବାନୁଭୂତି ଥିଲା । ପ୍ରଖ୍ୟାତ ଫତୁରାନନ୍ଦଙ୍କ ଶେଷ ଜୀବନରେ ସେ ଯେ କେବଳ ତାଙ୍କର ସହାୟକ ଥିଲେ ତା ନୁହେଁ ବରଂ ତାଙ୍କ 'ଫୁଟା ଡଙ୍ଗାର କାହାଣୀ'ର ସେ ସଂପୂର୍ଣ୍ଣ ଶ୍ରୁତଲିଖନ ମଧ୍ୟ ନେଇଥିଲେ । ତାଙ୍କର ସେହି ସହାୟତା ପାଇଁ ତାଙ୍କୁ ସାଧୁବାଦ ଜଣାଉଛି ।

ମୋର ତିନିଖଣ୍ଡ ବହି ପ୍ରକାଶ କରିଥିବା ଲୋହିଆ ଏକାଡେମୀ ଟ୍ରଷ୍ଟର ଡାକ୍ତର ସରସ୍ୱତୀ ସ୍ୱାଇଁ ନର୍ଥ କ୍ୟାରୋଲିନା ୟୁନିଭରସିଟି ପ୍ରେସ୍ ସହିତ ପତ୍ରାଳାପ କରି ବହିଟି ପ୍ରକାଶ କରିବାକୁ ଅନୁମତି ପାଇବା ପରେ ମୋର ଚିନ୍ତା ପଡିଲା ବହିଟିର ମୁଖବନ୍ଧ ଲେଖିବା ପାଇଁ ମୁଁ କେଉଁ ବିଦ୍ୱାନଙ୍କ ପାଖରେ ପହଞ୍ଚିବି । କାରଣ ମୋର ପ୍ରତ୍ୟେକ ବହିରେ କୌଣସି ନା କୌଣସି ବିଶିଷ୍ଟ ବ୍ୟକ୍ତିଙ୍କ ମୁଖବନ୍ଧ ସ୍ଥାନିତ ହୋଇଛି । ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଓ ଡକ୍ଟର ମହତାବଙ୍କ ଠାରୁ ଆରମ୍ଭ କରି ଡକ୍ଟର ଲକ୍ଷ୍ମୀ ସେହଗଲ ଓ ପ୍ରଫେସର ସମର ଗୁହଙ୍କ ପର୍ଯ୍ୟନ୍ତ ଓ ବିପ୍ଲବୀ ଗଣେଶ ଘୋଷଙ୍କ ଠାରୁ ଆରମ୍ଭ କରି ଶ୍ରୀଯୁକ୍ତ ରବି ରାୟ ଓ ଡକ୍ଟର ନାରାୟଣନ୍‌ଙ୍କ ପର୍ଯ୍ୟନ୍ତ ସମସ୍ତେ ଏହି ଅକିଞ୍ଚନର ସାହିତ୍ୟ ସୃଷ୍ଟି ପ୍ରତି ବିପୁଳ ଶୁଭେଚ୍ଛା ଜ୍ଞାପନ କରିଛନ୍ତି । ମନକୁ ଆସିଲା ଏଥର ଧରିବି ପୂଜ୍ୟ ଚିତ୍ତଭାଇଙ୍କୁ । ସୁନାମଧନ୍ୟ ଚିତ୍ତରଞ୍ଜନ ଦାସ । ମୋ ଜାଣିବାରେ ସେ ଓଡ଼ିଶାରେ ଏକମାତ୍ର ଶିକ୍ଷାବିତ୍ ଯିଏ କି ଇହୁଦୀ ରାଜ୍ୟ ଇସ୍ରାଏଲ୍ ଓ ପୂର୍ବ ୟୁରୋପୀୟ ଦେଶମାନଙ୍କରେ ମାସ ମାସ ବର୍ଷ ବର୍ଷ ଧରି ରହିଛନ୍ତି । କେତେବେଳେ ସେ ଜଣେ ଜିଜ୍ଞାସୁ ଛାତ୍ର ଭାବରେ ବିଦ୍ୟାର୍ଜ୍ଜନ କରିଛନ୍ତି ତ ଆଉ କେତେବେଳେ ପ୍ରଖ୍ୟାତ ବିଶ୍ୱବିଦ୍ୟାଳୟମାନଙ୍କରେ ଜ୍ଞାନଗର୍ଭକ ଅଭିଭାଷଣ ବି ପ୍ରଦାନ କରିଛନ୍ତି । ସ୍ୱାଧୀନ ଇସ୍ରାଏଲ ସୃଷ୍ଟି ହେବାର ମାତ୍ର ପାଞ୍ଚବର୍ଷ ପରେ ସେ ପ୍ରଥମ ଥର ପାଇଁ ଯାଇଥିଲେ ଇସ୍ରାଏଲ୍ । ସେତେବେଳେ ସାରା ପୃଥିବୀର ଅନେକ ରାଷ୍ଟ୍ରରେ ଦ୍ୱିତୀୟଶ୍ରେଣୀ ନାଗରିକ ଭାବେ କାଳାତିପାତ କରୁଥିବା ଇହୁଦୀମାନେ ସେଠାରେ ଏକତ୍ରିତ ହୋଇଥିଲେ ନିଜ ରାଷ୍ଟ୍ରକୁ ଗଢ଼ିବା ପାଇଁ । ଲଣ୍ଡା ପାହାଡ, ଦୂବ କଅଁଳୁ ନଥିବା ଶୁଷ୍କ ମରୁଭୂଇଁକୁ ସେହିମାନଙ୍କର ଅକ୍ଲାନ୍ତ ପରିଶ୍ରମ ତାହାକୁ ଏକ ଶସ୍ୟଶ୍ୟାମଳ ସମୃଦ୍ଧ ରାଷ୍ଟ୍ରରେ ପରିଣତ କରିଅଛି । ଚିତ୍ତରଞ୍ଜନଙ୍କ ରଚିତ 'ମିତ୍ରସ୍ୟ ଚକ୍ଷୁସା' ବହିଟି ସେ ସଂପର୍କରେ ଯେତିକି ଶିକ୍ଷାପ୍ରଦ ତତୋଽଧିକ ସୁଖପାଠ୍ୟ ଓ ମନୋମୁଗ୍ଧକର । ପୂଜ୍ୟ ଚିତ୍ତଭାଇଙ୍କ ସହିତ ମୋର ପରିଚୟ ୧୯୫୫ରେ ବିନୋବା ପଦଯାତ୍ରା ସମୟରୁ । ଏବେ ବିଶେଷ ଦେଖା ସାକ୍ଷାତ ହେଉ ନଥିଲେ ମଧ୍ୟ ପତ୍ରାଳାପର

ଗତି ଅବିରାମ । ସେଥିରେ ପୁଣି ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଜୀବନୀ ପୁସ୍ତକରେ ମୋର ୨ ଖଣ୍ଡ ଚିଠିକୁ ଉଦ୍ଧୃତ କରି ମୋତେ କୃତାର୍ଥ କରିଅଛନ୍ତି । ତାଙ୍କର ପ୍ରତ୍ୟେକ ଚିଠି ଏତେ ପ୍ରେରଣାଦାୟକ ଓ ସେଥିରେ ଏତେ ଜୀବନୀ ଶକ୍ତି ଥାଏ ଯେ, ମୋ ଭଳି ମୁମୂର୍ଷୁ ବ୍ୟକ୍ତି ମଧ୍ୟ ସକ୍ରିୟ ହୋଇଉଠେ ।

ମନସ୍ୱୀ ଚିତ୍ତରଞ୍ଜନ ଏହି ଅକିଞ୍ଚନ ଅନୁବାଦକର ଅନୁରୋଧ ରକ୍ଷା କରି ଏକ ଉଚ୍ଚକୋଟୀର ଚିନ୍ତାଦ୍ୟୋତକ ମୁଖବନ୍ଧ ଲେଖିଦେଇଥିବାରୁ ମୁଁ ତାଙ୍କ ନିକଟରେ ଚିର କୃତଜ୍ଞ । ସେ ଯଥାର୍ଥରେ ସମସ୍ତଙ୍କୁ ଚେତାଇ ଦେଇ ଅଛନ୍ତି ଯେ ନାତ୍ସୀ ଅତ୍ୟାଚାରକୁ ଆମେ କଦାପି କେବଳ ଏକ ରାଜନୈତିକ ବ୍ୟାପାର ଭାବେ ଗ୍ରହଣ କରିବା ନାହିଁ । ଅର୍ଥାତ୍ ଏହାକୁ କେବଳ ନାତ୍ସୀବାଦର ସ୍ୱାଭାବିକ ବିଚାର ବୋଲି କହି ପାରିବା ନାହିଁ । ଆମେ ମଧ୍ୟ ଦେଖୁଛୁ ଯେ ନାତ୍ସୀବାଦ ନାମ ଲୋପ ପାଇଥିଲେ ମଧ୍ୟ ନାତ୍ସୀବାଦୀ ବିଚାର ବା କାର୍ଯ୍ୟକଳାପ ଆଜି ସାରା ବିଶ୍ୱରେ ଭିନ୍ନ ଭିନ୍ନ ରୂପରେ ପ୍ରକଟିତ ହେବାରେ ଲାଗିଛି । ସର୍ବଶ୍ରେଷ୍ଠ ଶାସନ ବ୍ୟବସ୍ଥା ବୋଲି କୁହାଯାଉଥିବା ଗଣତନ୍ତ୍ରରେ ମଧ୍ୟ ମୁଷ୍ଟିମେୟ କ୍ଷମତାନ୍ଧ ଶାସକ ଶ୍ରେଣୀ ଦେଶ ସମ୍ପତ୍ତିର ସିଂହଭାଗ ଆତ୍ମସାତ୍ କରି କ୍ଷୁଧା-ତୃଷାରେ ଜର୍ଜରିତ ଅସଂଖ୍ୟ ଗଣମାନଙ୍କୁ ପୋକମାଛି ପରି ମରିବାକୁ ବାଧ୍ୟ କରୁଛନ୍ତି । ତାହା ଇହୁଦୀ ମାରଣ ତୁଳନାରେ କମ୍ ଯନ୍ତ୍ରଣାଦାୟକ ନୁହେଁ । ପୃଥିବୀର ଅଧିକାଂଶ ଶାସକ, ସେ ମିଆଁମାର ସାମରିକ ଶାସକ ହେଉ ବା ଆଫ୍ରିକାର ବିଭିନ୍ନ ଜନଜାତି ଶାସିତ କ୍ଷୁଦ୍ରାଦପି କ୍ଷୁଦ୍ର ରାଷ୍ଟ୍ର ହେଉ ସର୍ବତ୍ର ହିଟଲରର ନବ୍ୟ ଅବତାରମାନେ ରାଜତ୍ୱ କରୁଛନ୍ତି ବୋଲି କହିଲେ ତାହା ଅତିରଂଜନ ହୋଇପାରେ କିନ୍ତୁ ହିଟଲରୀ ଶାସନ ଛଡା ଏଭଳି ଶାସକମାନଙ୍କୁ ଆଉ କଣ ବା କୁହା ଯାଇ ପାରନ୍ତା ! କିନ୍ତୁ ଶୋଷକ ଶ୍ରେଣୀ ଜାଣେ ନାହିଁ ଯେ ଶୋଷଣର ଲଘୁଚାପ ତାହାର ଚତୁର୍ଦ୍ଦିଗର ବିପ୍ଳବର ଝଡମାନଙ୍କୁ ଆକର୍ଷିତ କରିଥାଏ । ଚିତ୍ତରଞ୍ଜନୀୟ ଶୈଳୀରେ ବ୍ରହ୍ମ ତାତି ଯାଏ, ସତକୁ ସତ ଆଜି ସାରା ପୃଥିବୀରେ ବ୍ରହ୍ମମାନେ ତାତିଲେଣି ଏବଂ କେଉଁଠି କେଉଁଠି ବାଇଆ ହୋଇ ନାଚିଲେଣି । କିନ୍ତୁ ହିଟଲରମାନେ ସହଜରେ ମରନ୍ତି ନାହିଁ ଏବଂ ଜାଗ୍ରତ ବ୍ରହ୍ମମାନେ ସେମାନଙ୍କୁ ସହଜରେ ବଞ୍ଚିବାକୁ ଦିଅନ୍ତି ନାହିଁ । ପୃଥିବୀରେ ହିଟଲର ଶୂନ୍ୟ ସମାଜ ଅପରିହାର୍ଯ୍ୟ ଓ ସୁନିଶ୍ଚିତ ।

ଡାକ୍ତର ସରସ୍ୱତୀ ସ୍ୱାଇଁ ମୋର ସମସ୍ତ ପୁସ୍ତକ ଲୋହିଆ ଏକାଡେମୀ ଟ୍ରଷ୍ଟ ପକ୍ଷରୁ ପ୍ରକାଶ କରାଇବାକୁ ସ୍ୱେଚ୍ଛାକୃତଭାବରେ ସେ ମୋତେ ଯାହା କହିଥିଲେ ଏ ପର୍ଯ୍ୟନ୍ତ ତାହାର ସାମାନ୍ୟ ବ୍ୟତିକ୍ରମ ମଧ୍ୟ ହୋଇନାହିଁ । ଟ୍ରଷ୍ଟ୍ ଦ୍ୱାରା ପ୍ରକାଶିତ ଏହା ହେଉଛି

ମୋର ଚତୁର୍ଥ ପୁସ୍ତକ । ଅଧ୍ୟାପକ ଶ୍ରୀମାନ୍ ସମୀର କୁମାର ରାଉତ ଓ ଆକୃତି ଗ୍ରାଫିକ୍ସର ଭାଇ ଶ୍ରୀ ଚକ୍ରଧର ମିଶ୍ରଙ୍କର ଆନ୍ତରିକ ସହଯୋଗ ମିଳି ନ ଥିଲେ ଏହି ପୁସ୍ତକଟିର ପ୍ରକାଶରେ ବିଳମ୍ବ ହୋଇଥାନ୍ତା ମୁଁ ସମସ୍ତଙ୍କ ନିକଟରେ ଋଣୀ ଓ ଚିରକୃତଜ୍ଞ । ପୁସ୍ତକଟି ଅନୁବାଦ କରିବା ସମୟରେ ମୋ ପାଇଁ ପାରିପାର୍ଶ୍ୱିକ ପରିସ୍ଥିତି ଆଦୌ ଅନୁକୂଳ ନଥିଲା । କିନ୍ତୁ ସାନଭାଇ ବିଧାନ, ପୁତ୍ରସମ ମନମୋହନ, ଉତ୍କଳ ଆର୍ଟପ୍ରେସର ଶ୍ରୀନରହରି ନନା ତଥା ତାଙ୍କର ସହଧର୍ମିଣୀ ଶ୍ରଦ୍ଧେୟା ରମା, ଦିବଂଗତ ବାଲ୍ୟବନ୍ଧୁ ଶ୍ରୀ ଗଙ୍ଗାଧର ରଥ ଓ ତାଙ୍କ ଦିବଂଗତ ପତ୍ନୀ ଚନ୍ଦ୍ରମା ନାନୀ । ସର୍ବଜନ ପ୍ରିୟ ଦିବଂଗତ ଡାକ୍ତର ଜେ.ଏନ.ଦାସ ମହାଶୟଙ୍କର ସାମୟିକ ଉପସ୍ଥିତି, ଆନ୍ତରିକ ସାହାଯ୍ୟ-ସାହଚର୍ଯ୍ୟ ଓ ସେବା ସମସ୍ତ ପ୍ରକାର ବାଧା ବିଘ୍ନକୁ ଦୂରୀଭୂତ କରିଥିଲା । ସେମାନଙ୍କର ସେହି ଅକୃତ୍ରିମ ସ୍ନେହ ଓ ଶ୍ରଦ୍ଧା ଅବିସ୍ମରଣୀୟ ।

ଇତି

ତା. ୨୭.୦୫.୦୮ରିଖ — ପ୍ରଫୁଲ୍ଲ ଦାସ

ଅଗ୍ନିଯୁଗ ଆଶ୍ରମ
କେନ୍ଦ୍ରାପଡା

# ପ୍ରକାଶକୀୟ

ଇତି ମଧ୍ୟରେ ଲୋହିଆ ଏକାଡେମୀ ତରଫରୁ କେତେଗୁଡିଏ ଉଚ୍ଚମାନର ପୁସ୍ତକ ପ୍ରକାଶିତ ହୋଇସାରିଛି । ତେବେ ଏ ଯେଉଁ ଅନୁବାଦ ପୁସ୍ତକ ''ଆଉସ୍‌ଭିତ୍‌ଜ୍ – ଏକ ବିଡମ୍ବିତ ଭୂମିର ସତ୍ୟ କାହାଣୀ'' ଏକ ସ୍ୱତନ୍ତ୍ର ଧରଣର ପୁସ୍ତକ । ପୂର୍ବରୁ ନାତ୍‌ସୀ ଅତ୍ୟାଚାରର ଲୋମହର୍ଷଣକାରୀ ଘଟଣାକୁ ନେଇ ଇଂରେଜୀ ଭାଷାରେ ଅନେକ ପୁସ୍ତକ ରଚନା କରାଯାଇଛି । ହେଲେ, ଏଇ ପୁସ୍ତକର ମୂଳ ଲେଖିକା ପୋଲାଣ୍ଡ ନିବାସୀ ସାରା ନୋମ୍ବେଆର୍ଗ ପ୍ରିଷ୍ଟିକ୍ ଯେଭଳି ଭାବେ ସେହି ଅକଥନୀୟ ଅତ୍ୟାଚାରର ଶିକାର ହୋଇ ନିଜର ତଥା ଇହୁଦୀମାନଙ୍କର ଯନ୍ତ୍ରଣା କାହାଣୀ ଲିପିବଦ୍ଧ କରିଯାଇଛନ୍ତି ତାହା ଅନ୍ୟତ୍ର ବିରଳ । ଇହୁଦୀ ନରସଂହାର ସଂପର୍କରେ ଓଡ଼ିଆରେ ସେଭଳି କୌଣସି ବିଶେଷ ତଥ୍ୟ ସଂବଳିତ ପୁସ୍ତକ ରଚିତ ହୋଇଥିବା କଥା ଆମ ନଜରକୁ ଆସିନାହିଁ ।

ପୁସ୍ତକଟିର ଓଡ଼ିଆ ଭାଷାନ୍ତର କରିଥିବା ଲେଖକ ଶ୍ରୀଯୁକ୍ତ ପ୍ରଫୁଲ୍ଲ ଦାସ ମଧ୍ୟ ଆମ ପାଖରେ ଅପରିଚିତ ନୁହଁନ୍ତି । ସ୍ୱାଧୀନତା ସଂଗ୍ରାମର ଇତିହାସ ସଂପର୍କରେ ପ୍ରାୟ ୧୪ଖଣ୍ଡି ପୁସ୍ତକ ରଚନା କରି ସେ ଓଡ଼ିଆ ସମର ସାହିତ୍ୟକୁ ଯେଭଳି ଭାବେ ସମୃଦ୍ଧ କରିଛନ୍ତି ତାହା ବାସ୍ତବରେ ପ୍ରଶଂସନୀୟ । ଏହି ପୁସ୍ତକଟି ତାଙ୍କର ଏକ ଅନୁବାଦ ପୁସ୍ତକ ହେଲେ ହେଁ ଅନୁବାଦରେ ସେ ଯେପରି ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି ତାହା ଅଧିକାଂଶ ପାଠକଙ୍କୁ ଆକୃଷ୍ଟ କରିବ ନିଶ୍ଚୟ । ଭାବରେ ତନ୍ମୟତା ଓ ଭାଷାର ସରଳତାରେ ଏହି ପୁସ୍ତକଟି ହୋଇଛି ଋଦ୍ଧିମନ୍ତ ।

ସବୁଠାରୁ ଉଲ୍ଲେଖଯୋଗ୍ୟ ବିଷୟ ହେଉଛି ଯେ ଏ ପୁସ୍ତକ ପ୍ରକାଶନ ପାଇଁ ''ଦି ୟୁନିଭରସିଟି ଅଫ୍ ନର୍ଥ କାରୋଲିନା ପ୍ରେସ୍'' କର୍ତ୍ତୃପକ୍ଷ ଯେଭଳି ଭାବେ ନିଃସର୍ତ୍ତ ଅନୁମତି ପ୍ରଦାନ କରିଛନ୍ତି ତାହା ବାସ୍ତବିକ ପ୍ରସଂଶନୀୟ ।

ପୁସ୍ତକଟି ବୁଦ୍ଧିଜୀବି, ବିଭିନ୍ନ ସମାଜିକ କର୍ମକର୍ତ୍ତା ତଥା ସାଧାରଣ ବର୍ଗର ପାଠକଙ୍କ ପଠନ ପିପାସା ଚରିତାର୍ଥ କରିବାରେ ଯଥାର୍ଥ ସହାୟକ ହୋଇପାରିବ ବୋଲି ଆମେ ଆଶା କରୁଛୁ ।

ପ୍ରକାଶକ

ଲୋହିଆ ଏକାଡେମୀ ଟ୍ରଷ୍ଟ

# ସୂଚୀପତ୍ର

– ୧ –

# ବିଚ୍ଛେଦ

ମୁଁ ସେହି ତିନିଥାକିଆ ଖଟର ତଳ ଥାକରେ କମ୍ବଳ ଘୋଡ଼େଇ ହୋଇ ପଡ଼ିଥାଏ । ମୋତେ ଥଣ୍ଡା ଲାଗୁ ନଥାଏ କିମ୍ବା ଭୋକ ବି ଲାଗୁ ନଥାଏ । ଶୋଷ ମାରିବାକୁ ମୁଁ ପେଟେ ଥଣ୍ଡା ପାଣି ପିଇ ସାରିଥାଏ । ଉକୁଣୀମାନଙ୍କ ଆକ୍ରମଣରୁ ମୁଁ ମଧ ମୁକ୍ତ । ମୁଁ ବେଶ୍ ଖୁସି ଥାଏ ବୋଲି ଆପଣ କହି ପାରନ୍ତି । ମୋର ଚତୁର୍ଦ୍ଦିଗରେ ସମସ୍ତେ ଶୋଇ ଯାଇଥାନ୍ତି । କେମିତି କେଜାଣି ମୋ ମନ ଭିତରେ ଆଶାର ଆଲୋକ ରେଖାଟିଏ ସଞ୍ଚରି ଗଲା । ମନେ ମନେ ଭାବିଲି, ମୁଁ ବୋଧହୁଏ ଷ୍ଟୁଥଫ୍(ବଲ୍‌ଟିକ ସାଗର ଉପକୂଳରେ ଅବସ୍ଥିତ ଏହି କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପ ୧୯୩୯ ମସିହା ସେପ୍ଟେମ୍ବର ମାସରେ ନିର୍ମିତ ହୋଇଥିଲା- ତାହା ଡାନ୍‌ଜିଗ୍‌ର କୋଡ଼ିଏ ମାଇଲ୍ ପୂର୍ବ ଓ ଆଉସ୍‌ଭିଚ୍‌ଜ୍‌ର ତିନିଶହ ମାଇଲ୍ ଦୂରରେ ଅବସ୍ଥିତ)ରେ ଯୁଦ୍ଧ ସମୟଟା କଟେଇ ଦେଇ ପାରିବି ।

ଶ୍ୱାସରୋଧ୍ ନିବୁଜ ମାଲଗାଡ଼ିରେ ନଖାଇ ନପିଇ ତିନି ଦିନ ତିନି ରାତିର ଭୟାବହ ଯାତ୍ରାପରେ ଆମମାନଙ୍କ ଗାଡ଼ି ଗୋଟିଏ ପାଇନ୍ ବଣ ଭିତରେ ହଠାତ୍ ଯେତେବେଳେ ଅଟକି ଗଲା, ସେତେବେଳେ ବରଫ ବର୍ଷା ହେଉଥାଏ । କିନ୍ତୁ ଗଛବୃଛ ଗୁଡ଼ିକ ବେଶ୍ ସବୁଜ ଦିଶୁଥାନ୍ତି ଏବଂ ପତ୍ର ଉପରେ ବରଫ ବର୍ଷାର ଟପ୍ ଟପ୍ ଶବ୍ଦ ପରିଷ୍କାର ଶୁଭୁଥାଏ । ବିଗତ ଦୁଇବର୍ଷ ହେବ ମୁଁ ଗୋଟିଏ ସୁଦ୍ଧା ଗଛ ଦେଖି ନଥିଲି । କାରଣ ବସ୍ତିରେ କୌଣସି ଗଛ ନଥିଲା । ବିୟଲିଷ୍ଟୋକ୍ ବନ୍ଦୀଶାଳାରେ ମଧ ସେୟା । ସମ୍ଭବତଃ ସେହି କାରଣରୁ ଗଛଗୁଡ଼ିକର ବାସ୍ନା ଓ ଟପ୍ ଟପ୍ ଶବ୍ଦ ମୋତେ କେମିତି ଅସ୍ୱାଭାବିକ ବୋଧ ହେଲା । ଏହା ପୋଲାଣ୍ଡ- ରୁଷିୟା ସୀମାରେ ଅବସ୍ଥିତ । ୨ୟ ବିଶ୍ୱଯୁଦ୍ଧ ପୂର୍ବରୁ ଏହା ଇହୁଦୀ ଅଧ୍ୟୁଷିତ ଏକ ଶିଳ୍ପ ସହର ଭାବରେ ଗଢ଼ି ଉଠିଥିଲା । ଏହା ୧୫ରୁ ୨୨ ସେପ୍ଟେମ୍ବର ପର୍ଯ୍ୟନ୍ତ ଜର୍ମାନୀ ଦ୍ୱାରା ଅଧିକୃତ ହୋଇଥିଲା । ଯେତେବେଳେ ରୁଷିୟା ତାକୁ ଦଖଲ କରିଥିଲା, ଏହା ୧୯୪୧ର ୨୭ ଜୁନ୍ ଠାରୁ ୨୭ ଜୁଲାଇ ୧୯୪୪ରେ ଏହାକୁ ପୁନର୍ବାର ଜର୍ମାନୀ ଦଖଲ କଲା ।

ପ୍ରଥମ ସନ୍ଧ୍ୟାରେ ମୁଁ କୁଣ୍ଡରୁ ଥଣ୍ଡାପାଣି ପିଇଥିଲି । ଅଥଚ ତମାମ ତିନି ରାତି ତିନି ଦିନ ମୁଁ ସେହି ନିବୁଜ ମାଲ୍‌ଗାଡ଼ି ଭିତରେ ଟୋପାଏ ପାଣି ପାଇଁ କେତେ ତହଳ ବିକଳ ନ ହୋଇଛି ? ମୋ ଗଳା ଯେମିତି ଶୁଖିଲା ଚମଡ଼ା ଭଳି ଶୁଖିଯାଉଥାଏ ।

କାନ୍‌ମୁଣ୍ଡା ଝିଁ ଝିଁ ହେଉଥାଏ । କାନମୁଣ୍ଡା ପାଖରେ ଯେମିତି ମହୁମାଛିମାନେ ଗୁଣୁ

ଗୁଣ୍ଡୁ ହେଉଥାନ୍ତି । ସେତେବେଳେ ମନ ଭିତରେ ଗୋଟିଏ ମାତ୍ର କଥା ଖେଳି ବୁଲୁଥାଏ ଯେ ପାଣି ଟୋପାଏ ପାଇବା ବେଳକୁ ମୁଁ ଆଉ ଜୀବନରେ ନଥିବି । ଆମେମାନେ ସେଠାରେ ପହଞ୍ଚିବା ସଙ୍ଗେ ସଙ୍ଗେ ପୋଜନାନ୍‌ରୁ ଆସିଥିବା ପୋଲାଣ୍ଡର ଜନୈକ କାପୋ (କିଏ) ଅମମାନଙ୍କୁ ଏକ ଶୌଚାଳୟକୁ ନେଇଗଲା । ସେଠାରେ ପ୍ରବହମାନ ଜଳଧାରା କୁଣ୍ଡକୁ ଦେଖି ମୁଁ ଆଉ ଛାଡ଼ିପାରିଲି ନାହିଁ । ସେଠାରେ ମୁଁ ଏକ ନୈସର୍ଗିକ ଆନନ୍ଦ ଅନୁଭବ କଲି । ଆଜି ବି ମୋ ଜିଭ ଅଗରେ ସେ ସ୍ୱାଦ ଲାଗି ରହିଛି ଯେମିତି ! ଆମେ ଥିଲୁ ଷ୍ଟୁଥଫ୍‌ରେ ପହଞ୍ଚିଥିବା ପ୍ରଥମ ଇହୁଦୀ ଦଳ । ବିଚିତ୍ର ମଣିଷ ଗୁଡ଼ିଏ । କେବଳ ଇହୁଦୀ ହୋଇ ଜନ୍ମ ହୋଇଥିବାର ଶୋକାବହ ସ୍ମୃତି ଛଡ଼ା ଆମ ଭିତରେ ଆଉ କୌଣସି ସାମଞ୍ଜସ୍ୟ ନଥିଲା । ତେଣୁ ଅନ୍ୟ ବନ୍ଦୀ ମାନଙ୍କଠାରୁ ଯେ ଆମେ କୌଣସି ସହାନୁଭୂତି ପାଉ ନଥିଲୁ; ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନଥିଲା । ଆମ ସାଙ୍ଗରେ କେହି ମିଶୁ ନଥିଲେ କିମ୍ବା କିଛି ପଚାରୁ ନଥିଲେ । ଆମେ ସମସ୍ତଙ୍କଠାରୁ ବିଚ୍ଛିନ୍ନ ହୋଇ ରହୁଥିଲୁ । ତେଣୁ ନିଜକୁ ଅତ୍ୟନ୍ତ ଅବାଞ୍ଛିତ ମନେ କରୁଥିଲୁ । ବିୟଲ ଷ୍ଟୋକ୍ ବନ୍ଦୀଶାଳାରେ ଇହୁଦୀମାନଙ୍କୁ ଯେଭଳି ସମ୍ପୂର୍ଣ୍ଣ ଅଲଗା କରି ରଖାଯାଉଥିଲା, ତାହା ଆମ୍ଭମାନଙ୍କୁ ଭାରି ବାଧୁଥିଲା । ସାରା ପୃଥିବୀ ଏକ ଭୟାବହ ଯୁଦ୍ଧରେ ବ୍ୟାପୃତ ଥିବାବେଳେ ଇହୁଦୀମାନଙ୍କୁ ସେଥିରୁ ଅଲଗା ରଖାଯାଇଥିଲା । ''ଆମକୁ କାହିଁକି କେହି କିଛି ପଚାରୁ ନାହାଁନ୍ତି ?'' ଏହି ପ୍ରଶ୍ନଟି ବିୟଲ ଷ୍ଟୋକ୍‌ରେ ମୁଁ ବାରମ୍ବାର ପଚାରୁଥିଲି । କିନ୍ତୁ କେହି ତାହାର ଉତ୍ତର ଦେଉ ନଥିଲେ । ଷ୍ଟୁଥଫ୍‌ରେ ମଧ୍ୟ ତାହାର ବ୍ୟତିକ୍ରମ ହେଲା ନାହିଁ । ଆମ୍ଭମାନଙ୍କୁ ଏକ ସ୍ୱତନ୍ତ୍ର ବ୍ଲକ୍‌ରେ ରଖାଯାଉଥିଲା । ନିଃସଙ୍ଗତା ଆମ୍ଭମାନଙ୍କୁ ବାଧୁଥିଲା ।

ଆମ ପାଇଁ ବିୟଲ ଷ୍ଟୋକର ଆନିଆ ନାମ୍ନୀ ଜଣେ ଯୁବତୀ ୱାର୍ଡେନ୍ ନିଯୁକ୍ତ ହୋଇଥିଲା । ସେହି ଇହୁଦୀ ମହିଳା ଆନିଆ ବେଶ୍ ସୁନ୍ଦରୀ ଥିଲେ ଓ ପ୍ରାଣ ପ୍ରାଚୁର୍ଯ୍ୟରେ ଭରପୂର ଥିଲେ । ତାଙ୍କୁ 'କାପୋ' କାହିଁକି ଆମ୍ଭମାନଙ୍କ ଦାୟିତ୍ୱ ଦେଇଥିଲା ତାହା ମୁଁ ଅବଶ୍ୟ ବୁଝିପାରୁ ନଥିଲି । କିନ୍ତୁ ଯାହା ଦେଖିଲି, ଆନିଆ ନିଜ ପାଇଁ ଆରାମ୍ ଦାୟକ ସମ୍ଭ୍ରାନ୍ତ କାମଟିଏ ଯୋଗାଡ଼ କରିବାରେ ବେଶ୍ ସମର୍ଥ ଥିଲେ । ଅବଶ୍ୟ ସେ ଆମ୍ଭମାନଙ୍କ ସହ ଭଲ ବ୍ୟବହାର କରିଥିଲେ । କିନ୍ତୁ ଆମ ଅପେକ୍ଷା ଲିଜା ନାମ୍ନୀ ଜଣେ କିଶୋରୀକୁ ସେ ଅତ୍ୟଧିକ ସ୍ନେହ କରୁଥିଲେ । ସେ ତାଙ୍କର ପ୍ରାଣ ପ୍ରିୟ ଥିଲା । ତା ପାଇଁ ଟିକେ ଆରାମ୍ ଦାୟକ ଶୋଇବା ଜାଗା ଏବଂ ବହଳିଆ ଝୋଳ ପ୍ଲେଟ୍ ରଖି ଦେଉଥିଲେ । ଲିଜା ଆନିଆଙ୍କ ଅପେକ୍ଷା ଦଶବର୍ଷ ସାନ ଥିଲା । ସେ ଲିଜା ଉପରେ କାହିଁକି ଏତେ ମାତୃ ସୁଲଭ ସ୍ନେହ ଓଜାଡ଼ି ଦେଉଥିଲେ ତାହା ମୁଁ ବିୟଲ ଷ୍ଟୋକ୍ ବନ୍ଦୀଶାଳାରେ ମଧ୍ୟ ବୁଝି ପାରୁ ନଥିଲି । ସେ ଲିଜାକୁ ଖୁଆଇ ଦେଉଥିଲେ ଏବଂ ପୋଷାକ ପତ୍ର ପିନ୍ଧାଇ

ଦେଉଥିଲେ । ସେ ଲିଜାର ସୌନ୍ଦର୍ଯ୍ୟ ପାଇଁ ଗର୍ବବୋଧ କରୁଥିଲେ । ମହିଳାମାନଙ୍କ ମଧ୍ୟରେ ସେହି ସ୍ନେହ ସୌହାର୍ଦ୍ଦ୍ୟ କେବଳ ଶିବିର ଜୀବନରେ ହିଁ ସମ୍ଭବ ଥିଲା ।

ସେମାନେ କେଉଁଠାରେ ଅଛନ୍ତି ବା ସେଠାରେ କ'ଣ ସବୁ ଘଟି ଯାଉଛି, ତାହା ସେମାନଙ୍କ ମଧ୍ୟରୁ ଅଧିକାଂଶ ଜାଣିପାରୁ ନ ଥିଲେ । ଆମ ବ୍ଲକ୍‌ରେ ବିଭିନ୍ନ ବୟସର ଦୁଇଶହ ମହିଳା ରହୁଥିଲେ ସତର ବର୍ଷରୁ ଅଠାଅଶୀ ବର୍ଷ ପର୍ଯ୍ୟନ୍ତ । ପ୍ରଥମ ଦିନଠାରୁ ହିଁ ସେମାନଙ୍କ ମଧ୍ୟରେ ସାମାନ୍ୟ କଥାରେ ଝଗଡ଼ା ଓ ସଙ୍ଘର୍ଷ ଲାଗିବା ଆରମ୍ଭ ହୋଇଯାଇଥିଲା । ଖାଇବାକୁ ଲାଇନ୍ ଦେବାବେଳେ ଆଗକୁ ଯିବା ପାଇଁ ହେଉ ବା ପାଣି ଟୋପାଏ ପାଇଁ ହେଉ, ଏପରି କି ଝୋଳ ତରକାରୀରେ ଆଳୁ ଖଣ୍ଡେ ପାଇଁ ହେଉ, ସବୁ କଥାରେ ଝଗଡ଼ା । ବିୟଲ ଷ୍ଟୋକ୍ ବସ୍ତିର ଧ୍ୱଂସ ସାଧନ ଏବଂ ନିଜର ପ୍ରିୟଜନଙ୍କର ଦୟନୀୟ ମୃତ୍ୟୁର ସ୍ମୃତି ସେମାନଙ୍କ ଭିତରେ ଥିବାର ମୁଁ ଜାଣି ପାରୁ ନଥିଲି । ଖାଦ୍ୟ ପାଇଁ ସଙ୍ଘର୍ଷ କ୍ରମେ ବଢ଼ିବାକୁ ଲାଗିଲା । କାଳେ ପରେ ଖାଇବାକୁ ନ ମିଳିବ, ସେହି ଆଶଙ୍କାରେ ସେମାନେ ପାଉଁରୁଟି ଖଣ୍ଡେ ଅଧେ ଚୋରି କରି ନିଜ ନିଜ ତକିଆ ତଳେ ଲୁଚାଇ ଦେଉଥିଲେ । ପରଦିନ ସକାଳୁ ସେ ରୁଟିକୁ ଅନ୍ୟ କେହି ଚୋରୀ କରି ନେଲେ ପ୍ରବଳ ସଂଘର୍ଷ ଆରମ୍ଭ ହୋଇ ଯାଉଥିଲା । କିଏ ହତାଶ ହୋଇ କାନ୍ଦୁଥିଲା ତ ଆଉ କେହି କ୍ରୋଧରେ ଚିତ୍କାର କରି ଉଠୁଥିଲା ବା ଅନ୍ୟ ଉପରକୁ କୁଦିପଡ଼ି ଆଖି, ମୁହଁ ଓ କାନକୁ ଲହୁ ଲୁହାଣ କରି ଦେଉଥିଲା । ତାହାର ପ୍ରତିକାର ପାଇଁ ଆନିଆ ପ୍ରତି ରୁଟିକୁ ତିନିଭାଗ କରି ପ୍ରତି ଭୋଜନ ପରେ ତାକୁ ବାଣ୍ଟି ଦେଉଥିଲେ । ଏହା ଫଳରେ ଅବଶ୍ୟ କିଛି ଦିନ ପାଇଁ ପରିସ୍ଥିତି ଟିକେ ଶାନ୍ତ ପଡ଼ିଗଲା । ପ୍ରତ୍ୟେକ ବନ୍ଦିନୀ ତାହାର ନ୍ୟାଯ୍ୟ ଭାଗ ପାଇଗଲେ ।

ଦିନେ ଆନିଆ ଦେଖିଲେ ଯେ ପୂରା ଗୋଟାଏ ପାଉଁରୁଟି ନାହିଁ । ତାହା ଦଶଜଣଙ୍କର ଗୋଟିଏ ଦିନର ଖାଦ୍ୟାଂଶ । ତେଣୁ ଆନିଆ ଅବଶିଷ୍ଟ ରୁଟିକୁ ଛୋଟ ଛୋଟ କରି ଛିଣ୍ଡାଇ ଦେଇ ବାଣ୍ଟିଲେ । ତା' ପରଦିନ ସକାଳେ ଦେଖାଗଲା ପୁନର୍ବାର ଗୋଟିଏ ପୂରା ପାଉଁରୋଟି କମ୍ ଅଛି । ଆନିଆ ସେହି ଚୋରୀ ଖବର ମହିଳା ବନ୍ଦୀମାନଙ୍କ ଆଗରେ ପ୍ରକାଶ କରିଦେବାରୁ ସେମାନଙ୍କ ମଧ୍ୟରେ ସଙ୍ଘର୍ଷ ଆରମ୍ଭ ହୋଇଗଲା । ମୁଁ ଏହା ସ୍ୱୀକାର କରୁଛି ଯେ ରୁଟି ପାଇଁ ସେହି ସଙ୍ଘର୍ଷ ଦେଖି ମୋ' ମନରେ ଆଶାବାଦ୍ ସୃଷ୍ଟି ହୋଇଥିଲା । ମୁଁ ଭାବିଲି ଯେ ସେମାନେ ଯଦି ଖଣ୍ଡିଏ ରୁଟି ପାଇଁ ସଙ୍ଘର୍ଷ କରିବାକୁ ପ୍ରସ୍ତୁତ ହୋଇ ପାରୁଛନ୍ତି, ଯଦି ସେମାନେ ସ୍ୱାଭାବିକ ମଣିଷ ଭଳି ପ୍ରତିକ୍ରିୟା ପ୍ରକାଶ କରିପାରୁଛନ୍ତି ବା ଯଦି ସେମାନେ କିଛି ହେଲେ ସହଜରେ ଛାଡ଼ି ଦେଇ ପାରୁ ନାହାନ୍ତି- ତା'ର ଅର୍ଥ ହେଉଛି ''ଆମ୍ଭମାନଙ୍କ ଭିତରେ ବର୍ତ୍ତମାନ ମଧ୍ୟ ଜୀବନ-ସତ୍ତା ବିଦ୍ୟମାନ ।'' ଏସବୁ ଘଟଣା

ଷ୍ଟୁଥଫରେ ଦେଖି ମୁଁ ଆଶାକଲି ଯେ ''ସେମାନେ ଯୁଦ୍ଧ ଶେଷ ହେବା ପର୍ଯ୍ୟନ୍ତ ଧୈର୍ଯ୍ୟ ସହକାରେ ଅପେକ୍ଷା କରିପାରିବେ ।'' ପରବର୍ତ୍ତୀ କେତେଦିନ ପର୍ଯ୍ୟନ୍ତ ଶିବିରରୁ ନିୟମିତ ରୁଟି ଚୋରୀ ଚାଲିଲା । ମୁଁ ମହିଳା ବନ୍ଦୀମାନଙ୍କର କାର୍ଯ୍ୟ କଳାପକୁ ଲକ୍ଷ୍ୟ କରୁଥିଲି । କିନ୍ତୁ ରୁଟି ଚୋରୀ ସମ୍ପର୍କରେ କିଛି ଆବିଷ୍କାର କରି ପାରିଲି ନାହିଁ । ଦିନେ ଆର୍ମିଆ ବନ୍ଦୀମାନଙ୍କର ସିଟ୍ ସବୁ ଖାନ୍ ତଲାସ୍ କଲେ । ସେ ଭାବୁଥିଲେ ଯଦି କେହି ଦୈନିକ ଏଭଳି ଚୋରି କରୁଛି, ତାହାହେଲେ ଚୋରିମାଲକୁ ଶିବିର ଭିତରେ କେଉଁଠି ହେଲେ ନିଶ୍ଚୟ ଲୁଚେଇ ରଖିଥିବ । କିନ୍ତୁ ସେହି ଖାନ୍ ତଲାସର କୌଣସି ଫଳ ହେଲା ନାହିଁ । ଚୋରୀ ରୁଟିର କୌଣସି ସନ୍ଧାନ ମିଳିଲା ନାହିଁ ।

ଉଜ୍ଜ୍ୱଳ ଜ୍ୟୋତ୍ସ୍ନା ରାତ୍ରି । ଗତ କେତେ ଦିନ ଧରି ବରଫ ଉପରେ ଚନ୍ଦ୍ର କିରଣ ପଡ଼ି ସର୍ବତ୍ର ଚକ୍ ଚକ୍ କରୁଥାଏ । କିନ୍ତୁ ରାତି ହେଲେ ଭୟରେ ମୋର ସର୍ବାଙ୍ଗ ଥରିବାକୁ ଲାଗେ । ପ୍ରତିଟି ଘଟଣା ମୋତେ ଆତଙ୍କିତ କରେ । ଦିନବେଳେ ଯେଉଁ ସବୁ ସନ୍ଦେହ ମନ ଭିତରେ ପୁଞ୍ଜିଭୂତ ହୋଇ ରହିଥାଏ, ରାତି ହେଲେ ତାହା ଆତ୍ମ ପ୍ରକାଶ କରେ, ମନକୁ ବାରମ୍ବାର ଆନ୍ଦୋଳିତ କରେ । ''ଅନ୍ୟ ବ୍ଲକ୍‌ର ବନ୍ଦୀମାନଙ୍କୁ ଯେପରି ଦୈନିକ ହାଜିରା ବେଳେ ଗୋଟାଏ ସ୍ଥାନରେ ଠୁଳ କରାଯାଏ, ଆମମାନଙ୍କୁ ସେପରି ଏକତ୍ରିତ କରାଯାଏ ନାହିଁ କାହିଁକି ? ଆମକୁ ଏମାନେ କାମ କରାନ୍ତି ନାହିଁ କାହିଁକି ? ଋଷିୟାନ୍ ବନ୍ଦୀ ପୋଷାକ ଆମକୁ ପିନ୍ଧିବାକୁ ଦିଆଯାଉଥାଏ । ରୁଟି-ଝୋଳ ଖାଇବାକୁ ମଧ୍ୟ ଦିଆଯାଉଥାଏ । ''ଏହିଭଳି ଭାବରେ ଆମମାନଙ୍କୁ ଇହୁଦୀ ସୁଲଭ ଖାଦ୍ୟପେୟ ଦିଆଯିବ ଅଥଚ ଖାଦ୍ୟ ବଦଳରେ ଆମଠାରୁ କାମ ଆଦାୟ କରାଯିବ ନାହିଁ, ଏହା କ'ଣ ସମ୍ଭବ ? ଆମମାନଙ୍କ ପକ୍ଷରେ ତାହା ସବୁ ଆଦୌ ଆନନ୍ଦଦାୟକ ଘଟଣା ନଥିଲା । ମୁଁ ଷ୍ଟୁଥଫରେ ଥିବା ଭିତରେ ଥରେ ମାତ୍ର ଗୋଟିଏ ଆତଙ୍କବାଦୀ (S.S.Man)କୁ ଆମ ବ୍ଲକ୍ ଭିତରେ ଦେଖିବାକୁ ପାଇଥିଲି । ସେ ଜଣେ ଯୁବକ । ସେ ଆମମାନଙ୍କୁ ଏଭଳି ବିସ୍ଫାରିତ ଦୃଷ୍ଟିରେ ଚାହୁଁଥିଲା ଯେପରିକି ତାହାର ବିଶ୍ୱାସ ହେଉ ନଥିଲା ଯେ ଆମେମାନେ ସତରେ ମଣିଷ, ପାଦରେ ଚାଲୁଛୁ, ମୁହଁରେ ଦି ଦି ଟା ଆଖି ମଧ୍ୟ ଅଛି, ଓଃ ! ସେ କି ଚାହାଣୀ ! ଶରୀର ଯେମିତି କଣ୍ଟକିତ... ହୋଇ ପଡ଼ିଲା । ''ଆଜି ରାତ୍ରିର ଅନ୍ଧକାର ଭିତରେ ମନରେ ସେହି ଲୋମ ହର୍ଷଣକାରୀ ସ୍ମୃତି ଜାଗ୍ରତ ହୋଇଉଠୁଛି ।''

ହଠାତ୍ କାହାର ବିକଟ ଚିତ୍କାରରେ ମୋର ସମସ୍ତ ଚିନ୍ତା ଭାବନା ଓଲଟ ପାଲଟ ହୋଇଗଲା । ଆମେ ସମସ୍ତେ ଖଟ ଉପରୁ ତଳକୁ ଡେଇଁ ପଡ଼ିଲୁ । ଏକ ନିର୍ଜନ କୋଠରୀ ନିକଟରେ ଛିଡ଼ା ହୋଇଥିବା ଗୋଟିଏ ଅପରିଚିତା ଯୁବତୀ ଆମର ଦୃଷ୍ଟିଗୋଚର ହେଲା । ସେହିଠାରେ ଥିଲା ଆମମାନଙ୍କର ରୁଟିର ଭଣ୍ଡାର । ଯୁବତୀଟି ଡୋରିଆ ପୋଷାକ ପିନ୍ଧିଥିବାରୁ

ସେ କଦାପି ଇହୁଦୀ ନୁହେଁ ବୋଲି ଜଣାଯାଉଥିଲା । କିପରି ସେ ସେଠାକୁ ଆସିଥିଲା; ଗେଟ୍ ତ ଭିତର ପଟୁ ବନ୍ଦ । ମହିଳାମାନେ ତାକୁ ଚୌକି ଗୋଡ଼ରେ ବାନ୍ଧି ପକାଇ ତା ପାଟିକୁ ପୂରା ବନ୍ଦ କରି ଦେଇଥିଲେ । ସେ ଚିତ୍କାର କରିପାରୁ ନଥିଲା । ତା' ଚିତ୍କାର ଶୁଣି ଆତଙ୍କବାଦୀମାନେ ସେଠାକୁ ପଶି ଆସିବେ ବୋଲି ଆମେମାନେ ଆଶଙ୍କା କରୁଥିଲୁ । ଜଣାଗଲା ଯେ ସେ ଥିଲା ସଂଲଗ୍ନ ବ୍ଲକର ଜଣେ ଅନ୍ତେବାସିନୀ । ସେ ଜଣେକା ଇଉକ୍ରେନୀୟ ଅଧିବାସୀ ଥିଲା । ରାତିରେ ଝରକା ଗ୍ଲାସ୍‌କୁ ଖସେଇ ଦେଇ ଏ ପଟକୁ ଗଳି ଆସୁଥିଲା । ରୁଟି ଗୋଟାଏ ଧରି ଚୁପ୍ ଚାପ୍ ପଳେଇ ଯାଉଥିଲା ଏବଂ ପୁନର୍ବାର ସେହି ଗ୍ଲାସ୍‌କୁ ସେଠାରେ ଲଗାଇ ଦେଉଥିଲା । ସେ ଆମକୁ ତାଚ୍ଛଲ୍ୟ କରି କହୁଥିଲା "ଅଳ୍ପଦିନ ଭିତରେ ତୁମମାନଙ୍କୁ ଗ୍ୟାସ୍ ଚ୍ୟାମ୍ବରକୁ ନିଆ ଯାଉଥିବା ବେଳେ ସାମାନ୍ୟ ରୁଟି ପାଇଁ ଏତେ ଲୋଭ କାହିଁକି କରୁଛ ?" ମହିଳାମାନେ ତାକୁ ରାତିସାରା ବାନ୍ଧିରଖି ସକାଳୁ 'କାପୋ' ପାଖକୁ ନେଇ ଯିବାପାଇଁ କୃତ ସଙ୍କଳ୍ପ ଥିଲେ । ଆମେ କିନ୍ତୁ ବହୁତ ବିଚାର କରି ସ୍ଥିର କଲୁ ଯେ ଧୃତା ମହିଳାକୁ ବାନ୍ଧି ରଖିବାରେ ଆମର କୌଣସି ଲାଭ ତ ହେବନି ବରଂ ତାଦ୍ୱାରା ଆମେ ନୂଆ ଶତ୍ରୁ ଅର୍ଜନ କରିବା ସାର ହେବ । ତେଣୁ ଆମେମାନେ ସେ ଅବାଞ୍ଛିତ ଅତିଥିକୁ ସଙ୍ଗେ ସଙ୍ଗେ ବନ୍ଧନ ମୁକ୍ତ କରିଦେଲୁ କିନ୍ତୁ ତା'ର ସେହି ଗ୍ୟାସ୍ ଚାମ୍ବର କଥାଟି ଆମ ସମସ୍ତଙ୍କ ମନକୁ ଅତ୍ୟନ୍ତ ଭାରାକ୍ରାନ୍ତ କରିଦେଲା ।

ବଡ଼ଦିନ (ଖ୍ରୀଷ୍ଟମାସ) ପର୍ବ ପାଖେଇ ଆସୁଥିଲା । ସେହି ଅବକାଶରେ ବନ୍ଦୀ ଶିବିରରେ ବିଭିନ୍ନ ବ୍ଲକ୍‌ମାନଙ୍କରେ ରହୁଥିବା ବନ୍ଦୀମାନଙ୍କ ମଧ୍ୟରେ ଆତ୍ମିକ ପ୍ରତିବନ୍ଧକକୁ ଭାଙ୍ଗିବା ପ୍ରସ୍ତାବ କାହା ମନରେ ପ୍ରଥମେ ଉଦ୍ରେକ ହେଲା ତାହା ଏବେ ମୋର ଠିକ୍ ମନେ ପଡୁନାହିଁ । କିନ୍ତୁ ସେହି ଉପଲକ୍ଷେ ଆମେ କିଛି ଖାଇବା 'ଯୋଗାଡ଼' କରିବା, ସଙ୍ଗୀତ ବା ଅନ୍ୟ କିଛି ପ୍ରଦର୍ଶିତ କରିବା ଓ ସେଠାକୁ ଆମ ସହ ଦୈନନ୍ଦିନ ଜୀବନ ସମ୍ପର୍କରେ ଆସୁଥିବା ୱାର୍ଡନ୍ ଓ ଅନ୍ୟମାନଙ୍କୁ ଡାକିବା ପାଇଁ ମଧ୍ୟ ଯୋଜନା କରିଥିଲୁ । ଯାହା ହେଉ ଆମର ନିମନ୍ତ୍ରଣ ମଧ୍ୟ ଗୃହୀତ ହୋଇଥିଲା । ଡିସେମ୍ବର ମାସଟା ସେହି ପର୍ବପାଳନର ଆୟୋଜନ ଏବଂ ଅତିଥିମାନଙ୍କୁ ସ୍ୱାଗତ କରିବା ଆୟୋଜନରେ କଟିଥିଲା । ଛୁଟିର ପ୍ରଥମ ଦିନ ଆନିଆ ନିମନ୍ତ୍ରିତମାନଙ୍କ ସହ ବନ୍ଦୀମାନଙ୍କୁ ସ୍ୱାଗତ ଜଣାଇଥିଲେ ଏବଂ ଲମ୍ବ ଟେବୁଲ୍ ଉପରେ ସମସ୍ତଙ୍କୁ ବସାଇ ଥିଲେ । ମନେ ହେଉଥିଲା, ଯେପରିକି ସେମାନେ ଆମ ଶିବିରକୁ ଆସିବା ପାଇଁ ସଙ୍କୋଚ ବୋଧ କରୁଥିଲେ । ଆମେ ତରୁଣୀମାନେ ପ୍ରୋଗ୍ରାମ୍ ଆରମ୍ଭ କରି ଦେଲୁ ।

ଆମେ ଏଭଳି କବିତା ଗୁଡ଼ିକ ଆବୃତ୍ତି କରିଥିଲୁ ଯେଉଁଥିରେ ଆମେ ସେମାନଙ୍କୁ ପରିଷ୍କାର ବୁଝାଇବାକୁ ଚେଷ୍ଟା କରିଥିଲୁ ଯେ ପୋଲାଣ୍ଡ ଆମମାନଙ୍କର ପିତୃଭୂମି ଏବଂ

ପୋଲାଣ୍ଡର ସ୍ୱାର୍ଥ ରକ୍ଷା କରିବାକୁ ଆମେମାନେ ପ୍ରାଣୋତ୍ସର୍ଗ କରିବାକୁ ମଧ ପ୍ରସ୍ତୁତ । ''ଆମମାନଙ୍କୁ କାହିଁକି ଏଭଳି ପୃଥକ କରି ରଖାଯାଇଛି, ତାହାର କାରଣ ସେମାନେ ସେହି ସନ୍ଧ୍ୟାରେ ନିଶ୍ଚୟ ଆମ୍ଭମାନଙ୍କୁ କହିବେ'' ବୋଲି ମୁଁ କଳ୍ପନା କରୁଥିଲି । ପୁଣି ଭାବୁଥିଲି ସେମାନେ କ'ଣ ଏହିଭଳି କହିବେ, ''ତୁମେମାନେ ହତଭାଗ୍ୟ ଓ ଦଣ୍ଡଯୋଗ୍ୟ !''

କିନ୍ତୁ ଆମମାନଙ୍କର ସମସ୍ତ ଉଦ୍ୟମ ବ୍ୟର୍ଥ ହେଲା । ସେମାନଙ୍କ ଉପରେ ତାହାର କୌଣସି ପ୍ରଭାବ ପଡ଼ିଥିବାର ଆମେମାନେ ଅନୁଭବ କଲୁ ନାହିଁ । ଆମମାନଙ୍କ ପ୍ରତି ରହିଥିବା ଘୃଣା ଓ ତିକ୍ତ ମନୋଭାବର କଠିନ ପ୍ରାଚୀରକୁ ଭାଙ୍ଗିବାକୁ ଆମେମାନେ ସମର୍ଥ ହୋଇପାରିଲୁ ନାହିଁ ଏପରିକି ସେମାନଙ୍କ ସାମାନ୍ୟ କରୁଣା ବା ଅନୁକମ୍ପା ମଧ ଉଦ୍ରେକ କରିବାକୁ ସମର୍ଥ ହୋଇ ପାରିଲୁ ନାହିଁ । ଜନୈକା ଇହୁଦୀ ଜନନୀ ସମ୍ପର୍କରେ ଲିଡ଼ା ଏକ ଗୀତ ଗାଇବା ପର୍ଯ୍ୟନ୍ତ ସେହି ମନୋଭାବ ଅପରିବର୍ତ୍ତିତ ରହିଲା । ଆମେ ଯେଉଁମାନେ ନିଷ୍ଠୁରତା କାରଣରୁ ଆମର ମା'ମାନଙ୍କୁ ହରାଇଥିଲୁ, ଲିଡ଼ାର ସେହି କରୁଣ ସଙ୍ଗୀତ ଶୁଣି ଲୋତକ ସମ୍ବରଣ କରିପାରି ନଥିଲୁ । ନିମନ୍ତ୍ରିତ ଅତିଥିମାନଙ୍କର ଉପସ୍ଥିତିକୁ ବିସ୍ମୃତ ହୋଇ ଆମେମାନେ ନୀରବରେ କାନ୍ଦିବାକୁ ଲାଗିଲୁ । ଆମର ୱାର୍ଡେନ୍ ସେହି ଅଶ୍ୱସ୍ତିକର ନୀରବତାକୁ ଭଙ୍ଗ କରି ଲିଡ଼ା ଓ ଆଗନ୍ତୁକମାନଙ୍କୁ ଧନ୍ୟବାଦ ଜଣାଇଲେ । ଲିଡ଼ାର କଣ୍ଠରୋଧ ହୋଇଗଲା । ଯିବାବେଳେ ୱାର୍ଡେନ୍ ଦ୍ୱାରଦେଶରେ ଚୁପ୍‌ଚାପ୍ କହିଦେଇଗଲା ଯେ ଜାନୁୟାରୀ ମାସରେ ସମସ୍ତ ଇହୁଦୀ ବନ୍ଦିନୀମାନଙ୍କୁ ଷ୍ଟୁଥଫ ପରିତ୍ୟାଗ କରିବାକୁ ପଡ଼ିବ । କିନ୍ତୁ ତାହାର ପ୍ରକାଶ ଭଙ୍ଗୀରୁ ଭବିଷ୍ୟତ ମଙ୍ଗଳ ଜନକ ବୋଲି କୌଣସି ସୂଚନା ମିଳୁ ନଥିଲା ।

■■■

– ୨ –

## ବନ୍ଦୀ ବଦଳ

ଆମମାନଙ୍କୁ ଅନ୍ୟତ୍ର ଚାଲାଣ କରିବା ପାଇଁ ପ୍ରସ୍ତୁତି ଚାଲିଥିବା ବେଳେ ଷ୍ଟୁଥପ୍ ଶିବିରର ମୁଖ୍ୟ ଆମକୁ ଟିକେ ଭଲ ଭାବରେ ଦେଖାଶୁଣା କଲେ । କିନ୍ତୁ ସେ ତାଙ୍କ ବ୍ଲକ୍‌ରେ କେବଳ ଇହୁଦୀମାନଙ୍କୁ ଗ୍ରହଣ କରୁଥିବାରୁ ସେହି ଯାତ୍ରା ଆମ ପାଇଁ ଏକ ଦୁଃସମ୍ବାଦ ଥିଲା । ଆମକୁ ଟ୍ରେବ୍ଲିଙ୍କା ନାମକ ସ୍ଥାନରେ ''ଗ୍ୟାସ୍ କୋଠରୀ''ରେ ହତ୍ୟା କରାଯିବ ବୋଲି ପ୍ରବଳ ଜନରବ ହେଉଥିଲା । ଅନ୍ୟ କେତେକ ଫୁସ୍‌ଫାସ୍ ହେଉଥିଲେ ଯେ ଆମମାନଙ୍କୁ ବେଶୀ ଦୂରକୁ ନିଆ ନଯାଇ ପାଖ ଜଙ୍ଗଲ ଭିତରେ ଗୋଟି-ଗୋଟି

ଗୁଳି କରି ହତ୍ୟା କରାଯିବ । ତେଣୁ କମାଣ୍ଡରଙ୍କ ଭ୍ରୂକୁଟି ସାମନାରେ ଯୋଡ଼ି ଯୋଡ଼ି ହୋଇ ଯିବାକୁ ଯେତେବେଳେ ଅର୍ଡର ଦିଆଗଲା ସେତେବେଳେ ଆମ ମନରେ ଗୋଟିଏ ପ୍ରଶ୍ନ ଉଠୁଥିଲା - ''ଆମକୁ କାହିଁକି ଏମିତି ଗାଈଗୋରୁଙ୍କ ଭଳି ଗଣା ଯାଉଛି ?''

ଆଜିଯାଏ ଆମକୁ ଋଷିଆନ୍ ବନ୍ଦୀମାନଙ୍କର ମସିଆ, ଚିରା, ଫଟା ପୋଷାକ ପିନ୍ଧିବାକୁ ଦିଆଯାଉଥିଲା । କିନ୍ତୁ ଆଗାମୀ ଯାତ୍ରା ପାଇଁ ଆମକୁ ଦିଆଗଲା ଶୀତଦିନିଆ ଗରମ ପୋଷାକ ଏବଂ ସେଥିରେ ଯେମିତି ଚିରା ନଥାଏ ଓ ବୋତାମ ଛିଡ଼ି ଯାଇ ନଥାଏ ତାହା କମାଡାଣ୍ଟ ଗୋଟି ଗୋଟି ନିରେଖି ନିରେଖି ଦେଖୁଥିଲେ ।

ଆମମାନଙ୍କୁ କେଉଁ ଆଡ଼କୁ ନିଆଯାଉଥିଲା ଏବଂ ଆମକୁ କାହିଁକି ସେମିତି ସଜା ଯାଉଥିଲା, ତାହା ଆମେମାନେ କିଛି ବୁଝିପାରୁ ନଥିଲୁ । ତେଣୁ ଯେତେବେଳେ ଜନରବ ଉଠିଲା ଯେ ଆମକୁ ରୁଷିଆରେ ଥିବା ଜର୍ମାନୀ ବନ୍ଦୀଙ୍କ ବିନିମୟରେ ସେଠାକୁ ଚାଲାଣ କରି ଦିଆଯିବ ଆମେ ତାକୁ ଏକ ତୁଚ୍ଛା କଥା ବୋଲି କହି ଉଡ଼ାଇ ଦେଉଥିଲୁ ସିନା କିନ୍ତୁ ମନ ଭିତରେ ତାହା ସତ ବୋଲି ବିଶ୍ୱାସ କରିବାକୁ ଇଚ୍ଛା ମଧ୍ୟ ହେଉଥିଲା ।

ଶିବିରରେ ଯେଉଁମାନେ ପଛକୁ ରହିଯାଉଥିଲେ, ସେମାନେ ବିଭିନ୍ନ ଭାବରେ ଆମମାନଙ୍କୁ ବିଦାୟ ଦେଉଥିଲେ । ଆମେ ମଧ୍ୟ ସେହି ଶିବିରରେ ମାତ୍ର ଦୁଇଟି ମାସ ରହିଥିବାରୁ ଶିବିର ଜୀବନ ସହ ସେତେଟା ଅଭ୍ୟସ୍ତ ହୋଇ ନଥିଲୁ । ଆମମାନଙ୍କୁ ପୃଥକ୍ ବ୍ଲକ୍‌ରେ ଅଲଗା କରି ରଖାଯାଇଥିବାରୁ ଅନ୍ୟ ବନ୍ଦୀମାନଙ୍କ ସହ ଆମର ସେତେଟା ଘନିଷ୍ଠ ହେବାର ସୁଯୋଗ ନଥିଲା । ଅଲଗା ହୋଇ ରହିଲେ ବିଚ୍ଛେଦ ତୀବ୍ର ହୁଏ, ତାହା ଶତ୍ରୁତା ବି ବଢ଼ାଏ । ସୁତରାଂ ଏକ କୁହୁଡ଼ିଆ ଜାନୁଆରୀ ସକାଳେ ନାତ୍‌ସୀ ଆତଙ୍କବାଦୀ ବାହିନୀର ପରିବେଷ୍ଟନୀ ମଧ୍ୟରେ ଯେତେବେଳେ ଆମର ଯାତ୍ରା ଆରମ୍ଭ ହେଲା, ସେତେବେଳେ କେହି ଆମକୁ ହସ ମୁହଁ ଟିକେ ବି ଦେଖାଇଲେ ନାହିଁ । ଆମକୁ କେଉଁ ଅଜ୍ଞାତ ସ୍ଥାନକୁ ନେଇଯିବା ପାଇଁ ଆସିବାକୁ ଥିବା ରେଳ ଗାଡ଼ିକୁ ଆମେ ହତାଶା ଓ ନୈରାଶ୍ୟ ଭିତରେ ଅପେକ୍ଷା କରିଥାଉ । ବହୁ ପ୍ରତୀକ୍ଷା ପରେ ଇପ୍ସିତ ଗାଡ଼ିଟି ପହଞ୍ଚିଗଲା ।

''ଆମକୁ କୁଆଡ଼େ ନିଆଯାଉଅଛି ? ଅନ୍ୟ କୌଣସି ଶିବିରକୁ ନା ଗ୍ୟାସ୍‌କୁ ?'' ସେହି ଦୁଃସହ ଚିନ୍ତାରୁ ଦୂରେଇ ରହିବା ପାଇଁ ମନକୁ ବହଲେଇବାକୁ ଆମେ ଏଣୁ ତେଣୁ ଗପରେ ମାତିଲୁ ।

ହଠାତ୍ ଟ୍ରେନ୍‌ଟିଏ ପହଞ୍ଚିଗଲା । ଫାଙ୍କା ଗାଡ଼ି । କିନ୍ତୁ ସେ ଗାଡ଼ିଟା ଯେ ଆମ ଉଦ୍ଦେଶ୍ୟରେ ଆସିଥିଲା, ତାହା ବିଶ୍ୱାସ ହେଉ ନ ଥିବାରୁ ଆମେ ବସିବା ଜାଗାରୁ ଉଠିଲୁ ନାହିଁ । ବନ୍ଦୀ ଚାଲାଣ ପାଇଁ ସେମାନେ ସାଧାରଣତଃ ଯେଉଁଭଳି ଗାଡ଼ି ବ୍ୟବହାର କରନ୍ତି ତାହା ଆମେ ଭଲ ଭାବରେ ଜାଣିଥିଲୁ ତେଣୁ ନାତ୍‌ସୀ ଗୁଣ୍ଡା ବାହିନୀ ସେହି ଗାଡ଼ିରେ

ବସିବା ପାଇଁ ଯେତେବେଳେ ଆମକୁ ନମ୍ରତା ସହକାରେ ଜଣାଇଲେ, ଆମ ବିସ୍ମୟର ସୀମା ରହିଲା ନାହିଁ । ଲିଜା ମୋ କାନ ପାଖରେ କହିଲା, ''ସେମାନେ ଆମକୁ ବ୍ୟଙ୍ଗ କରୁଛନ୍ତି । ଆମେ ଗାଡ଼ିରେ ବସିଗଲେ ସେମାନେ ଆମକୁ ମୁଥ ମାରି ଗାଡ଼ିରୁ ବାହାର କରିଦେବେ ।''

ଆମେମାନେ ଡବା ଭିତରକୁ ଗଲୁ । ଡବା ଭିତରେ ସମସ୍ତଙ୍କ ବସିବା ପାଇଁ ଯଥେଷ୍ଟ ସ୍ଥାନ ଥିଲା । ଲିଜା ମୋତେ ମଜା କରି କହିଲା, ''କ'ଣ ଝରକା ପାଖରେ ବସିବାକୁ ମନ ହେଉଛି କି ?'' ପ୍ରତି ଡବାରେ ଆମକୁ ଜଗିବାକୁ ଜଣେ ଜଣେ ନାତ୍‌ସୀ ଗୁଣ୍ଡା (S.S.Man) ଥା'ନ୍ତି । ଗାଡ଼ି ଛାଡ଼ିଲା । ଆମେ ପରସ୍ପର ମୁହଁକୁ ଚାହିଁ ଦେଇ ଶିହରି ଉଠିଲୁ । ''ତାହା ଥିଲା ସମ୍ପୂର୍ଣ୍ଣ ଅବିଶ୍ୱାସ୍ୟ !'' ଜଣେ ଜଣେ ସାଧାରଣ ଭଦ୍ର ଯାତ୍ରୀ ଭଳି ଆମେ ଏ ଗାଡ଼ିରେ ଯାଉଛୁଁ । ଗାଡ଼ିରେ ଥିବା ପାଣି, ପାଣି ବେସିନ୍ ଓ ଶୌଚାଳୟକୁ ଆମେ ବ୍ୟବହାର କରିପାରିବୁ ? ଏସବୁ କ'ଣ ? ଏହା କ'ଣ ଏକ ନୂଆ କୌଶଳ ? ଏହା କ'ଣ ସ୍ୱର୍ଗଯାତ୍ରାର ପଥ ? ମୁଁ ଭାବିଲି, ସେହି ପରିସ୍ଥିତି ଆମକୁ ଏତେ ଅସ୍ୱାଭାବିକ ବୋଧ ହେଉଥାଏ ଯେ ଆମେ ଧୀର ସ୍ଥିର ହୋଇ ଚୁପ୍‌ଚାପ୍ ବସି ରହି ଥାଉ । ଆମର ଡର ଥାଏ ଯେ ଆମେ ଟିକେ ହଲିଗଲେ ଯେମିତି କେଉଁଠି କେଉଁ ଫୁଟୁକା ଫୁଟିଯିବ ପରା ! ଯଦି ଏସବୁରୁ ଗୋଟାଏ ବି ସତ୍ୟ ହୋଇ ନଥାଏ ଏବଂ ଯଦି ଯେକୌଣସି ମୁହୂର୍ତ୍ତରେ ନିଷ୍ଠୁର ସତ୍ୟଟା ଆମ ଉପରେ ଅଜାଡ଼ି ହୋଇ ପଡ଼ିବ, ତେବେ କାହିଁକି ତୁଚ୍ଛାଟାରେ ବର୍ତ୍ତମାନର ଆନନ୍ଦଟାକୁ ହାତ ଛଡ଼ା କରିଦେବା ? ବରଂ ମୁହୂର୍ତ୍ତକ ପାଇଁ ହେଲେ ବି ସୁଖ ସ୍ୱପ୍ନରେ ବୁଡ଼ି ରହିବା ଶ୍ରେୟସ୍କର । ଗୋଟିଏ ଇହୁଦୀ ସଙ୍ଗୀତ ମନେ ପଡ଼ିଗଲା । ସେଥିରେ ଥିଲା ''ମନେକର ସ୍ୱପ୍ନରେ ମୁଁ ଶୂନ୍ୟ ଉପରେ ଗୋଟିଏ ଦୁର୍ଗ ନିର୍ମାଣ କଲି, ସେ ସ୍ୱପ୍ନ କଦାପି ସଫଳ ହେଲା ନାହିଁ । ତଥାପି ସ୍ୱପ୍ନ ଦେଖିବା ବେଶ୍ ଆନନ୍ଦ ଦାୟକ, ବେଶ୍ ଉଜ୍ଜ୍ୱଳ !'' ତେଣୁ ଆମେ ସ୍ୱପ୍ନ ଦେଖିବାକୁ ସ୍ଥିରକଲୁ । ଆମ ଡବାର ନିସ୍ତବ୍ଧତା ଆମର ଜଗୁଆଳ ନାତ୍‌ସୀ ଗୁଣ୍ଡାକୁ ମଧ୍ୟ ବିସ୍ମିତ କରିଦେଲା । ''ତୁମେମାନେ ଏମିତି ଚୁପ୍ ଚାପ୍ ବସିଛ କାହିଁକି ? କଥାବାର୍ତ୍ତା ହେଉନା, ଗୀତ ଗାଉନା'', ବଡ଼ ଉଦାର ହୃଦୟରେ ସେତକ କଥା ସେ କହି ଦେଲା ।

ତା'ର ସେହି ଉଦାରତା ଦେଖି ମୋ' ମନରେ ପ୍ରଥମ ପ୍ରତିକ୍ରିୟା ହେଲା ଯେ ମୁଁ ତାକୁ ପଚାରନ୍ତି- ''ଆମକୁ କେଉଁ ଆଡ଼େ ନେଉଛ !'' କିନ୍ତୁ ପର ମୁହୂର୍ତ୍ତରେ ଦେହଟା ଶୀତେଇ ଉଠିଲା, ଭାବିଲି, ''ତୁଚ୍ଛାଟାରେ ସେହି ସୁଖ ସ୍ୱପ୍ନଗୁଡ଼ିକୁ କାହିଁକି ବାହାରକୁ ଫୋପାଡ଼ି ଦେବି ?''

ହଠାତ୍ ଡବାର ଦ୍ୱାର ଖୋଲିଗଲା ଏବଂ ଆଉ ଜଣେ ଜଗୁଆଳି ଆମ ପାଇଁ ଖାଦ୍ୟ

ନେଇ ଡବା ଭିତରେ ପ୍ରବେଶ କଲା । ସେ ପ୍ରତ୍ୟେକ ବନ୍ଦୀକୁ ଖଣ୍ଡେ ରୁଟି, ମେଞ୍ଚେ ଲହୁଣୀ ଓ ଖଣ୍ଡେ ଛେନା ଦେଇସାରି କହିଦେଲା ''ଆଜି ରାତିରେ ଏତକ ଖାଇ ଦିଅ, କାଲି ସକାଳୁ ଅଧିକ ମିଳିବ'' ତା' ପରେ ସେ ଅନ୍ୟ ଡବାକୁ ଚାଲିଗଲା ।

ଷ୍ଟୁଥଫ ବନ୍ଦୀ ଶିବିରରେ ଏମିତି ଖାଦ୍ୟ ଆମେ କେବେ ହେଲେ ପାଇ ନଥିଲୁ ! ସେଠାରେ ଆମକୁ ରୁଟି ସାଙ୍ଗରେ କେବେ ଲହୁଣୀ ଟିକେ ମିଳିଗଲେ, ଆମେ ତାକୁ ଚୂଡ଼ାନ୍ତ ବିଳାସ ବୋଲି ମନେ କରୁଥିଲୁ । ''ଏଠାରେ ତ ଆମକୁ ଲହୁଣୀ ସାଙ୍ଗକୁ ଛେନା ବି ଦିଆଯାଉଛି । ମୋତେ ଯେତେବେଳେ ବିୟଲଷ୍ଟୋକ୍ ଶିବିରରୁ ଷ୍ଟୁଥଫ ଶିବିରକୁ ଚାଲାଣ କରାଗଲା, ଆମକୁ ଟୁକୁରାଏ ରୁଟି ମିଳି ନଥିଲା ଏପରିକି ଟୋପାଏ ପାଣି ବି । ଏଠାରେ ତ ଟ୍ରେନ୍‌ରେ ବସୁ ବସୁ କେବଳ ଯେ ଖାଦ୍ୟ ମିଳୁଛି, ତାହା ନୁହେଁ । ଆସନ୍ତା କାଲିର ପ୍ରାତଃ ଭୋଜନ ବିଷୟରେ ନମ୍ରତା ସହକାରେ ଘୋଷଣା କରି ଦିଆଯାଉଛି ।ଏସବୁ କ'ଣ ଚାଲିଛି ? ମୁଁ ସ୍ୱପ୍ନରେ ବୋଧ ହୁଏ ଶୟତାନମାନଙ୍କୁ ଦେବଦୂତରେ ପରିଣତ କରି ଦେଇଛି ! ଆମ ଡବା ଭିତରେ ସମ୍ପୂର୍ଣ୍ଣ ନିସ୍ତବ୍ଧତା ରାଜତ୍ୱ କରୁଥିଲା । ଆମେ ରୁଟି-ଲହୁଣୀ-ଛେନା ଭୋଜନକୁ ଉପଭୋଗ କରୁଥିଲୁ ସତ କିନ୍ତୁ ହୃଦୟକୁ କାପୁରୁଷତା ଆଚ୍ଛନ୍ନ କରି ଦେଇଥିଲା ।

ମୁଁ ଆମର ଜଗୁଆଳୀକୁ ପଚାରିଲି ''ମୁଁ ପାଖ ଡବାକୁ ଯାଇପାରେ କି ?'' ବର୍ତ୍ତମାନର ପରିସ୍ଥିତି ସମ୍ପର୍କରେ ପାଖ ଡବାର ଯାତ୍ରୀମାନେ କ'ଣ ଭାବୁଛନ୍ତି, ତାହା ଜାଣିବା ପାଇଁ ମୁଁ ସେଠାକୁ ଯିବାକୁ ଚାହିଁଥିଲି, ଯାହାହେଉ ଅନୁମତି ମିଳିଗଲା । ଅନ୍ୟ ଡବାରେ ଦେଖିଲି ସେଠାରେ ମଧ୍ୟ ଆମ ଡବା ଭଳି ନିସ୍ତବ୍ଧତା ରାଜୁତି କରୁଥିଲା । ମୁଁ ଛେନିଆ ନାମ୍ନୀ ସେହି କୃଷ୍ଣ କେଶୀ ହସକୁରା ଝିଅ ପାଖରେ ବସି ପଡ଼ିଲି । ସେ ଥିଲା ଲୋଡ୍‌ଜ୍ (Lodz) ର ଅଧିବାସିନୀ । ସେ ପଳାଇ ଯିବାପାଇଁ ପ୍ରସ୍ତୁତ ହେଉଥିବା ବିଷୟ ମୁଁ ପୂର୍ବରୁ ଜାଣିଥିଲି । ସେ ମୋତେ ଷ୍ଟୁଥଫରେ ଜଣାଇଥିଲା ଯେ ସୁଯୋଗ ମିଳିବା ସଙ୍ଗେ ସଙ୍ଗେ ସେ ପଳାଇ ଯିବାର ଏକ ଝୁଙ୍କି ନେବ । ସେ କହିଥିଲା ଯେ ''ପଳାୟନ ଉଦ୍ୟମରେ ଜଣେ ଜଣେ ତ ସଫଳ ହେଉଛନ୍ତି । ତେଣୁ ସେ କାହିଁକି ଉଦ୍ୟମ ନ କରିବ ?'' ଷ୍ଟୁଥଫ ପରିତ୍ୟାଗ କରିବା ପୂର୍ବରୁ ଜେନିଆ ସେକଥା କହୁଥିଲା ।

''କିନ୍ତୁ ବର୍ତ୍ତମାନ ସେହି ବିଷୟରେ ସେ କି ସିଦ୍ଧାନ୍ତ ନେଇଛି । ସେ କ'ଣ ପଳାୟନ କରିବାକୁ ଯୋଜନା କରିଛି ?'' ଅବଶ୍ୟ ଏହା ଅତ୍ୟନ୍ତ ସ୍ପଷ୍ଟ ଯେ ମାଲଗାଡ଼ିର ଲୁହା ବାଡ଼ଦିଆ କ୍ଷୁଦ୍ର ଝରକା ବାଟେ ଯିବା ଅପେକ୍ଷା ଏଭଳି ଗାଡ଼ିରୁ ପଳାଇଯିବା ଅଧିକ ସହଜ । 'ସେ କ'ଣ କରିବାକୁ ଭାବୁଛି', ମୁଁ ତା ପାଖରେ ବସି ଭାବୁଥାଏ ।

କିନ୍ତୁ ସେ ମୋତେ ହଠାତ୍ ଓଲଟି ପଚାରିଲେ, ''ତୁମେ କ'ଣ କହୁଛ ଟିକେ

କୁହନା !'' ସେମାନେ ଆମକୁ କୁଆଡ଼କୁ ନେଇ ଯାଉଛନ୍ତି- ତୁମେ ଜାଣିଛ କି ? ଆମେ ପଳାଇବା ନା ନାହିଁ ? ଏକଥା ମଧ୍ୟ ସତ୍ୟ ହୋଇ ପାରିଥାଏ ଯେ ସେମାନେ ଆମକୁ ଜର୍ମାନୀ ଯୁଦ୍ଧ ବନ୍ଦୀମାନଙ୍କ ବଦଳରେ ରୁଷିଆକୁ ପଠାଇଦେଇ ପାରନ୍ତି । ତାହା ଯଦି ସତ୍ୟ ହୋଇଥାଏ, ମୁଁ ତୁଚ୍ଛାଟାରେ କାହିଁକି ଜୀବନକୁ ବିପନ୍ନ କରି ପଳାଇଯିବାକୁ ଚେଷ୍ଟା କରିବି ? ତୁମେ କ'ଣ ଭାବୁଛ ? ମୁଁ କ'ଣ କରିବି ? ମୋତେ ଟିକେ କୁହନା !''

ବଦଳ ! ବିନିମୟ ! ବୃଥା କଥା ସେ ! ମୁଁ ପୁଣି ଭାବିଲି । ''ଆହା ! କେତେ ସହଜରେ ତାକୁ ଗୋଟାଏ ସ୍ୱପ୍ନ ଭିତରକୁ ଠେଲି ଦିଆଯାଇଛି'' । ସେ କହି ଚାଲିଥିଲା । ''ମୁଁ ଅପେକ୍ଷା କରିବି । ହୁଏତ ଆସନ୍ତା କାଲି ସବୁକଥା ପରିଷ୍କାର ହୋଇଯିବ ।

ସେତେବେଳକୁ ଅନ୍ଧାର ଘୋଟିଗଲାଣି । ଆମ ଗାଡ଼ି ନ ଅଟକି କେତେ ଅନ୍ଧକାରାଚ୍ଛନ୍ନ ଷ୍ଟେସନ୍‌କୁ ପାର ହୋଇ ଚାଲି ଯାଉଥାଏ । ବେଳେ ବେଳେ ଗୋଟିଏ ଗୋଟିଏ ପଡ଼ିଆ ମଝିରେ ଅଟକି ଯାଇ ଦୀର୍ଘ ସମୟ ସେଠାରେ ଛିଡ଼ା ହୋଇ ରହେ । ଆମେ କେଉଁ ଆଡ଼କୁ ଯାଉଛୁ ତାହା ମୁଁ ଜାଣି ପାରେନା, ଆମେ ଢୁଳାଉ । କେହି କେହି ନିଦ ବାଉଳାରେ ଗପନ୍ତି । କିଏ ହାଇ ମାରେ । ଆମ ଗାର୍ଡ଼ ମଧ୍ୟ ଜଙ୍ଘ ସନ୍ଧିରେ ରାଇଫଲ୍‌କୁ ଜାକିଧରି ଗୋଡ଼ ମେଲେଇ ଶୋଇ ଯାଇଥାଏ ।

ହଠାତ୍ ରାତି ଅଧରେ ଏକ ମଧୁର ଆନନ୍ଦର ସ୍ପର୍ଶରେ ମୋ ନିଦ ଭାଙ୍ଗିଗଲା । ମୋର ମନେ ହେଲା ଯେପରିକି ଏକ ସମବେତ ସଙ୍ଗୀତର ମୂର୍ଚ୍ଛନା କେଉଁଆଡୁ ଭାସି ଆସୁଛି, କାନକୁ ବିଶ୍ୱାସ କରି ପାରିଲି ନାହିଁ । କିନ୍ତୁ ସଙ୍ଗୀତର ଶବ୍ଦ କେତେଗୋଟି ସ୍ପଷ୍ଟ ବାରି ପାରିଲି । ଜାଣି ପାରିଲି ଯେ ପାଖ ଡବାର ମହିଳାମାନେ ଗାଉଥିଲେ ସେ ସଙ୍ଗୀତ । ଭାବିଲି- ଆମେ ବି କାହିଁକି ନ ଗାଇବା ? ଆସନ୍ତା କାଲି କ'ଣ ଘଟିବ ଘଟୁ । ଆଜି ତ ଆମେ ଅଜ୍ଞାତ ପଥର ଯାତ୍ରୀ । ତେଣୁ ଗାଇବା ନିଶ୍ଚୟ । ମୁଁ କାତିଉଷା ସମ୍ପର୍କରେ ରୁଷିଆ ଗୀତଟିକୁ ଗାଇବା ଆରମ୍ଭ କରି ଦେଲି ଡରି ଡରି । ପ୍ରଥମେ ଧୀର ଗଳାରେ ଓ ପରେ ଅଧିକ ଉଚ୍ଚ ସ୍ୱରରେ । ଜଗୁଆଳୀ କୌଣସି ଆପତ୍ତି କଲା ନାହିଁ ।

ଭୋର ଭୋର । ଆମେ ପୁଣି ଶୋଇଗଲୁ । କିନ୍ତୁ ସମସ୍ତଙ୍କ ମୁଖମଣ୍ଡଳ ଆତଙ୍କ ଓ ଉତ୍କଣ୍ଠାରେ ବିଷଣ୍ଣ ଦିଶୁଥାଏ । ସକାଳ ହେବା ସଙ୍ଗେ ସଙ୍ଗେ ପ୍ରାତଃ ଭୋଜନ ପହଞ୍ଚିଗଲା ଓ ତା ସାଙ୍ଗକୁ ଥର୍ମୋଫ୍ଲାସ୍‌ରେ ଗରମ ଗରମ କଫି ଓ କେତେ ଗୋଟି କପ୍ । ଆମର ବିସ୍ମୟର ସୀମା ରହିଲା ନାହିଁ । ବନ୍ଦୀ ଶିବିରକୁ ଯିବା ବାଟରେ ଗରମ ଗରମ କଫି । ଅକଳ୍ପନୀୟ ! ତାହା ପୁଣି ଆଣିଥିଲା ଆମ ପରିବହନର ମୁଖ୍ୟ । ମୋର ଭଲ ଭାବରେ ମନେ ଅଛି ''ସେ କେମିତି ତାହାର ମିଲିଟାରୀ ପୋଷାକର ବୋତାମ ଖୋଲିଦେଇ ଏବଂ ଦୁଇ ଗୋଡ଼କୁ ମେଲେଇ ଦେଇ ବେଞ୍ଚ ଉପରେ ବସିଗଲା ଓ ଆମର ବିସ୍ମୟକୁ

ପୂରା ଉପଭୋଗ କରୁଥିଲା ।'' ସେ ଏକଥା ବି କହୁଥାଏ, ''କଫି ବଢ଼ିଆ ହେଇନି ? ମୁଁ ପରା ସିଧା ଷ୍ଟେସନ୍ କାଫେରୁ ଆଣିଛି ।''

ସେ ତା'ର ମୁଣ୍ଡକୁ ଟଳକୁ ଝୁଲାଇ ବସିଥାଏ ଏବଂ ଭାରି ଖୁସିରେ ହସୁଥାଏ । ଆମକୁ ପୂରା ଦିନକ ପାଇଁ ଖାଦ୍ୟ ମିଳିଯାଇଥାଏ । ରୁଟି, ଲହୁଣୀ, ଛେନା ଏବଂ ମାଂସର କବାବ । ତା'ପରେ ଝରକାର ପରଦା ସବୁ ଟାଣି ଦେଇ ବାନ୍ଧି ଦିଆଗଲା । ଜଗୁଆଳି ନାତ୍‌ସୀ ଗୁଣ୍ଡା ଜଣକ ପରଦାକୁ ଖୋଲିବା ପାଇଁ ଅନୁମତି ଦେଲା ନାହିଁ ।

''ଏହି ଟ୍ରେନ୍‌ରେ କିଏ ଯାଉଛି, ତାହା ବାହାର ଲୋକ ଜାଣିବା କ'ଣ ଦରକାର'', ସେ ବୁଝାଉଥିଲା ।

ଅଜ୍ଞାତ ଗନ୍ତବ୍ୟ ସ୍ଥଳକୁ ଆମ ଗାଡ଼ି ପୁନର୍ବାର ଚାଲିବାକୁ ଲାଗିଲା । ସେହି ଦୀର୍ଘ ରେଳଯାତ୍ରା ଏବଂ ଆମ ପ୍ରତି ହେଉଥିବା ଅସ୍ୱାଭାବିକ ବ୍ୟବହାର ଆମ ଦୁଶ୍ଚିନ୍ତାକୁ ବଢ଼ାଇ ଦେଇଥାଏ । ଆମେ ଯେଉଁ ପରିସ୍ଥିତି ଦେଇ ଗତି କରୁଥିଲୁ ସେଥିରୁ କୌଣସି ଶୁଭ ସୂଚନା ମିଳୁ ନଥିଲା । ଦିନବେଳା ଆମ ଗାଡ଼ି କେଉଁଠି ପଡ଼ିଆ ମଝିଟାରେ ଅକାରଣେ ଅଟକି ଯାଉଥିଲା ତ କେଉଁଠି ବା ଘଣ୍ଟା ଘଣ୍ଟା ଧରି ଛିଡ଼ା ହୋଇ ରହୁଥିଲା, ଯେପରିକି କାହାକୁ ଅପେକ୍ଷା କରୁଛି । ''ରାସ୍ତାରେ କ'ଣ ଭିଡ଼ ଅଛି ? ଆମକୁ କେଉଁ ଆଡ଼କୁ ନିଆଯାଉଛି, ନାତ୍‌ସୀ ଗୁଣ୍ଡା ବାହିନୀ ଆମକୁ କାହିଁକି ବା ଜଣାଇବେ ?''

ଆମ ସାଙ୍ଗରେ ଥିବା କୁଜି ବୁଢ଼ୀଟି ପଚାରିଲା ''ଆମେ ବୋଧେ ସୀମାନ୍ତ ପାଖରେ ପହଞ୍ଚିଗଲୁ, ନା କ'ଣ ?''

''କେଉଁ ସୀମାନ୍ତ କଥା କହୁଛ ?'' ମୁଁ ପଚାରିଲି, କାରଣ ସେ କ'ଣ କହୁଛି ମୁଁ ବୁଝିପାରି ନଥିଲି । ବୁଢ଼ୀଟି ପୁଣି କହିଲା, ''କ'ଣ ଭାବୁଛ ? ଆମେ ବୋଧେ ସେହି ସ୍ଥାନଟିର ଖୁବ୍ ପାଖରେ ପହଞ୍ଚି ଗଲୁଣି ଯେଉଁଠାରେ ଆମକୁ ଆଦାନ ପ୍ରଦାନ କରାଯିବ ।''

କାହିଁକି କେଜାଣି ସେହି ମୁହୂର୍ତ୍ତରେ ମୋର ସମସ୍ତ ଭ୍ରାନ୍ତି ଦୂର ହୋଇଗଲା । ସେଭଳି ଉଦ୍‌ଭଟ କଥାକୁ ମୁଁ କାହିଁକି ବା ବିଶ୍ୱାସ କରିଥାନ୍ତି ? ବରଂ ମୁଁ ଭାବୁଥିଲି, ''ମୁଁ ଜେନିଆକୁ କାହିଁକି ନ କହିଲି'', ''ଯଦି ପାରିବୁ ତୁ ଲମ୍ପ ପ୍ରଦାନ କରିବାକୁ ଅନିଚ୍ଛୁକା ହୁଅନା ?''

ଏହା ଭିତରେ ପୁଣି ଅନ୍ଧାର ଘୋଟିଗଲା ଏବଂ ଆମକୁ ବି ପୁଣି ଗରମ ଗରମ କଫି ମିଳିଗଲା । ଆମର ସେହି ଭୟାବହ 'ମିଳନ ସ୍ଥଳ' ଅଭିମୁଖେ ଗାଡ଼ିଟି ଦ୍ରୁତ ଗତିରେ ଦୌଡ଼ିଥିଲା । ସେତେବେଳେ ମୋ ମନରେ ଗୋଟିଏ ମାତ୍ର ଚିନ୍ତା - ମୁଁ କେମିତି ଜେନିଆ ପାଖକୁ ଦୌଡ଼ିଯାଇ ସେହି 'ବିନିମୟ' କଥା ଯେ କେତେ ଉଦ୍‌ଭଟ ଓ ପ୍ରତାରଣା ପୂର୍ଣ୍ଣ, ସେତିକି କହିଦିଅନ୍ତି ।

ଡବା ଭିତରେ ନିସ୍ତବ୍ଧତା; କେହି କାହା ସଙ୍ଗେ କଥା ହେଉ ନାହାନ୍ତି । କାହାର ବା

କି କଥା ଅଛି ? ମୁଁ ସେହି ତଥାକଥିତ ବିନିମୟ ରୂପକ ବିଭ୍ରାନ୍ତିରୁ ମୁକ୍ତ ହୋଇ ସାରିଥିବାରୁ ଢଗୁଆଳି ନାତ୍‌ସୀ ଗୁଣ୍ଡା ମୁହଁରେ ଦେଖିଲି ପୈଶାଚିକ ସ୍ମିତ ହାସ୍ୟରେଖା । ସେ ମୋତେ ପଚାରିଲା, ''ଆଉ କ'ଣ ଦରକାର ?'' ମୋତେ ଲାଗିଲା, ''ଆମର ଉତ୍ପୀଡ଼କ ମାନେ ଆମକୁ ବ୍ୟଙ୍ଗ କରିବାକୁ ଆରମ୍ଭ କରୁଛନ୍ତି ।''

ରାତ୍ରିର ସେହି ନିସ୍ତବ୍ଧତାକୁ ଭଙ୍ଗ କରି ନାତ୍‌ସୀ ବାହିନୀର ଗର୍ଜନ ଓ ଗୁଳିର ଆବାଜ ଆମ କାନରେ ବାଜିଲା । କେବଳ ସେହିମାନେ ହିଁ ଏଭଳି ଗର୍ଜନ କରିପାରନ୍ତି । ଆମ ତବାର ନାତ୍‌ସୀ ଗୁଣ୍ଡା ଜଣକ ତାହାର ସିଟ୍‌ରୁ କୁଦାଟାଏ ମାରି ଆମ ଆଡ଼କୁ ରାଇଫଲ୍ ଦେଖାଇ ଛିଡ଼ା ହୋଇଗଲା । ଗୁଳିର ଆବାଜ ଓ ଗର୍ଜନ ଚିତ୍କାରର ଅର୍ଥ ବୁଝିବାକୁ ମୋତେ ଅଧିକ ସମୟ ଲାଗି ନଥିଲା । ତଥାକଥିତ 'ବିନିମୟ' ଉପରେ ଜେନିଆର ବିଶ୍ୱାସ ତୁଟି ଯାଇଥିଲା । ତେଣୁ ଗାଡ଼ି ଦ୍ରୁତ ଗତିରେ ଦୌଡୁଥିବା ବେଳେ ଚଳନ୍ତା ଗାଡ଼ିରୁ ସେ ଡିଆଁ ମାରି ଦେଇଥିଲା । ସେମାନେ ଜାଣିବା ବେଳକୁ ଗାଡ଼ି ବହୁତ ଦୂରକୁ ଚାଲିଯାଇଥିଲା ତଥାପି ନାତ୍‌ସୀମାନେ ସେ ଆଡ଼କୁ ଗୁଳି ନ ଫୁଟାଇ ଛାଡ଼ି ନଥିଲେ । ମୋ'ର ଆଶଙ୍କା ଥିଲା ଯେ ସେହି ଘଟଣା ପରେ ନାତ୍‌ସୀ ଗୁଣ୍ଡାର ଓଠରୁ ହସ ଉଭେଇ ଯାଇଥିବ । କିନ୍ତୁ ନାଃ, ତା ହେଲା ନାହିଁ । ପରଦିନ ସକାଳୁ ଆମ ପାଇଁ ପ୍ରାତଃ ଭୋଜନ ଓ ଗରମ ଗରମ କଫି ପହଞ୍ଚିଥିଲା । କିନ୍ତୁ ଆମେ ସେହି ସମ୍ଭାବ୍ୟ ହୃତକମ୍ପକାରୀ ଚିନ୍ତାରୁ ମୁକ୍ତ ହୋଇପାରିଲୁ ନାହିଁ । ଅନ୍ଧକାରର ଆଗମନ ପୂର୍ବରୁ ଆମ ଗାଡ଼ି ଅଟକିଗଲା । ଗାଡ଼ି ଅଟକିବା ସଙ୍ଗେ ସଙ୍ଗେ ଶୟତାନମାନେ ସେମାନଙ୍କ ସ୍ୱରୂପ ପ୍ରକାଶ କରିବା ଆରମ୍ଭ କରିଦେଲେ । "Raus Raus, Schneller" (Out, out, faster) – ବାହାର ବାହାର, ଜଲ୍‌ଦି ବାହାର ବୋଲି ଗର୍ଜନ କରିବା ସଙ୍ଗେ ସଙ୍ଗେ ରାଇଫଲ କୁନ୍ଦାରେ ଆମ ମୁଣ୍ଡରେ ଭୁଷାଏ ଲେଖା ମାରିଲେ । ସେ ସ୍ଥାନଟି ଥିଲା ଗୋଟାଏ ଗୋଡ଼ି ପାହାଡ଼ର ପାଦ ଦେଶ । ସେହିଠାରେ ଆମେ ଗାଡ଼ିରୁ ଡେଇଁ ପଡ଼ିବାରୁ ଗୋଡ଼ ଖସିଯାଇ ନାକ, କାନ, ମୁଣ୍ଡ ଲହୁ ଲୁହାଣ ହୋଇଗଲା । ଏମିତି ଖସି ଖସି ପାଦ ଅୟ କରି ଯେଉଁଠି ଛିଡ଼ା ହୋଇଗଲୁ, ସେଠାରେ ଆମ ଆଖି ଆଗରେ ଦୃଶ୍ୟମାନ ହେଲା ଏକ ବିଶାଳ ଅଟ୍ଟାଳିକା !

ସାଇନ୍ ବୋର୍ଡ଼ରେ ଲେଖା ଥିଲା - 'ଆଉସ୍‌ଭିତ୍‌ଜ୍' ।

ବୁଝିଗଲି, ଆମେ ଠିକ୍ ସୀମାନ୍ତରେ ହିଁ ପହଞ୍ଚିଗଲୁ ।

'ନର୍କର ସୀମାନ୍ତ' ।

■■■

– ୩ –

# ଜୁଗାଙ୍ଗ

ଆଉସ୍‌ଭିଚ୍‌ଜ୍‌ରେ ନୂତନ ଆଗନ୍ତୁକ ବା ଜୁଗାଙ୍ଗମାନଙ୍କୁ ସବା ତଳ ଶ୍ରେଣୀରେ ରଖାଯାଉଥିଲା । ସେମାନେ ଦଳିତ । ତେଣୁ ଉପେକ୍ଷିତ ଓ ନୀଚତମ ଶ୍ରେଣୀର ମଣିଷ ଭାବରେ ବିବେଚିତ ହେଉଥିଲେ । ଏପରିକି ଅନ୍ୟ ଶ୍ରେଣୀର ବନ୍ଦୀମାନେ ସେମାନଙ୍କ ସହ ଅତ୍ୟନ୍ତ ଅବଜ୍ଞା ଓ ଘୃଣା ସହକାରେ ବ୍ୟବହାର କରୁଥିଲେ । ସେମାନଙ୍କୁ ଅକାରଣ ନିଷ୍ଠୁର ଗାଳି ଓ ଗୋଇଠା ମାଡ଼ ସହ୍ୟ କରିବାକୁ ପଡୁଥିଲା । ସେମାନଙ୍କୁ ଯେଉଁ ହୁକୁମ ଦିଆଯାଉଥିଲା, ସେମାନେ ତାହା ବୁଝିପାରୁ ନଥିଲେ କି ସେଥିରେ ସେମାନେ ଅଭ୍ୟସ୍ତ ମଧ୍ୟ ନଥିଲେ । ତେଣୁ ସେମାନଙ୍କୁ କେବଳ ଆତ୍ମନିର୍ଯାତନା ହିଁ ସହ୍ୟ କରିବାକୁ ପଡୁଥିଲା । ସେମାନେ ଅନ୍ୟମାନଙ୍କ ଭଳି ଶିବିରରେ ନିଜ ପାଇଁ କୌଣସି ସୁବିଧା ସୁଯୋଗ 'ଯୋଗାଡ଼' କରିପାରୁ ନଥିଲେ କିମ୍ବା କେଉଁଠାରେ ଓ କିପରି ଲୁଚିଯିବାକୁ ହେବ, ତାହା ଜାଣୁ ନଥିଲେ । ତେଣୁ ଆତ୍ମମର୍ଯ୍ୟାଦା ରକ୍ଷା କରିବା ପାଇଁ ସେମାନଙ୍କର ପ୍ରୟାସ ନିରର୍ଥକ ଏବଂ ହାସ୍ୟାସ୍ପଦ ହେଉଥିଲା । ସର୍ଦ୍ଦାର (Sztubowa) ବ୍ଲକରେ କାର୍ଯ୍ୟ କରୁଥିବା ବନ୍ଦୀ ଚପରାସୀ । ତାକୁ ୱାର୍ଡ଼ନର ସହକାରୀ ଭାବରେ ବିବେଚନା କରାଯାଏ । ସେ ତା' ମନ ଖୁସିରେ ତାକୁ ପିଟେ । ବିନା କାରଣରେ ସେ ତା ମୁହଁ ଉପରେ ନିରବଚ୍ଛିନ୍ନ ଭାବରେ ପିଟିପିଟି ତାହାର ଆଖି ଦୁଇଟିକୁ ନୀଳ ଚଷମା ଭଳି କରିଦେଲେ ମଧ୍ୟ ବିଚରା ଜୁଗାଙ୍ଗ ଜଣକ ସେହି ମାଡ଼ର କୌଣସି କାରଣ ବୁଝି ନ ପାରି କେବଳ ଅସହାୟ ନିରୀହ ଦୃଷ୍ଟିରେ ଚାହିଁ ଏତିକି ମାତ୍ର କହେ, ''ହେ କାହିଁକି ମୋତେ ଏପରି ପିଟୁଛ ଭଲା ! ମୁଁ ପରା ମଣିଷଟା ।''

ପୈଶାଚିକ ହସଟାଏ ହସି ଦେଇ ସର୍ଦ୍ଦାର କହେ ''ତୁ ମଣିଷ ନୋହୁଁ । ତୁ ଗୋଟାଏ ପୂତି ଗନ୍ଧମୟ ଜୁଗାଙ୍ଗ । ଏହି ମୁହୂର୍ତ୍ତରେ ତୋତେ ପିଟି ପିଟି ମାରି ଦେବା କଥା ! ବୁଝିଲୁ ?

ଜାନୁଆରୀ ୧୩ ତାରିଖରେ ମୁଁ ମଧ୍ୟ ଗୋଟାଏ 'ଜୁଗାଙ୍ଗ' ପାଲଟି ଗଲି- ସେହି ପୂତି ଗନ୍ଧମୟ ଜୁଗାଙ୍ଗ, କ୍ଷୁଧାତୁରା, ପଦ ଦଳିତା, ଜାତିଭ୍ରଷ୍ଟା ଜୁଗାଙ୍ଗ । ସେହି ସନ୍ଧ୍ୟାରେ ଆମ ଦଳର ଅନ୍ୟମାନଙ୍କ ସହ ବ୍ଲକ୍ ମଧ୍ୟରେ ପ୍ରବେଶ କଲୁ ଏକ ବିଶାଳ ଲୁହା ଫାଟକ ବାଟେ । ସେଠାରେ ଝୁଲୁଥିବା ଏକ ବଡ଼ ସାଇନ୍ ବୋର୍ଡ଼ରେ ଲେଖାଥିଲା "Arbeit, macht frer" (ଶ୍ରମ ହିଁ ମୁକ୍ତିଦାତା) ।

ଆମେ ସେଠାରେ ପହଞ୍ଚିବା ସଙ୍ଗେ ସଙ୍ଗେ ଆମକୁ ଗୋଟିଏ ବାଥରୁମକୁ ଅଡ଼େଇ

ନେଲେ । ସେଠାରେ 'ବାମସ୍ନାନ'ର ବ୍ୟବସ୍ଥା ମଧ୍ୟ ଥିଲା । ସେ ପର୍ଯ୍ୟନ୍ତ ମୁଁ ଜାଣି ନଥିଲି ଯେ ଗାଡ଼ିରୁ ଓହ୍ଲେଇ ବ୍ଲକରେ ପଶିବା ବେଳେ ଗେଟ୍‌ର ସାଇନ୍ ବୋର୍ଡ଼ରେ ଲେଖାଥିବା ଯେଉଁ କୁଖ୍ୟାତ ଶବ୍ଦାବଳୀ ଦେଖିଥିଲି ଯେ 'ଶ୍ରମ ହିଁ ମୁକ୍ତିଦାତା' ତାହା ବାସ୍ତବରେ ଥିଲା ଏକ 'ମୃତ୍ୟୁ ଉପତ୍ୟକା'ର ପ୍ରବେଶ ଦ୍ୱାର । ଆମ ପାଇଁ ସେଠାରେ କ'ଣ ଅପେକ୍ଷା କରିଥିଲା, ତାହା କୌଣସି ରକ୍ତ ମାଂସର ମଣିଷ କଳ୍ପନା କରିପାରିବ ନାହିଁ । ସେଠାରୁ ଆମକୁ ଯେଉଁଠାକୁ ନିଆଗଲା ତାହା ଏକ ବିରାଟ ରଙ୍ଗାଳୟ ଭଳି ଦିଶୁଥିଲା । ସେଠାରେ ଆମକୁ ସମ୍ପୂର୍ଣ୍ଣ ଉଲଗ୍ନ ହୋଇ ବେଞ୍ଚ ଉପରେ ବସି ରହିବାକୁ ପଡ଼ିଲା । ସେହି କୋଠରୀକୁ ଉଷ୍ମ କରିବାର କୌଣସି ବ୍ୟବସ୍ଥା ନ ଥିବାରୁ ଆମେ ଶୀତରେ କମ୍ପିବାକୁ ଲାଗିଲୁ । ନାତ୍‌ସୀ ଆତଙ୍କବାଦୀମାନେ ଦେଖିବା ପାଇଁ ସେହି ଅବସ୍ଥାରେ ଆମକୁ ବସି ରହିବାକୁ ପଡ଼ିଲା । ସେମାନେ ପହଞ୍ଚିବା ସଙ୍ଗେ ସଙ୍ଗେ ଜଗୁଆଳ ଅର୍ଡର ଦେଲା 'ଠିଆ ହୋଇପଡ଼' ! ଆମେ ପ୍ରାୟ କୁଦି ପଡ଼ି ସେହିଭଳି ଉଲଗ୍ନ ଅବସ୍ଥାରେ ଛିଡ଼ା ହୋଇ ପଡ଼ିଲୁ । ଆତଙ୍କବାଦୀମାନେ ଘୃଣା ବ୍ୟଞ୍ଜକ ଦୃଷ୍ଟିରେ ଆମକୁ ଆପାଦମସ୍ତକ ଧୀରେ ଧୀରେ ନିରୀକ୍ଷଣ କଲେ । ସେ ଏକ ହୃଦୟ ବିଦାରକ ଦୃଶ୍ୟ ।

ସେହି ଆତଙ୍କବାଦୀଙ୍କ ସମ୍ମୁଖରେ କେତେଜଣ ଲୋଳିତ ଚର୍ମା ବୃଦ୍ଧା ସେମାନଙ୍କର ବୟସ ଏବଂ ଲମ୍ବିତ ବକ୍ଷ ସ୍ଥଳକୁ ଆତଙ୍କବାଦୀଙ୍କ ଶ୍ୟେନ ଦୃଷ୍ଟିରୁ ଲୁଚାଇବା ପାଇଁ କେତେ ବୃଥା ପ୍ରୟାସ ନ କରୁଥିଲେ ସତେ ! ଜଣେ ଆତଙ୍କବାଦୀ ଗର୍ଜନ କଲା ''ଭଣ୍ଡାରୀ କାହିଁ ?'' ''ଭଣ୍ଡାରୀ ?'' ମନେ ମନେ ଭାବିଲି ଆମେ ''ଏଭଳି ଉଲଗ୍ନ ହୋଇ କି ବଲଡ୍ୟାନ୍ସ କରିବୁ ଯେ ଆମର କେଶ ବିନ୍ୟାସ ପାଇଁ ଭଣ୍ଡାରୀ ଦରକାର ହେଉଛନ୍ତି ।'' ଅର୍ଡର ସଙ୍ଗେ ସଙ୍ଗେ କେତେଜଣ ବନ୍ଦୀ ହାତରେ ବଡ଼ ବଡ଼ କଇଁଚି ଧରି ସେଠାକୁ ଧସେଇ ପଶିଲେ ଓ ପାହାଚ ପାଖରେ ଛିଡ଼ା ହୋଇଗଲେ । ଓ୍ୱାର୍ଡେନ୍ ଚିତ୍କାର କରି କହିଲା ''ଆବେ ଗୁଡ଼୍‌ବକ୍‌ମାନେ, ଅନେଇଛ କାହାକୁ ? ଲାଇନ୍‌ରେ ଛିଡ଼ା ହୋଇ ଜଣ ଜଣ କରି ଚୁଳ କାଟ !'' ଏତକ କହିବା ସହିତ ସେ ବନ୍ଦିନୀମାନଙ୍କ ମୁହଁକୁ ପାହାରେ ପାହାରେ ବାଡ଼ଉଥାଏ । ଧକ୍କେ ଧକ୍କେ ମାରି ଭଣ୍ଡାରୀ ଆଡ଼କୁ ଠେଲି ଦେଉଥାଏ । ବେଳେବେଳେ ଜୋର୍‌ରେ ମଧ୍ୟ ପିଟୁଥାଏ ଯେପରିକି ନାତ୍‌ସୀ ଆତଙ୍କବାଦୀମାନଙ୍କ ଆଗରେ ପ୍ରମାଣ କରିବାକୁ ଯେ ''ସେ ସେହି କାର୍ଯ୍ୟ ପାଇଁ ଅତ୍ୟନ୍ତ ଦକ୍ଷ ।''

ମେଣ୍ଢାମାନଙ୍କ ଦେହରୁ ଚୁଳକଟା ଆରମ୍ଭ ହୋଇଗଲା । ନିର୍ଜୀବ କଇଁଚିମାନେ ଆମ ମୁଣ୍ଡରୁ ପୁଳା ପୁଳା ଚୁଳ ଛଣ୍ଡାଇ ପକାଉଥିଲେ । ମେଣ୍ଢା ଏବଂ ଆମ ଭିତରେ ଏତିକି ପାର୍ଥକ୍ୟ ଯେ ଲୋମ କଟା ହେବାବେଳେ ସେମାନେ ଭେଁ ଭେଁ ବୋବାଳି ଛାଡ଼ନ୍ତି କିନ୍ତୁ ଆମେ ନୀରବରେ ଅଶ୍ରୁ ବିସର୍ଜନ କରୁଥିଲୁ ।

''ଗୋଡ଼ ମେଲେଇ ଦିଅ ବେ ।'' ୱାର୍ଡେନ୍ ଚିତ୍କାର କଲା । ତାହାପରେ ସମଗ୍ର ଶରୀରରୁ ମଧ୍ୟ ଲୋମ କତୁରୀ ହେଲା । ଧମକ, ବିଧା ଓ ପ୍ରହାର ଭିତରେ କେଶୋତ୍ପାଟନ ପର୍ବ ଅନତି ବିଳମ୍ବେ ଶେଷ ହୋଇଗଲା । ଆମେ ଅଶେଷ ମାନସିକ ଓ ଶାରୀରିକ ଯନ୍ତ୍ରଣା ଅନୁଭବ କଲୁ । ଚିନ୍ତାଶୀଳ ଓ ଅନୁଭୂତି ସମ୍ପନ୍ନ ମନୁଷ୍ୟ ଭାବରେ ଆମର ଆଉ କୌଣସି ଅସ୍ତିତ୍ୱ ନଥିଲା । ସେହି ଅପରିଚିତ ପୁରୁଷମାନଙ୍କ ସମ୍ମୁଖରେ ଆମର ଲଜ୍ଜା ମାନ ସମ୍ଭ୍ରମ ସବୁ କିଛି ଲୋପ ପାଇଗଲା । ଆମେ ମଣିଷ ନୋହୁଁ, ଗୋଟିଏ ଗୋଟିଏ ନିର୍ଜୀବ ବସ୍ତୁରେ ପରିଣତ ହୋଇ ଯାଇଥିଲୁ, ''ଯାହା ଉପରେ ସେମାନେ ଯଥେଚ୍ଛାଚାର କରିପାରିବେ ଏବଂ ନିଶ୍ଚେତ ଅଂଶଗୁଡ଼ିକ ସବୁଆଡୁ ପରୀକ୍ଷା କରିପାରିବେ ।'' ଦେହର ଚର୍ମ ଉପରେ ଥିବା କ୍ଷୁଦ୍ରାତି କ୍ଷୁଦ୍ର ଲୋମଗୁଡ଼ିକୁ କର୍କଶ କଇଁଚିରେ ନିର୍ମମ ଭାବରେ କାଟିବା ବେଳେ ଯେଉଁ ଅସହ୍ୟ ଯନ୍ତ୍ରଣା ହେଉଥିଲା- ସେଥିପ୍ରତି ସେମାନଙ୍କର ସାମାନ୍ୟ ଦରଦ ମଧ୍ୟ ନଥିଲା । ସେମାନେ ଏକଥା କେବେ ହେଲେ ଭାବୁ ନଥିଲେ ଯେ ''ଜଣେ ନାରୀର କେଶ ହେଉଛି ସର୍ବଶ୍ରେଷ୍ଠ ଭୂଷଣ । ସେ ଯଦି ଏହିଭଳି ଭାବରେ କେଶ ଶୂନ୍ୟ ହୋଇଯାଏ, ତାହା ତା' ପାଇଁ ମୃତ୍ୟୁ ଅପେକ୍ଷା ଅଧିକ ଯନ୍ତ୍ରଣା ଦାୟକ । ଚରମ ଲଜ୍ଜା ଏବଂ ଅପମାନ ଜନକ ।''

ଥାକ ଥାକ ହୋଇ କଟା ହୋଇଥିବା ଅବଶିଷ୍ଟ କେଶ କେତେଗୋଟି ମସ୍ତକରେ ଧାରଣ କରି ଆମ୍ଭେମାନେ ସେହିଭଳି ଉଲଗ୍ନ ଅବସ୍ଥାରେ ବେଞ୍ଚ ଉପରେ ବସି ରହିଲୁ । ଥଣ୍ଡାରୁ ରକ୍ଷା ପାଇବା ପାଇଁ ଆମେ ପାଖକୁ ପାଖ ଲାଗି ବସି ରହିଲୁ । ସମ୍ପୂର୍ଣ୍ଣ ବିବର୍ତ୍ତିତ ହୋଇଥିବା ଆମମାନଙ୍କର ସେହି କିମ୍ଭୂତ କିମାକାର ମୂର୍ତ୍ତିଗୁଡ଼ିକ ଭିତରେ ମୁଁ କୌଣସି ପରିଚିତ ଆତ୍ମୀୟ ଲୋକକୁ ଚିହ୍ନିପାରିଲି ନାହିଁ । ପ୍ରତ୍ୟେକଙ୍କ ଚେହେରା ଯେତିକି ବେଦନାଦାୟକ ତତୋଧିକ ହାସ୍ୟାସ୍ପଦ ମଧ୍ୟ । ସେହି ଦୃଶ୍ୟକୁ ଟିକେ ଚିନ୍ତା କରନ୍ତୁ, ଦିନ ଥିଲା, ଯେତେବେଳେ ଆମେ ପ୍ରତ୍ୟେକ ହୁଏତ ଅନ୍ୟ ଭିତରେ ସ୍ନେହ, ପ୍ରେମ, ବାତ୍ସଲ୍ୟ ଓ କିଛି ଆକର୍ଷଣ ସୃଷ୍ଟି କରିବାକୁ ସମର୍ଥ ହେଉଥିଲୁ । ପ୍ରତ୍ୟେକଙ୍କର କିଛି ମୂଲ୍ୟବୋଧ ଥିଲା । କିଛି ଅଭିଳାଷ ଓ ସ୍ୱପ୍ନ ସାମ୍ରାଜ୍ୟ ମଧ୍ୟ ଥିଲା । ଆମର ନିଜସ୍ୱ ଯାହା କିଛି ଥିଲା ଅଳ୍ପ କେଇ ଘଣ୍ଟା ଭିତରେ ସବୁ କିଛି ଲୁଣ୍ଠିତ ହୋଇଗଲା ଆମକୁ ଦେଖାଇ ଦିଆଯାଉଥିଲା ଯେ ଆଉସ୍‌ଭିଚ୍‌ଜ୍‌ରେ ଆମେ ଆତ୍ମା ରହିତ ମୁଖ ଶୂନ୍ୟ ଗୋଟିଏ ଗୋଟିଏ ସଂଖ୍ୟା ମାତ୍ର ।

''ଲିଜା କିଏ ? ପଦାକୁ ବାହାରିଆ ।'' ଓ୍ୟାର୍ଡେନ୍ ଗର୍ଜନ କଲା ।

ଲିଜା ଗୋଟିଏ ସୁନ୍ଦରୀ ତରୁଣୀ । ମୋର ମନେ ଅଛି, ବିୟଲ ଷ୍ଟୋକ୍ ବନ୍ଦୀଶାଳାରେ ସେ ଦିନେ ଦିନେ ସନ୍ଧ୍ୟାରେ ଋଷିୟାନ ସଙ୍ଗୀତର ଆସର ଜମେଇ ଦିଏ । ତା ସହ ଗାଏ କେତେ ଅପେରାର ମେଲୋଡ଼ି ।

ୱାର୍ଡେନ୍ ପଚାରିଲା, ''ତୁ ଗାଇ ଜାଣୁ ?'' ଲିଜାର ଉତ୍ତରକୁ ଅପେକ୍ଷା ନ କରି ବରାଦ କରିଦେଲା, ''ବାହିନୀର ମନୋରଞ୍ଜନ ପାଇଁ ଗାଇବୁ ଗୋଟାଏ ଜର୍ମାନୀ ସଙ୍ଗୀତ ।'' ଉଲଗ୍ନ ଦେହରେ ସର୍ବାଙ୍ଗ ଥରୁଥିବା ଲିଜା ସଙ୍ଗେ ସଙ୍ଗେ ଗାଇଲା ତାହାର ହୃଦୟସ୍ପର୍ଶୀ କଣ୍ଠରେ ଏକ କରୁଣ ସଙ୍ଗୀତ - Auch ich war einst ein reicher' (ମୁଁ ମଧ୍ୟ ଏକଦା ଧନୀର ଦୁଲାଳୀ ଥିଲି)

ଉଲଗ୍ନ ଲିଜାର ସମ୍ମୁଖରେ ଛିଡ଼ା ହୋଇଥାନ୍ତି ନାତ୍‌ସୀ ଆତଙ୍କବାଦୀ ବାହିନୀ ଓ ଭଣ୍ଡାରୀ ବନ୍ଦୀଗଣ । ଏବଂ ପ୍ରେକ୍ଷାଳୟରେ ଥାଉ ଆମେ ବନ୍ଦୀଗଣ ଓ ୱାର୍ଡେନ୍- ସେହି ବିଭତ୍ସ ଦୃଶ୍ୟର ଉପଭୋକ୍ତା !

ଭୀଷଣ ମାନସିକ ଚାପରେ ମୁଁ ଏତେ କ୍ଳାନ୍ତ ହୋଇଯାଇଥିଲି ଯେ ମୁଁ ପ୍ରାୟ ସଂଜ୍ଞାହୀନ ହୋଇଗଲି । ମୋତେ ଜଣାଗଲା ଯେମିତି ବାୟୁ ମଣ୍ଡଳ ତରଙ୍ଗାୟିତ ହୋଇ ମୋ' ଚତୁଃପାର୍ଶ୍ୱରେ ଘୁରିବୁଲୁଛି ଓ ତା' ସହ ଘୁରୁଛନ୍ତି ନାତ୍‌ସୀ ଆତଙ୍କବାଦୀ ବାହିନୀ, ବନ୍ଦୀ ଭଣ୍ଡାରୀ ଗଣ ଏପରିକି ଲିଜା ମଧ୍ୟ । ମୋତେ ଜଣାଯାଉଥାଏ ଯେପରିକି ମୁଁ ଅନ୍ୟ ଏକ ପୃଥିବୀ ପୃଷ୍ଠରୁ ସେହି ଦୃଶ୍ୟ ରାଜି ଦେଖୁଛି । ହଠାତ୍ ଜଣେ ଆତଙ୍କବାଦୀ ଲିଜା ମୁଣ୍ଡରେ ପାହାରେ ପିଟିଦେଇ କହିଲା, ''ବନ୍ଦ କର୍ ବେ ।''

ପର ମୁହୂର୍ତ୍ତରେ ସେମାନେ ଆଉ ଗୋଟେ ଘରକୁ ଆମକୁ ଠେଲି ଦେଲେ, ଯେଉଁଠାରେ କୃତ୍ରିମ ବର୍ଷଣ ସ୍ନାନର ବ୍ୟବସ୍ଥା ଥିଲା । କେତେବେଳେ ଉଷୁମ ପାଣିର ଫୁଆରା ଖୋଲିବ ସେହି ଅପେକ୍ଷାରେ ଆମେ କଳ ତଳେ ଅପେକ୍ଷା କଲୁ । କିନ୍ତୁ ହାୟ ଏ କ'ଣ ହେଲା ! ହଠାତ୍ ଉଷୁମ ପାଣି ପରିବର୍ତ୍ତେ ବରଫ ପାଣି ଓଜାଡ଼ି ହୋଇ ପଡ଼ିଲା ଆମ ଉପରେ । ଥଣ୍ଡାରେ ଦେହର ଚମଡ଼ା ସବୁ ଛାଲି ହୋଇଗଲା ଭଳି ଅନୁଭବ କରି ପ୍ରାଣ ବିକଳରେ ଆମେ ପାଇପ୍ ତଳୁ ପଳେଇ ଆସିଲୁ । ୱାର୍ଡେନ୍ ଡାକୁଥାଏ ''ହଁ, ହଁ, ଧୋଇ ହୋଇପଡ଼'' ଆମ୍ଭମାନଙ୍କର ଦାନ୍ତ ଥଣ୍ଡାରେ ଠକ୍ ଠକ୍ ହେଉଥିଲା ଏବଂ ମନେ ହେଉଥିଲା ଯେପରିକି ଆମେ ଗୋଟାଏ ବରଫ ପ୍ରପାତ ତଳେ ଛିଡ଼ା ହୋଇଛୁ । ପାଖ ରୁମ୍‌ରେ ଆମକୁ କେତେକ ଛିଣ୍ଡା ପୁରୁଣା ପୋଷାକ ଦିଆଗଲା । ମୋ ଭାଗରେ ପଡ଼ିଲା ଗୋଟାଏ ଲମ୍ବା କଳା ସିଲ୍କ ପୋଷାକ ଯାହାର ଦେହ ସାରା କଣା । ବାହାରେ କଠିନ ବରଫ ବର୍ଷା ଆମ ପାଦରେ ମୋଜା ନଥାଇ କାଠ ତଳି ଜୋତା ।

ମୁଣ୍ଡିତ ମସ୍ତକ, ଦେହରେ ସହସ୍ର କଣା ବିଶିଷ୍ଟ ସିଲ୍କ ପୋଷାକ । ଆଖିରେ ଆଖିଏ ଲୁହ । ଭୟ, ଆତଙ୍କ ଓ ପେଟରେ ଅଦମନୀୟ କ୍ଷୁଧାକୁ ନେଇ ମୁଁ ହୋଇଯାଇଥିଲି ଏକ କିମ୍ଭୂତ କିମାକାର ଜୁଙ୍ଗାଙ୍ଗ । ମୁଁ କଳ୍ପନା କରିବାକୁ ଲାଗିଲି– ହଜାର ହଜାର ଆଙ୍ଗୁଳି ମୋ ଆଡ଼କୁ ଉଦ୍ୟତ ହୋଇ କହି ଚାଲିଛନ୍ତି– ''ଏଇଟା ଗୋଟାଏ ଶିକାର ଯାହାକୁ ତୁମେ

ପିଟି ପାରିବ, ତାହା ଉପରେ ସମସ୍ତ କ୍ରୋଧ ପ୍ରଶମିତ କରିପାରିବ, ସେ ଉଁ କି ଚୁଁ ହେବ ନାହିଁ, ଏପରିକି ତା' ଉପରେ କୌଣସି ଅସ୍ୱାଭାବିକ ନର୍ଯାତନା କଲେ ବି ସେ ପାଟି ଫିଟାଇବ ନାହିଁ, ଯଦି ତାହା ସେ ସହି ନ ପାରେ, ତେବେ ତ ଆହୁରି ଭଲ, ଗୋଟିଏ ଜୁଙ୍ଗାଙ୍ଗ ସଂଖ୍ୟା କମିବ ।'

ଆମମାନଙ୍କୁ ଜୁଙ୍ଗାଙ୍ଗ ବ୍ଲକ୍‌କୁ ନିଆଗଲା । ତାହା ଏକ ବିଶାଳ ବ୍ୟାରାକ୍ । ମଝିରେ ଏ ମୁଣ୍ଡରୁ ସେ ମୁଣ୍ଡ ଇଟା ତିଆରି ଚୁହ୍ଲା । ତାହାର ଦୁଇ ପାର୍ଶ୍ୱରେ ଲମ୍ବ ଗଭୀର ଟ୍ରେଞ୍ଚ । ସେହି ଟ୍ରେଞ୍ଚ ଭିତରେ ଶୋଇବା ସ୍ଥାନ । ତାହାର କାନ୍ଥରେ ଦୁଇ ଥାକିଆ ଶୟନ ବ୍ୟବସ୍ଥା । ସେଠାରେ ଜମା ହୋଇଥାଏ ଧୂଳି ଧୂସରିତ କିଛି କମ୍ବଳ । ମୁଁ ମଧ ସେହି ଶୟନ କକ୍ଷ ମଧ୍ୟରୁ ଗୋଟିକରେ ପଶିଗଲି । କିନ୍ତୁ ଶୋଇବା ସମ୍ଭବ ହେଲା ନାହିଁ । ସାରା ରାତି ମହିଳା ବନ୍ଦିନୀମାନେ ନିଜ ନିଜ ଟ୍ରେଞ୍ଚ କାନ୍ଥରେ ଚଢ଼ି ବାହାରକୁ ଯାଆନ୍ତି । ବାହାରେ ଥୁଆ ହୋଇଥାଏ ଏକ ବଡ଼ କାଠ ବାକ୍ସ ଯେଉଁଠାରେ ବନ୍ଦିନୀମାନଙ୍କର ବ୍ୟକ୍ତିଗତ ଆବଶ୍ୟକୀୟ ସୁବିଧା ସବୁ ଥାଏ । ତା ପାଖକୁ ଯାଆନ୍ତି । ଥଣ୍ଡା ଲାଗିଲେ ପୁଣି ଟ୍ରେଞ୍ଚକୁ ଫେରି ଯାଆନ୍ତି । ରାତି ସାରା ଖୁଡ୍ ଖାଡ୍, ଦୁମ୍ ଦାମ୍ ଚାଲିଥାଏ । ରାତିସାରା ବ୍ଲକ୍ ଗେଟ୍ ଖୋଲୁଥାଏ, କେଁ କଟର ।

ବ୍ଲକ୍ ଭିତରେ ଶୋଇଥିବା ସର୍ଦ୍ଦାର ପାଟି କରି କହିଲା, ''କ'ଣ ଏଠିସବୁ ଚାଲିଛି ? ଏତେ ଚଢ଼ା ଉଠା କାହିଁକି ହେଉଛି ?'' ସେ ଉଠିପଡ଼ି ବ୍ଲକ୍ ବାହାରକୁ ଗଲା । ସେହି ବଡ଼ ବାକ୍ସ ଉପରେ କେତେଜଣ ହାମୁଡ଼େଇ ଥିଲେ । ସେମାନଙ୍କୁ ଠେଲି ପେଲି ଦେଲା । ମୋତେ କାହାର କ୍ଷୀଣ କ୍ରନ୍ଦନ ଧ୍ୱନି ଶୁଭିଲା । ଏଠି କେହି କାନ୍ଦିବାର ନିୟମ ନଥିଲା । କର୍ମଚାରୀ ଜଣକ ଶୁଣାଇଦେଲା, ''କେହି ଏମିତି ବୁଲି ପାରିବ ନାହିଁ । ଯଦି ବୁଲିବ ମୁଁ ତୁମକୁ କୁକୁର ଭଳି ଗୁଳିକରି ଗୋଟି ଗୋଟି ମାରିଦେବି ।'' ସବୁ ଚୁପ୍ ଚାପ୍ ହୋଇଗଲେ । କେବଳ କିଏ ହାଇ ମାରୁଥିଲା ତ କେହି କ୍ଷୀଣ ସ୍ୱରରେ କାନ୍ଦୁଥିଲା । ହଠାତ୍ ମୁଁ ଦେଖିବାକୁ ପାଇଲି; ପାଖ ବେଡ୍‌ର ଜଣେ ମହିଳା ତଳେ ବସି ପଡ଼ି ତା' କଫି ପାତ୍ରରେ ପରିଶ୍ରା କରୁଥିଲା । ସେହି ପାତ୍ରରେ ସକାଳେ କଫି ଖାଇବ । ସେ ମୋତେ ଦେଖି ବଡ଼ ଅପ୍ରତିଭ ହୋଇଗଲା ଏବଂ ତା' ମୁହଁରେ ଆଙ୍ଗୁଳି ଦେଇ ଠାରି ଦେଲା ''ତୁମେ ପାଟି କରନା !'' ମୁଁ ମୁଣ୍ଡ ହଲାଇଲି । ସେ ବିଚରା ଆଉ କ'ଣ କରିଥା'ନ୍ତା ?

■■■

-୪-

# ହୃଦୟହୀନ

ଇହୁଦୀ ଜୁଙ୍ଗାଙ୍କ ବ୍ଲକରେ ରହିବା ମୋ'ର ମାସେ ହୋଇଗଲା । କିନ୍ତୁ ସେହି ମାସକ ଭିତରେ ମୁଁ ଦୁଇଗିନା ଝୋଳ ପାଇଛି କି ନା ସନ୍ଦେହ । ମୁଁ ମୋ ଗିନା ପାଖରେ ପହଞ୍ଚିବା ସଙ୍ଗେ ସଙ୍ଗେ ନିର୍ଧୁମ୍ ଧକ୍କାଟାଏ ହିଁ ଖାଏ । ବଳବାନ ମହିଳାମାନେ ମୋ ଗିନା ଛଡ଼େଇ ନିଅନ୍ତି । ଆପତ୍ତି କଲେ ମୋ'ରି ଗିନାରେ ମୋ ମୁଣ୍ଡରେ ପାହାରେ ଖାଏ । ମୋ ସାଙ୍ଗରେ ବିୟଲ୍‌ଷ୍ଟୋକ୍ ଶିବିରରୁ ଆସିଥିବା ସୁନ୍ଦରୀ ତରୁଣୀ କାରୋଲା ମଧ୍ୟ ଥିଲା । ସେ ଖଣ୍ଡେ ରୁଟି ବା ଗିନାଏ ଝୋଳ ଯୋଗାଡ଼ କଲେ ସେଥିରୁ ମୋତେ ଭାଗ ଦିଏ । ସେ ନଥିଲେ ମୁଁ ସେଠାରେ ଜୁଙ୍ଗାଙ୍କର କଠୋର ଜୀବନରୁ ରକ୍ଷା ପାଇପାରିଥାନ୍ତି ବୋଲି ଆଶା କରି ପାରୁନି ।

୧୯୪୪ ଜାନୁଆରୀ ଅସ୍ୱାଭାବିକ ଥଣ୍ଡା ଥିଲା । ହାଜିରା ନେବା ପାଇଁ ବ୍ଲକ୍ ଆଗକୁ ସେମାନେ ଆମକୁ ଗୋଡ଼େଇ ନେବାବେଳେ ସେହି କୁହୁଡ଼ିଆ ପାହାନ୍ତିରେ ତଥାପି ଆକାଶରେ ତାରା ଗୁଡ଼ିକ ଆଖିମିଟିକା ମାରୁଥାନ୍ତି । କବିଙ୍କ ଭାଷାରେ, ''ତାରାମାନେ ଖୁସିରେ ଆଖି ଠାରୁଛନ୍ତି ।'' ମୁଁ ସେହି ଚିରା ସିଲ୍‌କ ପୋଷାକ ଭିତରେ ଶୀତରେ ଥରୁଥାଏ । ତେଣୁ ତାରା ଗୁଡ଼ାକ ମୋତେ ନିର୍ଦ୍ଦୟ ପ୍ରତିଶୋଧ ପରାୟଣ ଭଳି ଦିଶନ୍ତି । ହାଜିରା ପାଇଁ ସେମାନେ ଆମକୁ ପାଞ୍ଚଜଣିଆ କରି ଧାଡ଼ି ସଜାଡ଼ି ଥାନ୍ତି । ନିର୍ଦ୍ଦେଶ ଥିଲା ଯେ ଧାଡ଼ି ସିଧା ରହିବ ଏବଂ ଉଚ୍ଚତା ଅନୁସାରେ ଡେଙ୍ଗାରୁ ଗେଡ଼ା କ୍ରମରେ ଛିଡ଼ା ହେବାକୁ ପଡ଼ିବ । ଉନ୍ମାଦ ପ୍ରାୟ ୱାର୍ଡେନ୍‌ର ସେହି କଡ଼ା ନିର୍ଦ୍ଦେଶକୁ ବୁଢ଼ୀ ଗୁଡ଼ିକ କିଛି ବୁଝି ପାରୁ ନଥିଲେ । ସେମାନଙ୍କୁ ବୁଝାଇ ଦେବାପାଇଁ ନିର୍ବିଚାରରେ ଭିଡ଼ି ଆସନ୍ତି ସୁବେଶିତା ସୁନ୍ଦରୀ ଓ ହୃଷ୍ଟାପୃଷ୍ଟା ଯୁବତୀ କର୍ମଚାରୀମାନେ ଓ ସେମାନଙ୍କର ମା ବୟସ ବୃଦ୍ଧାମାନଙ୍କର ମୁହଁକୁ ପାହାରେ ପାହାରେ ପିଟି ଧାଡ଼ି ବାନ୍ଧିବା ଶିଖାଇ ଦିଅନ୍ତି । ସେହି କ୍ଷୀଣ ଦେହା ମହିଳାମାନଙ୍କ ଧାଡ଼ିରେ ଛିଡ଼ା ହୋଇ ସର୍ଦ୍ଦାର ଡାକ ଛାଡ଼ିବାରୁ ୱାର୍ଡେନ୍ ପହଞ୍ଚିଗଲା । କୋଡ଼ିଏ ବର୍ଷ ବୟସର ସ୍ଲୋଭାକିଆ ଇହୁଦୀ ଯୁବତୀଟି ସେ । ବେଶ୍ ସୁନ୍ଦରୀ ଓ ସ୍ମାର୍ଟ୍ । କିନ୍ତୁ କୁହୁଡ଼ି ଓ ବରଫପାତ ଯୋଗୁଁ ଟିକେ ମ୍ଳାନ ଦିଶୁଥାଏ । ଭଲ ପୋଷାକ ମଧ୍ୟ ପିନ୍ଧିଥାଏ । ନୀଳ ସ୍ଲିଭଲେସ୍ ପୋଷାକ ସାଙ୍ଗକୁ ଏକ ମସ୍ତକାବରଣ ହୁଡ଼ ତା'ର ଗରମ କୋଟ୍ ଉପରେ ଝୁଲୁଥାଏ । ସେତେବେଳେ ମୋତେ ସେ ଅତ୍ୟନ୍ତ ସୁନ୍ଦର ଦିଶୁଥାଏ- ଯେପରିକି ସ୍ୱର୍ଗାଭ ପରୀଟିଏ । ସେହି ଶୀର୍ଣ୍ଣ ଦେହା ମହିଳାଙ୍କ ଧାଡ଼ିକୁ ପରିଦର୍ଶନ କଲା ଖୁବ୍ ସମ୍ଭ୍ରମ

ସହକାରେ । ଆମର ଶୃଙ୍ଖଳିତ ଧାଡ଼ି ଦେଖି ପାଖରେ ଛିଡ଼ା ହୋଇଗଲା । ନାତ୍‌ସୀ ଆତଙ୍କବାଦୀମାନେ ଆସି ଆମର ହାଜିରା ନେବା ପର୍ଯ୍ୟନ୍ତ ଆମକୁ ସେଠାରେ ଦୀର୍ଘ ସମୟ ଅପେକ୍ଷା କରିବାକୁ ପଡ଼ିଲା । ହାଜିରା ନେଇ ସେମାନଙ୍କର ହୃଦବୋଧ ହେବ ଯେ ଜଣେ ହେଲେ ବନ୍ଦୀ ଲୁଚି ନାହାନ୍ତି ଏବଂ ସମସ୍ତେ ସେହି ମୃତ୍ୟୁଦୂତମାନଙ୍କୁ ସ୍ୱାଗତ ଜଣାଇବାକୁ ପ୍ରସ୍ତୁତ ହୋଇ ରହିଅଛନ୍ତି । ମୁଁ 'ମୋ' ବଙ୍କର୍ (ଶୟନ ସ୍ଥାନ)ରେ ବସି ମୋ ଆଖି ଆଗରେ ଘଟି ଯାଉଥିବା ଘଟଣାବଳୀକୁ ଦେଖୁଥାଏ । ଆଉସ୍‌ଭିଜ୍‌ରେ ପହଞ୍ଚିବା ଦିନ 'ମୋ' ଠାରୁ ମୁଁ ସମ୍ପୂର୍ଣ୍ଣ ପୃଥକ ହୋଇ ଯାଇଥିଲି । ଆତ୍ମରକ୍ଷା ପାଇଁ ଓ ହତାଶା ଏବଂ ନୈରାଶ୍ୟରୁ ମୁକ୍ତ ହେବା ଉଦ୍ଦେଶ୍ୟରେ ମୋ'ର ହୃଦୟ, ସମସ୍ତ ବୁଦ୍ଧି ବୃତ୍ତି ଓ ପ୍ରଜ୍ଞାକୁ ମୁଁ ବିଦାୟ ଦେଇ ସାରିଥିଲି । ଯେଉଁ ଗରମ କଫି କପେ ମୁଁ କୌଣସି ପ୍ରକାରେ ଯୋଗାଡ଼ କରିଥିଲି ସେଥିରୁ ଢୋକେ ଢୋକେ ପିଉ ପିଉ ମୋର ଚତୁର୍ଦ୍ଦିଗରେ ପରିବେଷ୍ଟିତ ଅବାସ୍ତବ ପୃଥିବୀ ଉପରେ ଦୃଷ୍ଟି ପକାଉଥିଲି । ମୋ'ର ଦୁଇଟି ଶଯ୍ୟା ଛାଡ଼ି ଶୋଇଥିଲେ ଦୁଇଟି ଗ୍ରୀକ୍ ମହିଳା- ନିର୍ଧୂମ୍ କଳା କିନ୍ତୁ ଅତ୍ୟନ୍ତ ସୁନ୍ଦରୀ, ଗେଡ଼ି ମହିଳା ଜଣକ ଖୁବ୍ ଖୁସ୍ ମିଜାଜ୍ ଓ ସୁଖର ଦୁଃଖର । ସେ ଥିଲା ଜଣେ ପୋଷାକ ନିର୍ମାତା । ଶିବିରର କର୍ତ୍ତାମାନଙ୍କୁ କ'ଣ କେମିତି ବୁଝାଇ ଦେଇ ସେହି ଦାୟିତ୍ୱରେ ଅବସ୍ଥାପିତ ହୋଇଥିଲା । ଖୁବ୍ ଦକ୍ଷ ଓ ବୁଦ୍ଧିମତୀ । ସାରାଦିନ ଶିବିର କାର୍ଯ୍ୟାଳୟରେ ବସି ସିଲାଇ ମେସିନ୍ ଚଳାଉଥାଏ । ସନ୍ଧ୍ୟାରେ ଫେରେ ଶିବିର ଭିତରକୁ । ଭଲ ଖାଇବାକୁ ଓ ପିନ୍ଧିବାକୁ ପାଏ । ଆତ୍ମ ବିଶ୍ୱାସରେ ଭରପୂର ଦିଶେ । ପନ୍ଦର ବର୍ଷ ବୟସର ଆଉ ଗୋଟିଏ ଝିଅ ତା'ର ପାଖ ଶଯ୍ୟାରେ ଶୁଏ, ଅସ୍ଥି ଚର୍ମ ସର୍ବସ୍ୱ ଶରୀରରେ ଯୋଡ଼ିଏ ବଡ଼ ବଡ଼ ଆଖି । କିନ୍ତୁ ମୁହଁଟିକୁ ଆଣ୍ଠୁ ସନ୍ଧିରେ ଗୁଞ୍ଜି ସାରାଦିନ ସେ ଖଟ ଉପରେ ବସିଥାଏ ଓ କାନ୍ଦୁଥାଏ । ମଟର ଦାନା ଭଳି ବଡ଼ ବଡ଼ ଲୁହ ଟୋପା ଝରୁଥାଏ ଗାଲ ଉପରେ । ଜୀବନ ଯୁଦ୍ଧରେ ପରାଜିତା ସେ ଝିଅଟି । ଏହା ପ୍ରାୟ ସୁନିଶ୍ଚିତ ଯେ ସେ ସେହିଠାରେ ହିଁ ଶେଷ ନିଃଶ୍ୱାସ ତ୍ୟାଗ କରିବ । ନିଷ୍ଠୁରତାରେ ସେ ଜର୍ଜରିତ ହୋଇଯାଏ, କିନ୍ତୁ କୌଣସି ପ୍ରତିରୋଧ କରିପାରେନା । ଦୁର୍ବଳ ଶରୀର କିନ୍ତୁ ହୃଦୟରେ ଅସରନ୍ତି ନିଃସ୍ୱାର୍ଥପରତା ।

ବହୁ କଷ୍ଟରେ ତା ସାଙ୍ଗରେ ସମ୍ପର୍କ ଲଗାଇଲି । ଅଳ୍ପଟିକେ ଜର୍ମାନ୍ ଭାଷା ସେ ଜାଣିଥାଏ । ଦିନେ ଫୁସ୍‌ଫୁସ୍ କରି ମୋ' କାନ ପାଖରେ କହିଲା, "ଆମେ ଯେଉଁଦିନ ଏଠାରେ ପହଞ୍ଚିଲେ ସେହି ଦିନ ସେମାନେ ମୋ' ମା'କୁ ଗ୍ୟାସ୍‌ରେ ମାରିଦେଲେ । ତା'ର ପାଉଁଶ ଟିକେ ମାତ୍ର ରଖିଛି ।" ଦିନେ ସନ୍ଧ୍ୟାରେ ସେ ହଙ୍ଗେରୀ ଭାଷାରେ ଅନୁଚ୍ଚ ସ୍ୱରରେ ଗାଇଲା ଗୀତଟିଏ । ଗୋଟିଏ ମା' ସମ୍ପର୍କରେ ଯେ କି ବହୁତ ଲୋକପ୍ରିୟ ହୋଇଥିଲା, ତାହାରି ସମ୍ପର୍କରେ ସେ ଗୀତ । ସେହି ସଙ୍ଗୀତଟି ସେ ଏଭଳି ହୃଦୟସ୍ପର୍ଶୀ

ସ୍ୱରରେ ଗାଇଲା ଯେ ସେ ଝିଅଟିକୁ ଓ ତାର ସଙ୍ଗୀତକୁ ମୁଁ ଆଜି ବି ମନେ ରଖିଛି । ଏହି ଭୟାବହ ପୃଥିବୀ ଯାହାକି ତା' ପକ୍ଷରେ କଳ୍ପନାତୀତ ଥିଲା, ସେହିଠାରେ ସେ ବଞ୍ଚିତ ହେଲା ମାତୃ ସ୍ନେହରୁ ।

ହଲାଣ୍ଡର ଇହୁଦୀ ରମଣୀମାନେ ବେଶ୍ ଲମ୍ବା ଚଉଡ଼ା ଓ ଇଷତ୍ ବାଦାମୀ ରଙ୍ଗର । ସେମାନଙ୍କର ଚକ୍ଷୁ ଯୁଗଳରେ ନା ଅଛି ଭୟ ନା ହତାଶା, କେବଳ ବିହ୍ୱଳତାରେ ଭରପୂର । ତେଣୁ ଯେତେବେଳେ ୱାର୍ଡେନ୍ ସହକାରୀ ବା ଅନ୍ୟ ଇତର କର୍ମଚାରୀମାନେ ଅକାରଣରେ ସେମାନଙ୍କ ମୁହଁକୁ ମୁଥ ମାରନ୍ତି ସେତେବେଳେ ସେମାନେ ବିସ୍ମିତ ହୁଅନ୍ତି । ସେହି ଇତର ବ୍ୟକ୍ତିଗୁଡ଼ିକ ଶିବିରର ଜୀବନଶୈଳୀ ସହିତ ବେଶ୍ ଅଭ୍ୟସ୍ତ ହୋଇ ଯାଇଥାନ୍ତି । ''ଯଦି ନିଜେ ମାଡ଼ ନ ଖାଇବାକୁ ଚାହଁ, ତେବେ ଅନ୍ୟକୁ ମାରିବା ଆରମ୍ଭ କର ।'' ହଲାଣ୍ଡ ମହିଳା ଗୁଡ଼ିକ ନିଜ ବିଷୟରେ ଏତେ ଉଦାସୀନ ଓ ଆଶାଶୂନ୍ୟ ହୋଇ ପଡ଼ିଥାନ୍ତି ଯେ ଖାଇବା ବେଳେ ଲାଇନ୍ ଦେବାକୁ ଅନ୍ୟ କାହାକୁ ଠେଲନ୍ତି ନାହିଁ । ବଳୁଆମାନେ ବଙ୍କର ଦଖଲ କରିନେବାରୁ ସେମାନେ ବରଂ ଚଟାଣରେ ଶୁଅନ୍ତି । ଏପରିକି ସେମାନେ ମୁହଁ ବି ଧୁଅନ୍ତି ନାହିଁ ।

''ତୁମେ ମୁହଁ ଧୋଉନା କାହିଁକି ?'' ପଚାରିଲେ ଜବାବ ଦିଅନ୍ତି । ''ଏ ନର୍ଦ୍ଦମାରେ କୋଉଠି ମୁହଁ ଧୋଇବା ? ଏଠି ଗାଧୁଆ କୁଣ୍ଡଟାଏ ବି ନାହିଁ ।''

ଏଠି ପାଣିରେ ମୁହଁ ଧୋଇବା ଯାହା ବରଫ ଚୁନାରେ ମୁହଁ ଧୋଇବା ତାହା । ମୁହଁ ଧୋଇ ଯଥା ସମ୍ଭବ ପରିଷ୍କାର ରହିବା ତ ଜୀବନର ଲକ୍ଷଣ । କିନ୍ତୁ ହଲାଣ୍ଡ ମହିଳାମାନେ ବଞ୍ଚିବା ପାଇଁ ସଂଗ୍ରାମ କରୁ ନଥିଲେ । ତେଣୁ ଖୁବ୍ ଶୀଘ୍ର ସେମାନେ ଅସ୍ଥିଚର୍ମସାର ମୁସୁଲମେନ୍ ହୋଇଗଲେ । ତେଣୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ସେହି ବ୍ଲକ୍‌ରେ ହିଁ ଅଭିଶପ୍ତ ଜୁଙ୍ଗାଙ୍କର ମୃତ୍ୟୁ ବରଣ କଲେ ।

କିନ୍ତୁ ଜର୍ମାନୀର ଇହୁଦୀ ମହିଳାମାନେ ସମ୍ପୂର୍ଣ୍ଣ ଭିନ୍ନ ପ୍ରକୃତିର । ସେମାନେ ଅନ୍ୟ ଦେଶର ଇହୁଦୀମାନଙ୍କୁ ଇତର ଦୃଷ୍ଟିରେ ଦେଖୁଥିଲେ । ଶିବିରରେ ସେମାନେ ଏଭଳି ବ୍ୟବହାର ଓ କଥାବାର୍ତ୍ତା କରୁଥିଲେ, ଯେପରିକି ସେମାନେ ଅନ୍ୟ ବନ୍ଦିନୀମାନଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ । ''ପ୍ରାଚ୍ୟ ୟୁରୋପରେ ଏହି ଇତରଙ୍କ ଗହଣକୁ ଆମକୁ କିପରି ଅଣାଗଲା ? ଯାହା ହେଲେ ବି ଆମେମାନେ ଜର୍ମାନୀର ଇହୁଦୀ ।'' ଏଭଳି ବିଦ୍ରୂପାତ୍ମକ ଭାଷା ସେମାନେ ଆମମାନଙ୍କୁ କହୁଥିଲେ । ଅଥଚ ସେମାନେ ଆମ ଭଳି ଜୋକର ପୋଷାକ ପରିହିତା ଓ ଲଣ୍ଡା । ସେମାନେ କଳ୍ପନା କରନ୍ତି ଯେ ଶେଷ ସୁଦ୍ଧା ଜର୍ମାନମାନେ ସେମାନଙ୍କୁ ଇହୁଦୀ ଶିବିରରୁ ଅଲଗା କରିନେବେ । ଜର୍ମାନ୍ ଜାତି ସର୍ବଶ୍ରେଷ୍ଠ ଓ ସମ୍ଭ୍ରାନ୍ତ- ଏହି ନୀତି ଅନୁସାରେ ସେମାନେ ଅନ୍ୟ ଇହୁଦୀଙ୍କ ଉପର ଶ୍ରେଣୀରେ ରହିବେ । ଜଣେ ବୃଦ୍ଧା ଜର୍ମାନୀ

ଇହୁଦୀ ବାରମ୍ବାର କହୁଥିଲା, ''ମୁଁ ଜଣେ ଜର୍ମାନ୍, ଇହୁଦୀ ନୁହେଁ, ସେ ନାତ୍‌ସୀ ଆତଙ୍କବାଦୀ ଆମର କ'ଣ କରିବ ? ସେ ଆମ ସହ ସେଭଳି ବ୍ୟବହାର କରିବ ନାହିଁ ।'' ସେମାନେ ଆମମାନଙ୍କୁ ଅର୍ଥାତ୍ ସହବନ୍ଦିନୀମାନଙ୍କୁ ଘୃଣା କରନ୍ତି । ଯେଉଁ ଆତଙ୍କବାଦୀମାନେ ସେମାନଙ୍କର ଘରଦ୍ୱାର ସବୁକିଛି ଲୁଟି ନେଇ ସେମାନଙ୍କୁ ଏହି ନର୍କଦ୍ୱାରକୁ ଠେଲି ଦେଇଛନ୍ତି, ସେହି ନାତ୍‌ସୀ ଆତଙ୍କବାଦୀମାନଙ୍କ ଅପେକ୍ଷା ସେମାନେ ଆମକୁ ଅଧିକ ଘୃଣା କରନ୍ତି । ଥରେ ଯେତେବେଳେ ସହକାରୀ ୱାର୍ଡେନ୍ ଜଣେ ଜର୍ମାନ୍ ଇହୁଦୀକୁ ଝୋଲ ଗିନା ଠାରୁ ଘୋଷାଡ଼ି ନେଇଗଲା, ସେ ଚିତ୍କାର କରୁଥାଏ ''ମୁଁ ଜଣେ ଜର୍ମାନ୍, ଜର୍ମାନ୍'' । ''ଅନ୍ୟ ସମସ୍ତଙ୍କ ଭଳି ତୁ ମଧ ମୋ ଦୃଷ୍ଟିରେ ଗୋଟାଏ ଘୃଣ୍ୟ ଜୁଙ୍ଗାଙ୍ଗ'', ଏତକ କହି ତା' ମୁହଁକୁ ଏକ ମୁଥ ପ୍ରହାର କଲା ।

ବୃଦ୍ଧା ଇହୁଦୀ ରମଣୀର ସେହି ଅହଙ୍କାରର କାରଣ କ'ଣ ? ସେମାନେ କେଉଁଠାରୁ ସେହି ଆତ୍ମ ବଡ଼ିମା ଲାଭ କଲେ ? ଇହୁଦୀ ମାରଣ ଅଭିଯାନ ପ୍ରଥମେ ଜର୍ମାନ୍‌ମାନେ ହିଁ ଆରମ୍ଭ କରିଥିଲେ, ଅନ୍ୟ ରାଜ୍ୟରେ ହେବାର ବହୁ ପୂର୍ବରୁ । ୧୯୩୪ ମସିହାରେ ହିଟଲରର ଜର୍ମାନୀରୁ ପୋଲାଣ୍ଡକୁ ଆସିଥିବା ଇହୁଦୀ ଶରଣାର୍ଥୀଙ୍କ କଥା ମୋର ଆଜିବି ମନେ ଅଛି । ଜର୍ମାନମାନେ କ'ଣ କରିପାରନ୍ତି, ଇହୁଦୀମାନେ ତାହା ସେହି ସମୟରୁ ଜାଣିଛନ୍ତି । ଇହୁଦୀ ଜାତିକୁ ଧ୍ୱଂସ କରିବା ପାଇଁ ଜର୍ମାନ୍‌ମାନେ କି ଭୟାବହ ଉପାୟ ଅବଲମ୍ବନ କରନ୍ତି, ତାହାର ପ୍ରତ୍ୟକ୍ଷ ସାକ୍ଷୀ ହେଉଛନ୍ତି ଜର୍ମାନର ଇହୁଦୀ । ତେଣୁ ଏହି ମରଣ ଯନ୍ତାରେ ସେମାନଙ୍କର ଆମ ପ୍ରତି କାହିଁକି ଏହି ଘୃଣା ଭାବ ? ''ସମସ୍ତଙ୍କ ଉପରେ ଜର୍ମାନ୍ ଜାତି''– ଏହି ତତ୍ତ୍ୱରେ ଉନ୍ମାଦଗ୍ରସ୍ତ ଏମାନେ । ତାହା ହେଲେ ସେମାନଙ୍କ ଜର୍ମାନ ଭାତୃବୃନ୍ଦ ସେମାନଙ୍କୁ ଆମ ଭଳି ପୂର୍ବ ୟୁରୋପୀୟ ଇତର ଇହୁଦୀଙ୍କ ସହ କାନ୍ଧକୁ କାନ୍ଧ ମିଶାଇବାକୁ ଏମାନଙ୍କୁ କାହିଁକି ବାଧ କଲେ ?

ଅନ୍ୟ ଶିବିର ଭଳି ଏହି ଇହୁଦୀ ଜୁଙ୍ଗାଙ୍ଗୀ ଶିବିର ମଧ ସ୍ଲୋଭାକିଆ ଇହୁଦୀ ମହିଳା ବନ୍ଦୀଙ୍କ ଦ୍ୱାରା ଶାସିତ ହେଉଥିଲା । ୧୯୪୪ରେ ସେମାନେ ଏଠାରେ ଥିଲେ ପ୍ରକୃତ ଅଭିଜାତ ଶାସକ । ଦୁଃଖ, ଯନ୍ତ୍ରଣା, ଜଘନ୍ୟତାର ସମାହାର ଭିତରେ ସେମାନେ ଯେ କିପରି ଅସ୍ୱାଭାବିକ ଭାବେ ଉଜ୍ଜ୍ୱଳ ଦିଶନ୍ତି, ତାହା ବିସ୍ମୟଜନକ ଅଟେ । ୧୯୪୦ରେ ଆଉସ୍‌ଭିତ୍‌ଜ୍‌ରେ ସେମାନେ ଥିଲେ ପ୍ରଥମ ବନ୍ଦୀ ଦଳ । ଏହି ଶିବିରକୁ ଗଢ଼ିଥିବାରୁ ସେମାନେ ବେଶ୍ ଗର୍ବ ଅନୁଭବ କରୁଥିଲେ । ୧୯୪୦ରେ ଯେତେବେଳେ ସେମାନଙ୍କୁ ଏଠାକୁ ଅଣାଗଲା, ଏଠାରେ କେବଳ ସନ୍ତସନ୍ତିଆ ପ୍ରାନ୍ତର ଛଡ଼ା ଅନ୍ୟ କିଛି ନଥିଲା । ଅଥଚ ଆଜି ସେଠାରେ ବ୍ଲକ୍, ବାରାକ୍, ଅଫିସ୍‌ଗୃହ ଓ ରାସ୍ତାଘାଟ । ସେମାନେ କହନ୍ତି, ଆମେମାନେ ମ୍ୟାଲେରିଆରେ ଘାଣ୍ଟି ହୋଇ ଏଠି ସବୁକିଛି ତିଆରି କଲାବେଳେ

ତୁମେମାନେ ଖଟ ଉପରେ ଶୋଇ ଉଷୁମ ଟାଣୁଥିଲ । ଜୁଙ୍ଗାଙ୍ଗମାନଙ୍କୁ ସେମାନେ ଏଭଳି ଘୃଣା ବ୍ୟଞ୍ଜକ ଭାଷାରେ ଏସବୁ କଥା କହୁଥିଲେ ଯେପରିକି ଦୁର୍ବ୍ୟବହାର ଓ ମୃତ୍ୟୁ ଛଡ଼ା ଜୁଙ୍ଗାଙ୍ଗଙ୍କର ଅନ୍ୟ କିଛି ପ୍ରାପ୍ୟ ନଥିଲା । ସେମାନଙ୍କଠାରୁ ମାଡ଼ ଗୋଇଠା ଖାଇବା ପାଇଁ ଓ ସେମାନଙ୍କର କୃତ୍ରିମ ଗର୍ବ ଓ ଯଶ ଗୌରବ ଦେଖିବା ପାଇଁ ହିଁ ଆମମାନଙ୍କୁ ବଞ୍ଚାଇ ରଖା ଯାଇଥିଲା ।

ଶିବିର ଦ୍ୱାରର ଡାହାଣ ପଟେ ୱାର୍ଡେନ୍ ଓ ତା କିରାଣୀ ରହିବା ଘର ଥିଲା । ସେହି ଘର କବାଟ ଯେତେବେଳେ ଖୋଲାଥାଏ, ମୁଁ ଟିକେ ତା' ଭିତରକୁ ଆଖି ପକାଇ ଦିଏ । ଘର ଭିତରେ ପଡ଼ିଥାଏ ଦୁଇଟା ବଡ଼ ଚଉଡ଼ା ଖଟ, ତା'ଉପରେ ପଡ଼ିଥାଏ ଗୋଲାପୀ ରଙ୍ଗର ଦୁଇଟା ଶିଙ୍କ ଗଦି । ଚେୟାର୍, ଟେବୁଲ୍ ଓ ବାସନ କୁସନ ମଧ୍ୟ ଥାଏ । ଦିନେ ଦିନେ ସକାଳୁ ୱାର୍ଡେନ୍ ଓ ତା କିରାଣୀ ଲମ୍ବ ସିଲ୍‌କ ଗାଧୁଆ ପୋଷାକ ପିନ୍ଧି ବ୍ଲକ୍ ଭିତରକୁ ପଶି ଆସନ୍ତି । ସେମାନଙ୍କୁ ଦେଖିଲେ ମୋତେ ସପନ ଭଳି ଲାଗେ । ସେମାନେ କେଉଁଠୁ ପାଆନ୍ତି ସେଭଳି ପୋଷାକ ? ତାଙ୍କର ଯେଉଁ ସାଙ୍ଗମାନେ ମାଲଖାନାରେ କାମ କରନ୍ତି ସେମାନଙ୍କଠାରୁ ପାଆନ୍ତି । ମାଲଖାନାରେ ଜୁଙ୍ଗାଙ୍ଗୀମାନଙ୍କ ନିଜସ୍ୱ ପୋଷାକ ପତ୍ର ଜବତ୍ ହେବାବେଳେ ମାଲଖାନା ବାଲା ତାକୁ ବଛା ବଛି କରନ୍ତି । ସେହିମାନଙ୍କଠାରୁ ଭଲ ଭଲ ପୋଷାକ ଆଣନ୍ତି ଏବଂ ତା ବଦଳରେ ଆମ ଖାଦ୍ୟ ପଦାର୍ଥରୁ ଚୋରି କରି ରଖିଥିବା ରୁଟି, ଲହୁଣୀ, ଛେନା ପ୍ରଭୃତି ସେମାନଙ୍କୁ ଦେଇଥାନ୍ତି ।

ଶିବିର କର୍ମକର୍ତ୍ତାମାନଙ୍କର ବିଳାସ ପୂର୍ଣ୍ଣ ଜୀବନ ଶୈଳୀ ନାତ୍‌ସୀ ଆତଙ୍କବାଦୀମାନଙ୍କ ନୀରବ ସମର୍ଥନରେ ନିର୍ବିଘ୍ନରେ ଚାଲେ । ଏହା ଏକ ନାରକୀୟ ପଦ୍ଧତି ଯେ ବନ୍ଦୀମାନଙ୍କ ପ୍ରତି ନିଷ୍ଠୁରତା ପ୍ରଦର୍ଶନରେ ବ୍ଲକର ଇହୁଦୀ କର୍ମକର୍ତ୍ତାଗଣ ଓ ନାତ୍‌ସୀ ଆତଙ୍କବାଦୀମାନେ ଉଭୟ ଐକ୍ୟବଦ୍ଧ ହୋଇ ଯାଆନ୍ତି । ସେମାନଙ୍କର ବିଳାସ ପୂର୍ଣ୍ଣ ଜୀବନ ଏବଂ ଆମମାନଙ୍କର ଅବର୍ଣ୍ଣନୀୟ ଦୁଃଖକୁ ତୁଳନା କରି ସେମାନେ ସଚେତନ ହୋଇ ଉଠନ୍ତି ଯେ ସେମାନେ ନାତ୍‌ସୀ ଆତଙ୍କବାଦୀମାନଙ୍କର ନିର୍ଦ୍ଦେଶକୁ ପାଳନ ନକଲେ ସେମାନଙ୍କୁ କ'ଣ ହରାଇବାକୁ ପଡ଼ିବ । ନିଜ ନିଜର ଅସ୍ତିତ୍ୱ ଓ ଜୀବନ ଯାପନ ଶୈଳୀକୁ ରକ୍ଷା କରିବା ପାଇଁ ଯେଉଁ ଘୃଣ୍ୟ ପନ୍ଥା ଆବଶ୍ୟକ ତାହା ସେମାନେ ଅନୁସରଣ କରନ୍ତି । ଯଦି କେତେବେଳେ ସେମାନେ ବିବେକ ଦଂଶିତ ହୁଅନ୍ତି, ସେମାନଙ୍କର ସେହି ଗୋଟିଏ ଯୁକ୍ତି "ଆମେ ପ୍ରଥମେ କେତୋଟି ବର୍ଷ ବହୁ କ୍ଳେଶ ସହ୍ୟ କରିଛୁ । ବହୁ କଠିନ ସମୟ ଅତିକ୍ରମ କରିଆସିଛୁ । ଆମେ ବର୍ତ୍ତମାନ କେତେକ ଘୃଣ୍ୟ ଜୁଙ୍ଗାଙ୍ଗ ପାଇଁ ମରିବାକୁ ଯିବୁ କାହିଁକି ?" ଏହି ଯୁକ୍ତି ସେମାନଙ୍କର ବିବେକକୁ ଶାନ୍ତ କରିଦିଏ ।

ୱାର୍ଡେନ୍‌ର ସହକାରୀ ବ୍ଲକ୍ ଭିତରେ ଆରାମରେ ଶୁଅନ୍ତି; ଅଧିକାଂଶ ସମୟରେ

ଚଟାଣରେ । ସେମାନେ ପୋଲାଣ୍ଡ ଇହୁଦୀ । ପ୍ରଥମ ଦଫାରେ ଏଠାକୁ ପ୍ରେରିତ ହୋଇଥିଲେ । ସେମାନଙ୍କୁ ବ୍ଲକର ନେତା କହିଲେ ଚଳେ । କିନ୍ତୁ ଅଧିକାଂଶ କ୍ଷେତ୍ରରେ ଅତ୍ୟନ୍ତ ଅଭଦ୍ର ଓ ବର୍ବର । ସେମାନେ ୱାର୍ଡେନ୍ ଓ କାପୋକୁ ସନ୍ତୁଷ୍ଟ ରଖିବାକୁ ପାରୁ ପର୍ଯ୍ୟନ୍ତ ଚେଷ୍ଟା କରନ୍ତି । ସେମାନେ ପୁରୁଷମାନଙ୍କ ଭଳି ଦୁଇହାତକୁ ଦୁଇପଟରେ ଝୁଲାଇ ଝୁଲାଇ ଚାଲନ୍ତି । ମଝିରେ ମଝିରେ ବନ୍ଦିନୀମାନଙ୍କ ଉପରକୁ ନିଆଁ ଓ ବାରୁଦ ଭଳି ଗାଳି ଫୋପାଡ଼ନ୍ତି ଯାହାକି ସେମାନଙ୍କୁ ଅପମାନିତ ନକରି ଛାଡ଼େ ନାହିଁ । ଦୁର୍ବଳ ଉପରେ ଅତ୍ୟାଚାର ଓ ବଳବାନ୍ ପ୍ରତି ନମ୍ରତା ପ୍ରଦର୍ଶନ ଏଠାକାର ନିୟମ ।

କେତେବେଳେ କ'ଣ ଘଟିବ ସେହି ଆଶଙ୍କାରେ ଆମେ ସବୁ ନିଜ ନିଜ ଶଯ୍ୟାରେ ଚୁପ୍ ଚାପ୍ ବସିଥାଉଁ । ଏକ ଲମ୍ବ ପୋଷାକ ପିନ୍ଧି ୱାର୍ଡେନ୍ ବ୍ଲକ ପରିଦର୍ଶନ କଲା ବେଳେ ଆମଆଡ଼କୁ ଆଡ଼ ଆଖିରେ ନ ଚାହିଁ ନାକ ସିଧା ଚାଲେ ଓ ତା'ର ଗର୍ବୋନ୍ନତ ମସ୍ତକକୁ ସମସ୍ତଙ୍କୁ ପ୍ରଦର୍ଶିତ କରି ରାଜକୀୟ ପଦକ୍ଷେପରେ ବ୍ଲକର ଏ ପାଖରୁ ସେ ପାଖ ଯାଏ ଚାଲେ । ସେ ଦୃଶ୍ୟ ଦେଖି କେହି ବିଶ୍ୱାସ କରିବନି ଯେ ସେ ୱାର୍ଡେନ୍ ସ୍ୱୟଂ ଆମ ସମସ୍ତଙ୍କ ଭଳି ଜଣେ ବନ୍ଦିନୀ ଓ ଅଭିଶପ୍ତା ଇହୁଦୀ ରମଣୀ । ଥରେ ଜଣେ ବୃଦ୍ଧା ବନ୍ଦିନୀ ବ୍ଲକ ବାହାରେ ଟିକେ ଦୂରରେ ଥିବା ଶୌଚାଳୟ ପର୍ଯ୍ୟନ୍ତ ଯାଇ ନପାରି ମଝି ବାଟରେ ବସି ପଡ଼ିଥିଲା । ଆମକୁ ଶୁଭିଲା ନିର୍ମମ ମାଡ଼ର ଶବ୍ଦ ଓ ମାଡ଼ ଖାଉଥିବା ସେହି ବୃଦ୍ଧାର ବିକଳ କ୍ରନ୍ଦନ ତା ସହ ୱାର୍ଡେନ୍‌ର ଦମ୍ଭୋକ୍ତି, "ଆବେ ସୁଅର୍, ତୁ ଭାବୁଛୁ ତୋ' ପାଇଁ ମୁଁ ଦଣ୍ଡ ପାଇବି ? ମର, ମର, ମର ।"

ଶିବିର ବାହାରେ କାଦୁଅରେ ପୋତିହୋଇ ଜମା ହୋଇଥାଏ କୁଢ଼ କୁଢ଼ ଶବ । ମହାମାନ୍ୟ ୱାର୍ଡେନ୍ ମହାଶୟା ଉଷୁମ ଟାଣିବାକୁ ନିଜର ପ୍ରକୋଷ୍ଠ ମଧ୍ୟରେ ପ୍ରବେଶ କଲେ ।

■■■

– ୫ –

# ଜୁଙ୍ଗାଙ୍ଗୀର ମୃତ୍ୟୁ

ଜୁଙ୍ଗାଙ୍ଗ ଶିବିରରେ ରହିବାର ଗୋଟିଏ ସପ୍ତାହ ଭିତରେ ମୁଁ ସହିବାର ସମସ୍ତ ସୀମା ଅତିକ୍ରମ କରିସାରିଥିଲି । ସେହି ଅବସ୍ଥାକୁ ମୁଁ ଆଉ ଅଧିକ ଦିନ ସମ୍ଭାଳି ପାରିବି ବୋଲି ମୋର ବିଶ୍ୱାସ ହେଉ ନଥିଲା । ବଳୁଆ ଲୋକଙ୍କ ଦ୍ୱାରା ମୁଁ ସମ୍ପୂର୍ଣ୍ଣ ପିଷ୍ଟ ହୋଇଯିବି ବୋଲି ଆଶଙ୍କା କରୁଥିଲି । ମୁଁ ଅନୁଭବ କରୁଥିଲି, ଅଦମନୀୟ କ୍ଷୁଧା ଟିକେ ପାଣିଆ

ଝୋଳ ପାଇଁ, ଏପରିକି ଟୋପାଏ ପାଣି ପାଇଁ ମଧ୍ୟ ମୋ ଚତୁର୍ଦ୍ଦିଗରେ ଦେଖୁଥିଲି ପାଶବିକ ସଂଗ୍ରାମ । ମୁଁ ଦିନରାତି ସର୍ବଦା ଅତ୍ୟଧିକ ଥଣ୍ଡା ଅନୁଭବ କରୁଥିଲି । ସେହି ରୋଗଶଯ୍ୟାରେ ପଡ଼ି ମୁଁ କେତେ ପ୍ରକାର ପରିକଳ୍ପନା କରୁଥିଲି । ମୁଁ ଭାବୁଥିଲି ଏମିତି କିଛି କରି ପକାନ୍ତି କି ଯାହାକି କୌଣସି ମହତ୍ ହୃଦୟ ବ୍ୟକ୍ତିର ଦୃଷ୍ଟି ଆକର୍ଷଣ କରନ୍ତା – ଯଦିଓ ସେଠାରେ ମହତ ବ୍ୟକ୍ତି ମିଳିବା ସହଜ ନ ଥିଲା । ମୁଁ କ'ଣ କରିବି କିଛି ଭାବି ପାରୁ ନଥିଲି । ମୁଁ ଜଣେ ହେଲେ ମହତ୍ ବ୍ୟକ୍ତି ସେଠାରେ ଦେଖିବାକୁ ପାଉ ନଥିଲି । ସେହି ଭୟଙ୍କର ପୃଥିବୀରେ କ୍ରମେ ନିଃଶେଷ ହେବାରେ ଲାଗିଥିଲି ।

ତା' ପରେ ମୁଁ ଆତ୍ମହତ୍ୟା କରିବାକୁ ସ୍ଥିର କଲି । ତା ଛଡ଼ା ମୋର ଅନ୍ୟ କୌଣସି ଉପାୟ ନଥିଲା । ଏହା ଆଶ୍ଚର୍ଯ୍ୟଜନକ ବୋଧ ହୋଇପାରେ । କିନ୍ତୁ ମୋ ଆଖି ଆଗରେ ଜମା ହୋଇଥିବା କ୍ରମ କ୍ଷୟପ୍ରାପ୍ତ କୁଢ଼ କୁଢ଼ ଉଲଗ୍ନ ଶବର ଦୃଶ୍ୟ ମୋତେ ବିଚଳିତ କରି ଦେଉଥିଲା । ଦୈନିକ ସକାଳେ ୱାର୍ଡେନ୍ ଶବ ଗୁଡ଼ିକୁ ବିଛଣାରୁ ଘୋଷାଡ଼ି ନେଉଥିଲା । ସେ ପ୍ରଥମେ ଶବ ଗୁଡ଼ିକୁ ସମ୍ପୂର୍ଣ୍ଣ ଉଲଗ୍ନ କରି ଶିବିରର ଗୋଟିଏ ମୁଣ୍ଡରୁ ଅନ୍ୟ ମୁଣ୍ଡ ପର୍ଯ୍ୟନ୍ତ ଘୋଷାଡୁଥିଲା ଓ ପରେ ଶବ ଗଦା ଉପରେ ଫୋପାଡ଼ି ଦେଉଥିଲା । ଗୋଟାଏ ହାତରେ ଘୋଷାଡ଼ିବା ବେଳେ ହାଡ଼ ମଡ଼ ମଡ଼ ହୋଇ ଭାଙ୍ଗିବା ଶବ୍ଦ ହେଉଥିଲା ଏବଂ ବେଳେବେଳେ ବାଡ଼େଇ ହୋଇ ମୁଣ୍ଡ ମଧ୍ୟ ଫାଟି ଯାଉଥିଲା । ମୁଁ ହତାଶ ହେଉଥିଲି, ଭାବୁଥିଲି ''ଏହି ଶବଗୁଡ଼ିକ କେତେ ପ୍ରତିଭାମାନ ଲୋକଙ୍କର ଶବ ଯେ ହୋଇ ନଥିବ ସେକଥା କିଏ କହି ପାରିବ ? କିଏ ଅଭିନେତ୍ରୀ, ଶିଳ୍ପୀ, କଳାକାର ବା କବି ବି ହୋଇପାରିଥାଏ କିମ୍ବା ହୋଇପାରିଥାଏ ଜଣେ ସାଧାରଣ ମହିଳା- ଯାହାକୁ କେହି ହୁଏତ ଭଲ ପାଉଥିବ କିମ୍ବା ସେ କାହାକୁ ଭଲପାଉଥିବ; ନଚେତ୍ ହୋଇପାରିଥାଏ ଜଣେ ସାଧାରଣ ମା' ଯେ କି ତା' ପିଲାମାନଙ୍କ ଆଖିରେ ସବୁଠାରୁ ସୁନ୍ଦରୀ ଥିଲା, କିମ୍ବା ଜଣେ ସ୍ୱପ୍ନ ବିଳାସୀ କିମ୍ବା କୌଣସି ଅଲୌକିକ ଶକ୍ତିରେ ବିଶ୍ୱାସୀ; ସେ ହୁଏତ ଆଶା କରିଥିବ ସେହି ଅଲୌକିକ ଶକ୍ତି ଶେଷ ମୁହୂର୍ତ୍ତରେ ତାକୁ ନର୍କ ଯନ୍ତ୍ରଣାରୁ ଉଦ୍ଧାର କରି ଦେବ । କିନ୍ତୁ ସବୁ ମିଥ୍ୟା ପ୍ରମାଣିତ ହୋଇଛି, କୌଣସି ଅଲୌକିକ ଶକ୍ତି ଆବିର୍ଭୂତ ହୋଇ ନାହିଁ । ସେ ସେମିତି କାଦୁଅରେ ଘୋଷଡ଼ା ହୋଇଛି । ମୁଁ ଏକଥା ଭାବି ଆତଙ୍କିତ ହୋଇଗଲି ହୁଏତ ଆସନ୍ତା କାଲି ମୋତେ ମଧ୍ୟ ସେମାନେ ବ୍ଲକ୍‌ର ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ଘୋଷାଡ଼ିବେ - ଏକ ନାମଶୂନ୍ୟ ସମ୍ମାନରହିତ ଶବଟିଏ ଭଳି । କେହି ମୋ ପାଇଁ ଶୋକ କରିବେ ନାହିଁ । ମୁଁ ତ ପରଜନ୍ମରେ ବିଶ୍ୱାସ କରେ ନାହିଁ ତଥାପି ମୁଁ ମରିଯିବା ପରେ ମୋ'ର ଅବସ୍ଥା କ'ଣ ହେବ ତାହା ଭାବି ଥରିବାକୁ ଲାଗିଲି ।

ପରବର୍ତ୍ତୀ ଗୁରୁବାର ମୋ ଜୀବନକୁ ଶେଷ କରିଦେବାକୁ ସ୍ଥିର କଲି । ଗୋଟାଏ

ସାର୍ଟ ଚିରି ଗୋଟାଏ ଦଉଡ଼ି ବଳିଲି । ସମସ୍ତେ ଶୋଇଯିବା ପରେ ମୁଁ ସେହି ଦଉଡ଼ିକୁ ବେକରେ ଗୁଡ଼େଇ ଆତ୍ମହତ୍ୟା କରିବି । ହାଜିରା ପରେ ମୁଁ ପ୍ରାୟ ଅଧା ବରଫ ପାଲଟି ଯାଇ ଉପର ଥାକରେ ଢାକି ଢୁକି ହୋଇ ରହିଲି ଏବଂ ମୋ ଚାରିପଟେ ଥିବା ମହିଳାମାନଙ୍କର କଥାବାର୍ତ୍ତା ଶୁଣିବାକୁ ଚେଷ୍ଟା କଲି । ମୁଁ ଶୁଣୁଥିଲି କିନ୍ତୁ କିଛି ହେଲେ ବୁଝି ପାରୁ ନଥିଲି । ଆତ୍ମହତ୍ୟା କରିବାକୁ ନିଷ୍ପତ୍ତି ନେବାପରେ ମୁଁ ସମ୍ପୂର୍ଣ୍ଣ ସ୍ଥିର ଓ ଶାନ୍ତ ହୋଇ ଯାଇଥିଲି । ସେହି ଗ୍ରୀକ୍ ମହିଳାଟି ମୋ ପାଖ ଶେଯରେ ମନଦୁଃଖରେ ବସି ରହିଥିଲା । ତା' ଦେହସାରା କୁଣ୍ଡେଇ ହେଉଥିବାରୁ ସେ ନିଜକୁ କ୍ଷତ ବିକ୍ଷତ କରି ସାରିଥିଲା ।

ସେ ଡରି ଡରି ମୋ କାନ ପାଖରେ କହିଲା, ''ଜର୍ମାନ୍ ଡାକ୍ତର ମୋ କ୍ଷତ ବିକ୍ଷତ ଶରୀର ଦେଖିଲେ ସଙ୍ଗେ ସଙ୍ଗେ ମୋତେ ଗ୍ୟାସକୁ ପଠାଇ ଦେବେ । ତୁମେ ଯଦି ମୋତେ ଟିକେ ମଲମ ଦିଅନ୍ତ, ମୁଁ ଦେହରେ ବୋଳି ହୋଇ ପଡ଼ନ୍ତି ଓ ଅଳ୍ପଦିନ ଭିତରେ ସବୁ କୁଣ୍ଡିଆ ଶୁଖି ଯାଆନ୍ତା ।''

''ଦୁଃଖିତ, ମୁଁ କେଉଁଠୁ ମଲମ ପାଇବି ?'' ନମ୍ରତା ସହକାରେ ତାକୁ ବୁଝାଇଲି । ସେତେବେଳକୁ ମୋର ମନ ଆଉ ଏ ଦୁନିଆରେ ନଥିଲା । ମୁଁ କେବଳ 'ମୃତ୍ୟୁ' କଥା ଚିନ୍ତା କରୁଥିଲି । ମୃତ୍ୟୁର ଶୀତଳ ସ୍ପର୍ଶ ମୋର ସମସ୍ତ ଶରୀରକୁ ଯେମିତି ଛୁଇଁ ଯାଉଥିଲା । ବ୍ଲକ୍ ଛାତରେ ଗୋଟିଏ କ୍ଷୁଦ୍ର ବଲ୍‌ବ ଜଳୁଥିଲା ଓ ସମଗ୍ର ଶିବିର ଅନ୍ଧକାରରେ ଆଚ୍ଛନ୍ନ ହୋଇଥିଲା ।

ହଠାତ୍ ସେହି ଚିନ୍ତା ଚେତନାର ପ୍ରାଚୀରକୁ ଗୋଟିଏ ଅତି ଆତ୍ମୀୟ ଲୋକର କଣ୍ଠସ୍ୱର ଭଙ୍ଗ କଲା । କେହି ଜଣେ ଆତ୍ମୀୟ ଓ ଘନିଷ୍ଠ ବ୍ୟକ୍ତି ମୋ' ଶେଯ ପାଖରେ ଠିଆ ହୋଇଥିବାର ମୁଁ ଅନୁଭବ କଲି । ''କିଏ ହୋଇପାରେ ?'' ତାକୁ ଦେଖିବା ପାଇଁ ମୁଁ ପୂରା ଝୁଲି ପଡ଼ିଲି ଏବଂ ଦେଖିଲି ସେ ଲୋକଟି ଅନ୍ୟ କେହି ନୁହେଁ । ସେ ହେଉଛି ସୋନିଆ ଭୋଜକା । ମୋତେ ଦେଖି ସୋନିଆ ସ୍ତବ୍ଧ ହୋଇଗଲା । ମୋତେ କିଛି କହିବାକୁ ପଡ଼ିଲା ନାହିଁ । ମୋ'ର ଶକ୍ତି କ୍ରମେ କ୍ଷୟ ପ୍ରାପ୍ତ ହୋଇଗଲା । ଗତ କେତେ ସପ୍ତାହ ଭିତରେ ମୋ ଉପରେ ପଡ଼ିଥିବା ଉଭୟଙ୍କର ସ୍ନାୟବିକ ଚାପ ଏହି ମୁହୂର୍ତ୍ତରେ ଯେମିତି ପଦାକୁ ବାହାରି ଆସିଲା । ମୁଁ ସଂଜ୍ଞାହୀନ ହୋଇଗଲି ।

୧୯୩୮ରୁ ୧୯୩୯ ଯାଏ ମୁଁ ଏବଂ ସୋନିଆ ପୋଡ଼େନିଆ ବନ୍ଦୀଶାଳାରେ ଆବଦ୍ଧ ଥିଲୁ । ଆମେ ଥିଲୁ ରାଜନୀତିକ ବନ୍ଦୀ । ପରେ ଯେତେବେଳେ ରୁଷିଆ ବିୟଲଷ୍ଟୋକ୍ ଦଖଲ କଲା ଆମ ଦୁହିଁଙ୍କୁ ବିୟଲଷ୍ଟୋକ୍ ସ୍କୁଲ୍‌ରେ ଶିକ୍ଷକତା କରିବାକୁ ଦିଆଯାଇଥିଲା । ୧୯୪୧ ଅଗଷ୍ଟ ମାସରେ ଆମେମାନେ ପୁନର୍ବାର ବନ୍ଦୀ ହେଲୁ ଏବଂ

ବିୟଲଷ୍ଟୋକ୍ ଘେଟୋ (ghetto) ରେ ରହିଲୁ । ସେହି ସମୟରେ ଆମେ ଦୁଇଜଣ ହିଟଲର ବିରୋଧୀ ଇହୁଦୀ ସ୍ୱେଚ୍ଛାସେବୀ ବାହିନୀ (Jewish Anti-Hitler Volunteer Army)ରେ ଯୋଗ ଦେଇଥିଲୁ । ୧୯୪୩ ଫେବୃଆରୀରେ ପ୍ରଥମ ଇହୁଦୀ ବିରୋଧୀ ଚଢାଉ(aktzia)ରେ ଜର୍ମାନ୍‌ମାନେ ସୋନିଆକୁ ଧରିଥିଲେ । ମନେହୁଏ ତାକୁ ସିଧା ଆଉସ୍‌ଭିଡ୍‌ଜ୍ ପଠାଇ ଦେଇଥିଲେ । ସେ ପ୍ରାୟ ବର୍ଷେ ହେବ ଏଠାରେ ରହି ସାରିଥିଲା । ସେ ଶିବିର ଏବଂ ତାହାର ଅନ୍ତେବାସୀଙ୍କୁ ଭଲ ଭାବରେ ଜାଣିଥିଲା । ସେ ଏହି ନର୍କପୁରର ଜୀବନ ସହ ଅଭ୍ୟସ୍ତ ହୋଇ ଯାଇଥିଲା । ସୋନିଆ ମଥାରେ ବେଶ୍ ଚୂଳ ଥିଲା । ସେ ଗରମ ପୋଷାକ ଓ ବୁଟ୍ ପିନ୍ଧିଥିଲା । ଆମ ତୁଳନାରେ ସେ ଭଲ ଖାଦ୍ୟ ପେୟ ପାଉଥିବା ଭଳି ଦିଶୁଥିଲା ।

''ତୁମେ ନିଜକୁ ଏତେ କଷ୍ଟ ଦିଅନା ।'' ମୋ କାନରେ କହିଦେଲା, ''ଆମେ ଆସନ୍ତା କାଲି ତୁମକୁ ଏଠାରୁ ନେଇଯିବା ପାଇଁ ବ୍ୟବସ୍ଥା କରିଦେବୁ । ତୁମ ପାଇଁ ଗୋଟେ ସ୍ୱେଟର୍ ଓ ବୁଟ୍'' ଯୋଗାଡ଼ କରି ଦେବୁ । ତୁମ ପାଇଁ ଖାଦ୍ୟ ମଧ୍ୟ ମୁଁ ଆଣିବି । ମୁଁ ଏଠାକୁ କାହିଁକି ଆସିଛି ତୁମେ ଜାଣନା । ଶିବିରରେ ରହୁଥିବା ଆମର ବନ୍ଧୁମାନଙ୍କୁ ଠାବ କରିବା ଓ ସେମାନଙ୍କୁ ଯଥାଶକ୍ତି ସାହାଯ୍ୟ କରିବା । ଏଠାରେ ଆମ ଲୋକ ବହୁତ ଅଛନ୍ତି । ଆନ୍ତର୍ଜାତିକ ହିଟ୍‌ଲର ବିରୋଧୀ ସଙ୍ଗଠନ । ଏହି ନର୍କପୁରୀରେ ମଧ୍ୟ ଆମେ ସମ୍ବଳଶୂନ୍ୟ ନୋହୁଁ ।''

ସୋନିଆ ଆମଠାରୁ ଦୂରରେ ଅବସ୍ଥିତ ବନ୍ଦୀ ଶିବିରରେ ରହୁଥିବାରୁ ତରତର ହୋଇ ଚାଲିଗଲା । କିନ୍ତୁ ଅଳ୍ପ ସମୟ ମଧ୍ୟରେ ପୁଣି ଫେରିଆସିଲା, ଏବଂ ସାଙ୍ଗରେ ଆଣିଥିଲା ଗୋଟେ ସ୍ୱେଟର୍, ହଳେ ବୁଟ୍ ଓ ରୁଟି । ସହକାରୀ ୱାର୍ଡେନ୍ ବୋଧହୁଏ ତାହା ଲକ୍ଷ୍ୟ କରିଥିଲା । ସେ ମୋ ପାଖକୁ ଚାଲି ଆସିଲା ଏବଂ ଅଯାଚିତ ଭାବେ କହିଲା, ''ତୁମେ ମୋ' ପାଖରେ ରହିବ କି ?'' ଅର୍ଥାତ୍ ମୁଁ ଜଣେ ମଣିଷ ଭାବରେ ଗଣା ହେଲି; ମୋର କେହି ହେଲେ ରକ୍ଷାକର୍ତ୍ତା ଅଛନ୍ତି । ତେଣୁ, ମୋ ସହ ସମ୍ପର୍କ ରଖିଲେ ମନ୍ଦ ହେବ ନାହିଁ ବୋଲି ୱାର୍ଡେନ୍-ସହକାରୀ ମନେକଲା । ପୁଣି ପଚାରିଲା, ''ଖାଇଲଣି ?''

ଭଗବାନ୍ ! ସବୁ କେତେ ହୀନ ଓ ଜଘନ୍ୟ ଥିଲା ଆଜିଯାଏ । ସୋନିଆ ମଧ୍ୟ ଅଧିକ ସମୟ ରହିଲା ନାହିଁ । କାରଣ ଗେଟ୍ ବନ୍ଦ ହେବା ପୂର୍ବରୁ ତାକୁ ଫେରିଯିବାକୁ ହେଲା । ଯିବା ପୂର୍ବରୁ କହିଲା ''ଆସନ୍ତା କାଲି ସବୁ ବଦଳି ଯିବ । ତୁମେ ଶାନ୍ତ ରୁହ ଧୈର୍ଯ୍ୟ ଧର । ତୁମର ବହୁ ଆତ୍ମୀୟ ଓ ପରିଚିତ ଏଠାରେ ଅଛନ୍ତି, ଆସନ୍ତା କାଲି ସମସ୍ତଙ୍କୁ ଭେଟିବ ।''

ମୋ 'ମୃତ୍ୟୁ' ପାଇଁ ଅପେକ୍ଷା କରିଥିବା ସେ କନା ଦଉଡ଼ିକୁ ମୁଁ ବିଛଣା ତଳେ

ଲୁଚାଇ ଦେଲି । ମନରେ ଆଶା ଭରି ଦେଇ ନିଦରେ ଶୋଇଗଲି । ଏତେ ଭଲ ଲାଗୁଥିଲା ଯେପରିକି ହୃଦୟରେ ଶୂନ୍ୟତା ଭରିଗଲା ।

"ଆସନ୍ତା କାଲି ସବୁ ବଦଳିଯିବ ।" ସେହି ଶବ୍ଦଗୁଡ଼ିକ କୌଣସି ମହାପୁରୁଷଙ୍କ ଭବିଷ୍ୟତ ବାଣୀ ଭଳି ଶୁଭୁଥିଲା । ସବୁ ଯେମିତି କ'ଣ ବଦଳିଯିବ, ତାହା ନିଜେ ସୋନିଆ କଳ୍ପନା କରିପାରି ନଥିଲା । ହାଜିରା ପରେ ଶିବିର ଦ୍ୱାର ବନ୍ଦ ହୋଇଗଲେ କେହି ବ୍ଲକ୍ ବାହାରକୁ ଯିବାର ଅନୁମତି ନଥିଲା । ବନ୍ଦୀ ଶିବିର ଭାଷାରେ ତାହାକୁ 'ତାଲାବନ୍ଦ' କୁହାଯାଏ । କେହି ଯେପରି ସେଠାରୁ ଖସି ନ ଯାଆନ୍ତି । ତାହା ଦେଖିବାକୁ ୱାର୍ଡେନ୍ ଗେଟ୍ ପାଖରେ ଛିଡ଼ା ହୋଇ ରହିଲା । ତା' ସହକାରୀ ଆମମାନଙ୍କୁ ବେଡ୍‌ରୁ ଗୋଡ଼େଇ ନେଇ ଦୁଇ ଦୁଇ ଜଣିଆ ଲାଇନ୍‌ରେ ଛିଡ଼ା କରିଦେଲା ।

"ବଛାବଛି" ଶବ୍ଦଟି ତୁଣ୍ଡରୁ ତୁଣ୍ଡକୁ ଚାଲି ଯାଉଥାଏ । ସେମାନେ ଆମକୁ ଅନେଇବେ, ସବୁ ଦିଗରୁ ପରୀକ୍ଷା କରିବେ । କେତେକଙ୍କୁ ବଛାଯିବ– 'ତୁ ବଞ୍ଚିବା ପାଇଁ' ଓ 'ତୁ ମରିବା ପାଇଁ' । ଭୟଙ୍କର 'ବଛାବଛି' ଶବ୍ଦଟି ବାରମ୍ବାର ମନେ ମନେ ଉଚ୍ଚାରିତ ହୋଉଥାଏ । କିନ୍ତୁ କେହି ଚିତ୍କାର କରୁ ନଥିଲେ । କେହି କାନ୍ଦୁ ନଥିଲେ; ଏପରିକି କେହି ଆତ୍ମରକ୍ଷା ପାଇଁ ଚେଷ୍ଟା ବି କରୁ ନଥିଲେ । କ'ଣ ଗୋଟାଏ ଆମକୁ ଏଭଳି ଚୁପ୍‌ଚାପ୍ କରିଦେଇଥିଲା ? ଯେଉଁ 'ମୃତ୍ୟୁ' ଆମ ପାଇଁ ଭୟାବହ ହେବାକୁ ଯାଉଥିଲା, ତାହାରି ଆଶଙ୍କାରେ ଆମର ଏ ନୀରବତା ? ସମ୍ଭବତଃ ମୃତ୍ୟୁର ବରଫ ଶୀତଳ ନିଃଶ୍ୱାସ, ପ୍ରତିବାଦ କରିବାର ସମସ୍ତ ଶକ୍ତି ମଣିଷଠୁଁ କାଢ଼ି ନିଏ । ହୁଏତ ଏହିଭଳି ଭୟାବହ ଶିବିରରୂପୀ ପୃଥିବୀକୁ ଯେଉଁ ମଣିଷମାନେ ଗଢ଼ିଛନ୍ତି ସେମାନଙ୍କ ଗହଣରେ ରହି ସେମାନଙ୍କ ବିରୁଦ୍ଧରେ ଲଢ଼ିବାକୁ କେହି ଇଚ୍ଛା କରନ୍ତିନି ।

ମୁଁ ଜାଣିଥିଲି 'ବଛାବଛି' ମୋ ପାଇଁ ମୃତ୍ୟୁ । ତଥାପି ମୁଁ ଶାନ୍ତ ଥିଲି ଏବଂ ମୋର ଚତୁଃପାର୍ଶ୍ୱରେ ଘଟିଯାଉଥିବା ଘଟଣାବଳୀକୁ ବାସ୍ତବତାର ଦୃଷ୍ଟି ଘେନି ନିରୀକ୍ଷଣ କରୁଥିଲି । ଆମମାନଙ୍କ ମହାଯାତ୍ରାକୁ ଶୃଙ୍ଖଳିତ ଭାବେ ସମ୍ପନ୍ନ କରିବାକୁ ଆପ୍ରାଣ ଉଦ୍ୟମ କରୁଥିବା ୱାର୍ଡେନ୍-ସହକାରୀର ଚିତ୍କାର ମଧ୍ୟ ବହୁ ଦୂରରୁ ଭାସି ଆସୁଥିବା ଶବ୍ଦ ଭଳି ମୋତେ ଲାଗୁଥିଲା । ଶେଷରେ ଆମମାନଙ୍କୁ ଗାଧୁଆ ଘରକୁ ନିଆଗଲା । ୱାର୍ଡେନ୍-ସହକାରୀମାନେ ହାତ ଧରାଧରି ହୋଇ ଏକ ବିଶାଳ ବୃତ୍ତ ସୃଷ୍ଟି କରିଥିଲେ । ଆମମାନଙ୍କୁ ସେହି ବୃତ୍ତ ଭିତରକୁ ଯିବାକୁ ପଡ଼ିଲା ଯେପରିକି କେହି ଜଣେ ହେଲେ ଖସି ନଯାଆନ୍ତି । କିଛି ସମୟ ପରେ ୱାର୍ଡେନ୍ ଆସି ଆମକୁ ଗଣିବାକୁ ଲାଗିଲା । କିନ୍ତୁ ଯେତେ ପ୍ରକାର ଗଣିଲେ ବି ପ୍ରତିଥର ଜଣେ ଲୋକ କମ୍ ହେଉଥିଲା । ହଠାତ୍ ଦୁଇଜଣ ସହକାରୀ ବ୍ଲକ୍ ଆଡ଼କୁ ଦୌଡ଼ିଲେ ଏବଂ କିଛି ସମୟ ପରେ ଧରି ଆଣିଲେ ଗୋଟିଏ ଅଶି ବର୍ଷର ବୁଢ଼ୀକୁ

ଯିଏ କି ସେଠାରେ କ'ଣ ଘଟୁଛି ବା ତାକୁ କ'ଣ କରିବାକୁ ହେବ, ତାହା କିଛି ବୁଝି ପାରୁନଥିଲା । ହଜିଥିବା 'ମେଣ୍ଢା'କୁ ଧରି ଆଣିଥିବାରୁ ସହକାରୀ ଦୁଇଜଣଙ୍କର ଆନନ୍ଦର ସୀମା ନଥିଲା । କାର୍ଯ୍ୟ ନିୟମାନୁସାରେ ଠିକ୍ ଠିକ୍ ଚାଲୁଥିବାରୁ ସେମାନେ ଭାରି ତୃପ୍ତ ଥିଲେ । ଦ୍ୱିଧାହୀନ ଅବିବେକୀ ଭଳି ସେମାନେ ସେହି ଅସହାୟ ବୃଦ୍ଧାର ଦୁଇବାହୁ ଧରି ଘୋଷାଡ଼ି ନେବାବେଳେ ତାହାର ମସ୍ତକଟି ଝୁଲି ରହିଥିଲା, ଯେପରିକି ଏକ କୃତ୍ରିମ ମସ୍ତକକୁ ସେମାନେ ମୃତ୍ୟୁ ଗହ୍ୱରକୁ ନିକ୍ଷେପ କରୁଥିଲେ ।

ପ୍ରଥମେ କେତେ ଯୋଡ଼ା ବନ୍ଦିନୀକୁ ସ୍ନାନାଗାରକୁ ନିଆଗଲା ସେଠାରେ ପ୍ରତ୍ୟେକକୁ ଉଲଗ୍ନ କରାଯାଉଥିଲା । ତା' ପରେ ପ୍ରତି ମହିଳାକୁ କ୍ୟାମ୍ପର କମାଣ୍ଡାଣ୍ଟ ଓ କ୍ୟାମ୍ପ ଡାକ୍ତରର ଟେବୁଲ୍ ପାଖକୁ ନେବାକୁ ହେଉଥିଲା । ରକ୍ତ ଶୋଷକ ଡାକ୍ତର ମେଞ୍ଜାଲ ଥିଲା ସମସ୍ତଙ୍କ ପୁରୋଭାଗରେ । ସେଠାରେ ଦଣ୍ଡିତ ବ୍ୟକ୍ତିର ନାମ ଲେଖା ଯାଉଥିଲା ଏବଂ ଡାକ୍ତର ତାକୁ ଭଲ ଭାବରେ ନିରୀକ୍ଷଣ କରୁଥିଲେ । ତା' ପରେ ଦଣ୍ଡିତମାନଙ୍କୁ ଅନ୍ୟ ଏକ ଦ୍ୱାର ବାଟେ ସ୍ନାନାଗାରର ଅପର ପାର୍ଶ୍ୱକୁ ନିଆଯାଉଥିଲା । ସେଠାରେ କେହି ଜଗୁଆଳୀ ନଥିଲେ । ତା' ଭିତରେ ପ୍ରବେଶ କରିବା ସଙ୍ଗେ ସଙ୍ଗେ ଦ୍ୱାରର ସିକୁଳି ଆପଣା ଛାଏଁ ପଡ଼ି ଯାଉଥିଲା ।

ସ୍ନାନାଗାରକୁ ଯାଉଥିବା ସେହି ଶୋଭାଯାତ୍ରାକୁ ଦେଖି ବନ୍ଦିନୀମାନେ ଉତ୍କଣ୍ଠିତ ଓ ଆତଙ୍କିତ ହୋଇ ଉଠୁଥିଲେ କେତେକ ସେହିଁ ମୃତ୍ୟୁ ବୃତ୍ତକୁ ଭେଦ କରି ପଳାଇବା ପାଇଁ ଉଦ୍ୟମ କରୁଥିଲେ । ଜଗୁଆଳିମାନେ ଚିତ୍କାର କରି ଉଠୁଥିଲେ ଏବଂ ପଳାୟମାନ ବନ୍ଦିନୀମାନଙ୍କୁ ନିର୍ମମ ଭାବରେ ପିଟୁଥିଲେ । ମୋ ପାଳି କେତେବେଳେ ପଡ଼ିବ ତାକୁ ମୁଁ ଅପେକ୍ଷା କରି ଲାଇନ୍‌ରେ ଛିଡ଼ା ହୋଇଥିଲି । ମୋ ଆଖି ଆଗରେ ଯେଉଁ ଲୋମ ହର୍ଷଣକାରୀ ଘଟଣା ଘଟି ଯାଉଥିଲା ତାହା ଯେ ବାସ୍ତବ ସେକଥା ମୁଁ ବିଶ୍ୱାସ କରିପାରୁ ନଥିଲି । ହଠାତ୍ ଦେଖିଲି ଅନତି ଦୂରରେ ଥୁଆ ହୋଇଥିବା ଗୋଟିଏ ବଡ଼ ବାକ୍ସ ପଛରେ ସେହି ଗ୍ରୀକ୍ ବାଳିକାଟି ଲୁଚିବାକୁ ଚେଷ୍ଟା କରୁଥିଲା । ସେ ମରିବାକୁ ଚାହୁ ନଥିଲା । କିନ୍ତୁ ସେ ଭଲ ଭାବରେ ଜାଣିଥିଲା ଯେ ଜର୍ମାନ୍ ଡାକ୍ତର ଯଦି ତା'ର କୁଣ୍ଡିଆକୁ ଦେଖେ ତେବେ ତାକୁ ସଙ୍ଗେ ସଙ୍ଗେ ଗ୍ୟାସ୍ ଚ୍ୟାମ୍ବରକୁ ଠେଲି ଦେବ, ଯଦିଓ ଏକଥା ସତ ଯେ ସେ କୁଣ୍ଡିଆ ସାମାନ୍ୟ ଚିକିତ୍ସାରେ ଭଲ ହୋଇଯିବ । ମୁଁ ତା ଆଡ଼କୁ ଚାହିଁ ପାରିଲି ନାହିଁ । ମୁଁ ଜାଣିଥିଲି ଯେ ସେମାନେ ନିଶ୍ଚୟ ତାକୁ ଧରିବେ ଏବଂ ସଙ୍ଗେ ସଙ୍ଗେ ଗ୍ୟାସ୍‌କୁ ପଠାଇଦେବେ । ହଁ, ତାହାହିଁ ଘଟିଲା, ସେମାନେ ତାକୁ ପାଇଗଲେ ଏବଂ ସଙ୍ଗେ ସଙ୍ଗେ ସେହି ସୁନ୍ଦର ବାଳିକାଟିକୁ ତା'ର ଲୁଚିବା ସ୍ଥାନରୁ ଘୋଷାଡ଼ି ଆଣି ସ୍ନାନାଗାରକୁ ପଠାଇଦେଲେ । କିଛି ସମୟ ପରେ ମୁଁ ଦେଖିଲି ଯେ ୨ୟ ମହଲାରେ ଝରକା ଖୋଲିଗଲା

ଏବଂ ସେହି ଗ୍ରୀକ୍ ବାଳିକାଟି ଝରକା ବାଟେ ତଳକୁ ଲମ୍ଫ ପ୍ରଦାନ କଲା । ତାହାର ଉଲଗ୍ନ ଶରୀର ଉପରେ କିଏ ଜଣେ କମ୍ବଳଟିଏ ଫୋପାଡ଼ି ଦେଲା । ବାଳିକାଟି ଠିଆ ହୋଇପଡ଼ି ଦୌଡ଼ିବାକୁ ଲାଗିଲା । କିନ୍ତୁ ସହକାରୀ ଜଣକ ତାକୁ ଧରି ପକାଇଲା । ସେ ତାକୁ ପିଟୁଥାଏ ଏବଂ ଗର୍ଜନ କରି କହୁଥାଏ, ''ରେ ବଦମାସ୍, ତୁ ଭାବୁଛୁ, ତୋ' ପାଇଁ ମୁଁ ଗ୍ୟାସ୍ ଘରେ ପଶିବି ? ସେ ତାକୁ ଶେଷ ବିଚାର ପାଇଁ ପୁନର୍ବାର ସ୍ନାନାଗାରକୁ ଠେଲି ଦେଲା ।

■■■

-୬-

## ମହାନିର୍ବାଣ !

ମୁଁ ସେମିତି ଲାଇନ୍‌ରେ ଛିଡ଼ା ହୋଇଥାଏ । ହଠାତ୍ ମୋ ଆଗରେ ଗୋଟିଏ ତରୁଣୀ ପହଞ୍ଚିଗଲା ଦେହରେ ଖେଳୁଆଡ଼ର ପୋଷାକ, ମସ୍ତକରେ ହୁଡ୍ । ଆମ ଲାଇନ୍ ପାଖେ ପାଖେ ଚାଲି ଯାଉଥିବା ବେଳେ ଚୁପ୍ ଚୁପ୍ ପଚାରିଲା, ''ସୋନିଆର ବନ୍ଧୁ କିଏ ?'' ଏକଥା ଶୁଣି ମୋ ଛାତିଟା ଗର୍ବରେ ଯେମିତି ଫୁଲି ଉଠିଲା । ଭାବିଲି ଏ କ'ଣ ମୋତେ ଖୋଜୁଛି କି ? କହିଲି, ''ମୁଁ ମୁଁ'', ଅବଶ୍ୟ ସେ ପର୍ଯ୍ୟନ୍ତ ନିଶ୍ଚିତ ଭାବରେ ଜାଣି ନଥିଲି ଯେ ସେ ମୋତେ ଖୋଜୁଛି ବୋଲି ।

ସେ ମୋତେ ଚାହିଁଲା, ମୋତେ ଲାଗିଲା ଯେପରିକି ଗୋଟାଏ ଦେଖାରେ ମୋତେ ଚିହ୍ନି ଦେଇଛି । ଆଉସ୍‌ଭିତ୍‌ଜ୍‌ରେ ସେୟା ଚଳେ । ପରସ୍ପରକୁ ଥରେ ଚାହିଁ ଦେଲେ ଯେମିତି ସର୍ବାଙ୍ଗ ଦେଖା ହୋଇଯାଏ ।

''ମୋ ସାଙ୍ଗରେ ଚାଲି ଆସ'', ସେ ଚୁପ୍ କରି କହିଦେଲା । ମୁଁ ପଚାରିଲି, ''କିନ୍ତୁ କେମିତି ? ମୋର ସେ ଜଗୁଆଳିକୁ ଭାରି ଡର, ତାର ଯେଉଁ ମାଡ !''

''କିଛି ପଚାରନା ଖାଲି ଚାଲିଆସ'', ସେ ପୁଣି କହିଲା । ମୁଁ ଲାଇନ୍‌ରୁ ବାହାରକୁ ଗଲି । ଜଗୁଆଳି ମଧ୍ୟ ବାଟ ଛାଡ଼ିଦେଲା । ମୃତ୍ୟୁ ଦଣ୍ଡାଦିଷ୍ଟ ବନ୍ଦିନୀମାନଙ୍କୁ ପରିବେଷ୍ଟନ କରିଥିବା ବୃତ୍ତକୁ ମଧ୍ୟ ମୁଁ ନିର୍ବିଘ୍ନରେ ଅତିକ୍ରମ କରିଗଲି । ଇଭା ନାମ୍ନୀ ସେହି ଝିଅଟି ମୋତେ ଗୋଟାଏ ସଙ୍କୀର୍ଣ୍ଣ ବାଟେ ନେଇଗଲା ଓ ଗାଧୁଆ ଘରର ପୂରା ପଛପଟରେ ପହଞ୍ଚାଇ ଦେଲା । ସେଠାରେ ''ବଛା ବଛି''ରୁ ବର୍ତ୍ତିଯାଇଥିବା ଅନ୍ୟ କେତେକ ବନ୍ଦିନୀ ମଧ୍ୟ ଅପେକ୍ଷା କରିଥିଲେ ।

ଆମେମାନେ ସେଠାରେ ବହୁ ସମୟ ଧରି ଅପେକ୍ଷା କଲୁ । ଅତ୍ୟଧିକ ଥଣ୍ଡା ଓ କ୍ଳାନ୍ତି ହେତୁ ଅଧିକ ସମୟ ଠିଆ ହୋଇ ରହିବା କଷ୍ଟକର ହେଉଥିଲା । ତେଣୁ ବାରମ୍ବାର ଏ ପାଦ ସେ ପାଦ ଉପରେ ଛିଡ଼ା ହେବାକୁ ପଡୁଥିଲା । ଯେଉଁମାନେ ସେଥର ଗ୍ୟାସ୍‌କୁ ଯାଉ ନଥିଲେ

ସେହିମାନଙ୍କୁ ହିଁ ଅପେକ୍ଷା କରିବାକୁ ପଡୁଥିଲା । ବଛାବଛି ଶେଷ ହେବା ପରେ ଆମେ ବ୍ଲକ୍‌କୁ ଫେରି ଆସିଲୁ, ଚୁପ୍‌ଚାପ୍ ସମସ୍ତେ ବିଛଣାରେ ପଡ଼ି ରହିଲେ । କେହି କିଛି କରିବା କିମ୍ବା କହିବାର ମାନସିକତାରେ ନ ଥିଲେ । ଏପରିକି ୱାର୍ଡେନ୍-ସହକାରୀ ମଧ୍ୟ ନୀରବ ନିସ୍ପନ୍ଦ ଓ ହତାଶାରେ ଚୁପ୍‌ଚାପ୍ ବସିଥିଲା । ସେହିପରି ଯେଉଁମାନେ ଆଉସ୍‌ଭିଜ୍‌ରେ ମୃତ୍ୟୁ ଏବଂ ଅପରାଧ ସହ ସୁପରିଚିତ ସେମାନେ ମଧ୍ୟ ବଛାବଛି ପ୍ରକ୍ରିୟାରୁ ନିଜ ନିଜ ଜୀବନର ଅନିଶ୍ଚିତତା ସମ୍ପର୍କରେ ଉଦ୍‌ବିଗ୍ନ ହୋଇ ପଡ଼ିଥିଲେ ।

ପ୍ରଥମ 'ବଛାବଛି' ପରେ ଆମ ବ୍ଲକଟି ବଡ଼ ଭୟଙ୍କର ଦିଶୁଥିଲା । ସମସ୍ତେ ବ୍ଲକ୍‌କୁ ଫେରି ଆସିଥିଲେ । ଏପରିକି ଯେଉଁମାନେ 'ଗ୍ୟାସ୍' ପାଇଁ ବଛା ହୋଇଥିଲେ ସେମାନେ ବି । 'ଗ୍ୟାସ୍' କିଛିଦିନ ପାଇଁ ବିଳମ୍ବିତ ହୋଇଥିଲା । ଗ୍ରୀକ୍ ବାଳିକାଟି ଦୋତାଲାରୁ ଡେଇଁବା ବେଳେ କ୍ଷତ ବିକ୍ଷତ ହୋଇଥିବାରୁ ସେ ମଧ୍ୟ ତା' ଶଯ୍ୟାରେ ଶୋଇ ରହିଥିଲା । ସେ ମଧ୍ୟ 'ଗ୍ୟାସ୍' ପାଇଁ ତାଲିକାଭୁକ୍ତ ହୋଇଥିଲା । ଦେହରେ କେତେଟା କୁଣ୍ଡିଆ ହୋଇଥିବାରୁ ଏଡ଼େ ସୁନ୍ଦର ଝିଅଟା 'ଜୀବନ'ରୁ ବଞ୍ଚିତ ହେଉଥିଲା । ମୋ ପାଖାପାଖି ଶଯ୍ୟାରେ ଥିଲେ ମଧ୍ୟ ମୁଁ ତା ସହ ପଦେ ହେଲେ କଥା ହୋଇପାରି ନଥିଲି । ମୁଁ ବଞ୍ଚିବାକୁ ଯାଉଥିବାରୁ ବଡ଼ ସଙ୍କୋଚ ବୋଧ କରୁଥିଲି ।

ବିୟଲଷ୍ଟୋକ୍ ବନ୍ଦୀଶାଳାରୁ ଆସିଥିବା ଅନ୍ୟ କେତେକ ମହିଳା ମଧ୍ୟ ଆମ ବ୍ଲକ୍‌ରେ ରହୁଥିଲେ । ସେମାନଙ୍କ ଭିତରେ ଥିଲେ ସୋଢେକୋ ଓ ତାର ଦୁଇଟି ଝିଅ । ସୋଢେକୋଙ୍କୁ 'ଗ୍ୟାସ୍' ପାଇଁ ତାଲିକାଭୁକ୍ତ କରାଯାଇଥିଲା । ପ୍ରୌଢ଼ା ମହିଳା ଜଣକ ବେଶ୍ ବୁଦ୍ଧିମତୀ ଏବଂ କାର୍ଯ୍ୟଦକ୍ଷ ଥିଲେ । ଯୁଦ୍ଧ ପୂର୍ବରୁ ସେ ଏକ କ୍ଷୁଦ୍ର ସହରରେ ଜଣେ ବଣିକ ଥିଲେ । ସେ ବେଶ୍ ସଙ୍ଗତି ସମ୍ପନ୍ନା ଥିଲେ ଏବଂ ସୁନାର ଶକ୍ତି ଉପରେ ତାଙ୍କର ଅଗାଧ ବିଶ୍ୱାସ ଥିଲା । ମୋର ମନେ ପଡୁଛି ବିୟଲଷ୍ଟୋକ୍ ବନ୍ଦୀଶାଳାରେ ମଧ୍ୟ ସେ ତାଙ୍କ ଝିଅ ଓ ନାତି ନାତୁଣୀଙ୍କ ପାଇଁ ବାହାରୁ ରୁଟି ଓ ମାଂସ ମଗାଇ ପାରୁଥିଲେ । ସେ ବନ୍ଦୀଶାଳା ଭିତରକୁ କିଛି ସୁନା ମଧ୍ୟ ସାଙ୍ଗରେ ନେଇ ଯାଉଥିଲେ । ଜଗୁଆଳିମାନଙ୍କୁ ଲାଞ୍ଚ ଦେଇ ଆବଶ୍ୟକୀୟ ଖାଦ୍ୟପଦାର୍ଥ ସେମାନଙ୍କ ହାତରେ ଆଣୁଥିଲେ । କିନ୍ତୁ ସେ ସୁନା ତାଙ୍କ ନାତି ନାତୁଣୀ ଆଠବର୍ଷ ବୟସର ନୁନ୍‌କୋ ଓ ତା' ଦୁଇଟି ଭାଇର ଜୀବନକୁ ରକ୍ଷା କରିପାରି ନଥିଲା । ଜର୍ମାନ୍‌ମାନେ ସେମାନଙ୍କୁ 'ଗ୍ୟାସ'କୁ ପଠାଇ ଦେଇଥିଲେ । ସ୍ୱୟଂ ସୋଢେକୋ ମଧ୍ୟ 'ଗ୍ୟାସ' ପାଇଁ ତାଲିକାଭୁକ୍ତ ହୋଇଥିଲେ । ସେ ବଞ୍ଚିଥିଲେ ମଧ୍ୟ ତାଙ୍କ ପାଇଁ ତାଙ୍କ ପିଲାମାନେ କାନ୍ଦି କାନ୍ଦି ଅସ୍ଥିର ହେଉଥିଲେ । ସେ ତିନିଜଣ କାନ୍ଦି କାନ୍ଦି ଗଣ୍ଡି ପଡ଼ି ଯାଆନ୍ତି, ଏବଂ ମଝିରେ ମଝିରେ ମା' ଦୁଇଟି ସନ୍ତାନକୁ ବୁଝାଏ ଏବଂ ଧୈର୍ଯ୍ୟ ଧରିବାକୁ କହେ ।

କାହିଁକି କେଜାଣି ସୋଜେକୋ ହଠାତ୍ ଉଠିପଡ଼ି ମୋ' ନିକଟକୁ ଚାଲି ଆସିଲେ । ମୁଁ ତାଙ୍କ ଆଡ଼କୁ ଅନେଇ ପାରୁ ନଥିଲି, କାରଣ ତାଙ୍କର ତୀକ୍ଷ୍ଣ ନାସିକା ଓ ସୁନ୍ଦର ମୁଖଶ୍ରୀ ଆସନ୍ନ ମୃତ୍ୟୁ ଭୟରେ ଅତ୍ୟନ୍ତ ମଳିନ ଦିଶୁଥିଲା । ସେ ଜଣେ ମୃତ୍ୟୁ ଦଣ୍ଡାଦିଷ୍ଟ ବ୍ୟକ୍ତି, କ'ଣ ବା ତାଙ୍କର ଅପରାଧ ! କାହିଁକି ବା ତାଙ୍କୁ ଏକ ଅଭିଶପ୍ତ ମୂଷା ବେଙ୍ଗ ଭଳି ମରାଯାଉଛି ? ସେହି ମୁହୂର୍ତ୍ତରେ ମୁଁ ଭାବୁଥିଲି ତାଙ୍କୁ ଯଦି ସଙ୍ଗେ ସଙ୍ଗେ ଗ୍ୟାସ୍‌କୁ ନିଆଯାଆନ୍ତା ତେବେ ତାଙ୍କ ପ୍ରତି ହୁଏତ ଅଧିକ ନ୍ୟାୟ ପ୍ରଦର୍ଶନ କରାଯାଇ ପାରନ୍ତା ! ମୃତ୍ୟୁ ପାଇଁ ଅପେକ୍ଷା କରିବା କେତେ ହୃଦୟ ବିଦାରକ । ତାହା ମୃତ୍ୟୁ ଅପେକ୍ଷା ଅଧିକ ଯନ୍ତ୍ରଣା ଦାୟକ । ସେହି ଜୀବନ୍ତ ଶବ ସଦୃଶ ପ୍ରୌଢ଼ା ମହିଳାଟି ମୋ' ପାଖରେ ବସିଲେ ।

''ମୁଁ ଜାଣେନା ସେମାନେ କେବେ ମୋତେ ଗ୍ୟାସ୍‌କୁ ନେବେ ।'' ଏକ ନିରୀହ ମେଷ ଶାବକ ଭଳି କ୍ରନ୍ଦନରତା ସୋଜେକୋ ମୋତେ କହିଲେ । ''ମୋର ସମସ୍ତ ଦୋଷ ମାର୍ଜନା କରିବେ ।'' ବିୟଲଷ୍ଟୋକ୍ ବନ୍ଦୀଶାଳାରେ ଆମେ ଗୋଟିଏ ରୁମ୍‌ରେ ରହୁଥିଲୁ । କେବେହେଲେ ମୋର ତାଙ୍କ ସହ ମତଭେଦ ହୋଇ ନଥିଲା । ଯାହାକୁ ନାତ୍‌ସୀମାନେ ସ୍ୱାଭାବିକ ମୃତ୍ୟୁ ପାଇଁ ସୁଯୋଗ ଦେଉ ନାହାନ୍ତି, ସେ ହତଭାଗିନୀ ନାରୀ ମୋ' ନିକଟରେ କି ଅପରାଧ ବା କରିପାରିବ ? ମୁଁ ମନେ ପକାଇଲି କିପରି ଥରେ ବିୟଲଷ୍ଟୋକ୍ ବନ୍ଦୀଶାଳାରେ ନିଜ ବେକକୁ ଦୁଇ ହାତରେ ଚିପିଧରି ପାଚେରୀ ପାଖରେ ଲାଇନ୍ ଦେବାକୁ ନାତ୍‌ସୀ ପୋଲିସ୍ (ଗେଷ୍ଟାପୋ) ଆମକୁ ନିର୍ଦ୍ଦେଶ ଦେଇଥିଲେ । ସେଦିନ ଆମମାନଙ୍କର ମୃତ୍ୟୁ ସୁନିଶ୍ଚିତ ବୋଲି ଆମେ ଜାଣି ସାରିଥିଲୁ । ସେ ସମୟରେ ମଧ୍ୟ ମିସେସ୍ ସୋଜେକୋ ଆମ ସମସ୍ତଙ୍କୁ କହିଥିଲେ ''ମୋ ଅଜ୍ଞାତରେ ମୁଁ ଯଦି କୌଣସି ଅପରାଧ କରିଥାଏ ତେବେ ମୋତେ ସମସ୍ତେ କ୍ଷମାଦେବ ।'' ମିସେସ୍ ସୋଜେକୋ ପରଜନ୍ମରେ ଦୃଢ଼ ବିଶ୍ୱାସ କରୁଥିଲେ ।

ଏବଂ ମୃତ୍ୟୁ ପରେ ସ୍ୱର୍ଗକୁ ଯିବାବେଳେ ତାଙ୍କ ମୁଣ୍ଡ ଉପରେ ଯେପରି କୌଣସି ପାପ ବୋଝ ନଥାଏ ସେ ବିଷୟରେ ସେ ସୁନିଶ୍ଚିତ ହେବାକୁ ଚାହୁଁଥିଲେ । ମୁଁ ବା କ'ଣ ତାଙ୍କୁ କହିଥାନ୍ତି ? ତାଙ୍କୁ ଆଶ୍ୱାସନା ଦେବା ପାଇଁ ମୃତ୍ୟୁଦଣ୍ଡରୁ ଖସିଯିବା ପାଇଁ ଏଠାରେ ସୁଯୋଗ ରହିଛି ବୋଲି କହିଥିଲେ ସେଇଟା ମୋ' ପକ୍ଷରେ ଅତ୍ୟନ୍ତ ଅସାଧୁତା ହୋଇଥାନ୍ତା ଏବଂ ଗୋଟିଏ 'ଶବ' ଭାବରେ କଥା ହୋଇଥିଲେ ତାହା ଅମାନୁଷିକତା ହୋଇଥାନ୍ତା । ବନ୍ଦୀଶାଳାରେ ପ୍ରଥମ ଥର ପାଇଁ ମୋ ଆଖିରୁ ଝର ଝର ଲୁହ ଗଡ଼ି ପଡ଼ିଲା ।

ଶିବିରରେ ଚତୁର୍ଦ୍ଦିଗରୁ ଭାସି ଆସୁଥିବା ଚାପା କ୍ରନ୍ଦନ ଧ୍ୱନି କାହାର ହତାଶ କଣ୍ଠ ଚିତ୍କାରରେ ବାଧାପ୍ରାପ୍ତ ହେଲା । ଉପର ବଙ୍କରରେ ରହୁଥିବା 'ହେଲା' ନାମ୍ନୀ ତରୁଣୀର

ସେ ଚିତ୍କାର । ''ମୋ ନାମ କାହିଁକି ତାଲିକାରେ ଲେଖାଗଲା ?'' ସେ ଜଣେ ଅନିନ୍ଦ୍ୟ ସୁନ୍ଦରୀ ତରୁଣୀ ଥିଲା । ବିୟଲଷ୍ଟୋକ୍ ଘେଟୋରେ ସେ ଗୋଟିଏ ଛୋଟ ଦୋକାନ କରିଥିଲା । ଅଳ୍ପ ପଇସାରେ ତା' ଦୋକାନରୁ ଗୋଟାଏ ରୁଟି ମିଳିଯାଉଥିଲା । ବିୟଲଷ୍ଟୋକ୍‌ରେ ତା'ର ଚାରି ବର୍ଷ ବୟସର ଝିଅକୁ 'ଗ୍ୟାସ୍' କୁ ପଠାଇ ଦିଆଯାଇଥିଲା । ଏବେ ତାକୁ ଗ୍ୟାସ୍ ପାଇଁ ତାଲିକାଭୁକ୍ତ କରାଯାଇଛି । ''ୱାର୍ଡେନ୍ ଏଠାକୁ ଆସୁ ଏବଂ ମୋତେ ସାଙ୍ଗରେ ନେଇ ନାତ୍‌ସୀ ଆତଙ୍କବାଦୀମାନଙ୍କ ପାଖକୁ ଚାଲୁ'', ମିସେସ ହେଲା ଚିତ୍କାର କରି କହୁଥିଲା । ଶିବିରରେ ଥିବା ସର୍ଦ୍ଦାର ତା' ପାଟି ଶୁଣି ତା' ଆଡ଼କୁ ଚାଲିବାକୁ ଆରମ୍ଭ କଲା କିନ୍ତୁ ସେ ପହଞ୍ଚିବା ପୂର୍ବରୁ 'ହେଲା' ତା' ଦେହରୁ ପୋଷାକ ଓହ୍ଲାଇ ଦେଇ ପୂରା ଉଲଗ୍ନ ହୋଇ ସେହି ଉପର ବଙ୍କରରେ ଛିଡ଼ା ହୋଇଗଲା । ସେ ସେଠାରେ ନିଜ ଉଲଗ୍ନ ଦେହକୁ, ବିଶେଷତଃ ନିଜ ବକ୍ଷସ୍ଥଳକୁ ଦେଖାଇ କହିବାକୁ ଲାଗିଲା ''ମୋ ଆଡ଼କୁ ଚାହଁ, ମୋତେ କେମିତି ସେମାନେ ଗ୍ୟାସ୍ ପାଇଁ ତାଲିକାଭୁକ୍ତ କଲେ ?''

''କେଡ଼େ ସୁନ୍ଦରୀ ତରୁଣୀଟିଏ ସେ । ଏଭଳି ତରୁଣୀକୁ ସେମାନେ କାହିଁକି ମାରିଦେବାକୁ ଯାଉଛନ୍ତି ?'' ଏକଥା ଭାବି ମୁଁ ବିସ୍ମିତ ହୋଇଯାଉଥିଲି । ତେବେ ଅସୁନ୍ଦରୀ, ଅସୁସ୍ଥା ଅନାକର୍ଷଣୀୟା ବୃଦ୍ଧାମାନଙ୍କୁ ମାରିଦେବା କ'ଣ ଯୁକ୍ତି ଯୁକ୍ତ ? ମୁହଁ ଓହଳାଇ ବସିଥିବା ସେହି ବୃଦ୍ଧାମାନଙ୍କୁ ମୁଁ ଚାହିଁଲି । ସେମାନଙ୍କ କଥା ଭାବି ମନଟା ଦୁଃଖରେ ଶିହରି ଉଠିଲା ।

ଇଭାର ମୁହଁଟି ମୋ ମନ ଭିତରେ ନାଚିଗଲା । ମୁଁ ସେହି ମୁହୂର୍ତ୍ତରେ ମୋ'ର ନିଜର ମୁକ୍ତି କଥା ଭାବୁ ନଥିଲି । ମୁଁ ମୃତ୍ୟୁ ମୁହଁରୁ ଖସି ଆସିଥିବାରୁ ମନରେ ଯେଉଁ ଆନନ୍ଦ ଆସୁଥିଲା ତାକୁ ଦବେଇ ଦେବାକୁ ଚେଷ୍ଟା କରୁଥିଲି । ଯେଉଁ 'ମୃତ୍ୟୁଫାଶ' ଅନ୍ୟ ସମସ୍ତଙ୍କ ଗଳାକୁ ଚିପି ଦେଉଥିଲା, ତାହା ଇଭା ଗଳାରେ ଖୋଲିଗଲା । ସେ ଇଭା କିଏ ? ସେ କାହିଁକି, ଖୋଜି ଖୋଜି ମୋ ପାଖରେ ପହଞ୍ଚିଗଲା ? ସମ୍ଭବତଃ ସୋନିଆ ନିଜେ ଆସିବା ସମ୍ଭବ ନ ହେବାରୁ ଇଭାକୁ ମୋ' ନିକଟକୁ ପଠାଇଥିଲା । ନିଜ ଜୀବନକୁ ବିପନ୍ନ କରି ସେ ମୋତେ ସ୍ନାନାଗାର ପଛପଟକୁ ନେଇଗଲା । ସେ କାହିଁକି ଏପରି କଲା ? ଅନ୍ୟ ଆଡ଼କୁ ନ ଅନେଇ ମୋ ସମ୍ମୁଖରେ ସେ ଦ୍ରୁତଗତିରେ ଚାଲି ଯାଉଥାଏ । ''ଥରକୁ ଥର ଅନାଅ ନାହିଁ । ଖାଲି ମୋ ପଛେ ପଛେ ଚାଲିଆସ ।'' ଶେଷରେ ଯେତେବେଳେ ମୁଁ ଏକ ନିରାପଦ ସ୍ଥାନରେ ପହଞ୍ଚିଗଲି ଇଭା କେଉଁଆଡ଼େ ଅଦୃଶ୍ୟ ହୋଇଗଲା ।

ମଧ୍ୟାହ୍ନ ଭୋଜନ ପହଞ୍ଚିଗଲା । କିନ୍ତୁ କେହି ଖାଇଲେ ନାହିଁ । ଝୋଳ ବାଲଟି ପାଖରେ ଯେଉଁ ନିତିଦିନିଆ ଝଗଡ଼ା ହୁଏ, ସେଦିନ କିଛି ହେଲା ନାହିଁ । ଖାଦ୍ୟ ନେବା ପାଇଁ ସର୍ଦ୍ଦାର

କେତେ ଜଣକୁ ଡାକିଲା କିନ୍ତୁ କେହି ଟିକେ ବି ହଲିଲେ ନାହିଁ । ଖେଳ ବାଳଟି ସବୁ ସେମିତି ଅକ୍ଷତ ଅବସ୍ଥାରେ ଫେରିଗଲା । ନିଜର ମୃତ୍ୟୁକୁ କିଏବା ସହଜରେ ଗ୍ରହଣ କରିପାରନ୍ତା ? ଯେଉଁ ଦୁନିଆରେ ଆନନ୍ଦ ପାଇଁ ସାମାନ୍ୟ ସ୍ଥାନ ନାହିଁ ସେଠାରେ ବାସ କରିବା ସମ୍ଭବ ନୁହେଁ । ବିଚରା ଜୁଆଙ୍ଗ ଗୁଡ଼ିକ ! ଆମ ଶିବିରର ଅର୍ଦ୍ଧେକ ଅନ୍ତେବାସିନୀ ମୃତ୍ୟୁଦଣ୍ଡାଦେଶ ପ୍ରାପ୍ତ ହୋଇ ସାରିଥିଲେ, କେବେ ସେମାନଙ୍କୁ ବଧଭୂମିକୁ ନିଆଯିବ ? ମୃତ୍ୟୁଦଣ୍ଡ କାର୍ଯ୍ୟକାରୀ ହେବା ପର୍ଯ୍ୟନ୍ତ ସେମାନଙ୍କୁ କେତେ ଦିନ ଅପେକ୍ଷା କରିବାକୁ ପଡ଼ିବ ?

ମୁଁ ମୋ ଚିନ୍ତା ରାଜ୍ୟରେ ଏଭଳି ବୁଡ଼ି ରହିଥିଲି ଯେ ମୋର ନାଁ ଧରି ଜଣେ ବଡ଼ ପାଟିରେ ଡାକୁଥିଲେ ମଧ୍ୟ କିଛି ଜାଣି ପାରୁନଥିଲି । କେହି ଜଣେ ଖୁବ୍ ଉଚ୍ଚ ସ୍ୱରରେ ଡାକୁଥିଲା– ''ସାରା ନୋ ମୂର୍ଖ, ସାରା ନୋ ମୂର୍ଖ'' । ମୁଁ ତା' ଆଡ଼କୁ ଅନେଇଲି, ମୋତେ ଲାଗିଲା ଯେପରିକି ମୁଁ ସ୍ୱପ୍ନ ଦେଖୁଛି । ସେ ଥିଲା ମାଜାଝାଇ କେନାଲ । ସେ ଏଠାକୁ କେଉଁଠୁ ଆସିଲା । ସେ ମୂଳତଃ ଆମ ଲୁବ୍‌ଲିନ୍ ସହରର (ଲେଖିକା ସାରା ନୋମେଆର୍ଗଙ୍କ ନିଜ ସହର) ବାସିନ୍ଦା । ଆମେ ଏକା ସ୍କୁଲ୍‌ରେ ପଢୁଥିଲୁ । ଅବଶ୍ୟ ସେ ଦୁଇବର୍ଷ ଆଗରୁ ସ୍କୁଲ୍‌ରେ ପାଶ୍ କରି ଉଚ୍ଚଶିକ୍ଷା ପାଇଁ ଫ୍ରାନସ୍ ଚାଲି ଯାଇଥିଲା । ଗ୍ରୀଷ୍ମ ଛୁଟିରେ ସେ ଗାଁକୁ ଆସିଲେ ଆମ ଦୁହିଁଙ୍କ ଭିତରେ ବନ୍ଧୁତା ଖୁବ୍ ଜମେ । ମାଝେ ଜଣେ କମ୍ୟୁନିଷ୍ଟ ଥିଲା- ନିଜକୁ କହୁଥିଲା ''ବିପ୍ଳବୀ କମ୍ୟୁନିଷ୍ଟ'' ଅର୍ଥାତ୍ ବେଳେ ବେଳେ ସେ ପାର୍ଟି ଲାଇନ୍ ସହ ଏକମତ ହେଉ ନଥିଲା । ଲୁବ୍‌ଲିନ୍‌ର ପାର୍କରେ ଦୀର୍ଘ ସମୟ ବୁଲାବୁଲି କରିବା ବେଳେ ଆମେ ବିଶ୍ୱର ଯାବତୀୟ ସମସ୍ୟା ସମ୍ପର୍କରେ ଆଲୋଚନା କରୁଥିଲୁ । ୧୯୩୪ରେ ମୁଁ ଜେଲ୍‌ରୁ ଖଲାସ୍ ହେବାପରେ ଯେତେବେଳେ ଲୁବ୍‌ଲିନ୍‌କୁ ଫେରିଲି ସେତେବେଳେ ଜାଣିବାକୁ ପାଇଲି ଯେ ମାଜା ପ୍ୟାରିସ୍‌ରେ ଥିଲା । ତେବେ ସେ ଏଠାକୁ ଆଉସ୍‌ଭିଡ଼୍‌ଜକୁ କେମିତି ଆସିଲା ମୁଁ ବୁଝି ପାରୁ ନଥିଲି ।

ସେ ଅଣନିଃଶ୍ୱାସୀ ହୋଇ ମୋ ପାଖରେ ପହଞ୍ଚିଗଲା । ମୋତେ ପଚାରିଲା, ''କହିଲ ଦେଖି, ତୁମେ କ'ଣ ସ୍ନାନାଗାରରେ ପହଞ୍ଚିଥିଲ ? ସେମାନେ କ'ଣ ତୁମକୁ ଦେଖିଛନ୍ତି ? ସେମାନେ କ'ଣ ତୁମ ନମ୍ବର ଲେଖି ନେଇଛନ୍ତି ? ଏକା ନିଃଶ୍ୱାସରେ ସେ ଏତେଗୁଡ଼ିଏ କଥା କହିଗଲା । ନା, ମନେହୁଏ ସବୁ ଠିକ୍ ଅଛି ! କିନ୍ତୁ ତୁମେ ଏତେ ଭୟାନକ ଦିଶୁଛ କାହିଁକି ? ମନେ ହୁଏ ତୁମେ ଏଭଳି ଜୀବନ ସହ ଆଦୌ ଅଭ୍ୟସ୍ତ ନୁହଁ । ଅଳ୍ପଦିନ ଭିତରେ ଆମେ ତୁମକୁ ଏଠାରୁ ନେଇଯିବୁ'', କିନ୍ତୁ କେଉଁଠାକୁ ତାହା କେହି କହି ପାରୁ ନଥାନ୍ତି ।

ମୁଁ କିନ୍ତୁ ସେହି ମୁହୂର୍ତ୍ତରେ ସେ କଥା ଭାବୁ ନଥିଲି ଏପରିକି ମୋ'ର ଏକାନ୍ତ ବନ୍ଧୁ ସହ ହୋଇଥିବା କଥୋପକଥନ ମଧ୍ୟ ମୋ ମନ ଉପରେ କୌଣସି ପ୍ରଭାବ ପକାଉ ନଥିଲା । ମୁଁ ଯେମିତି ମୋ ବନ୍ଧୁଠାରୁ ବହୁଦୂରରେ ଅବସ୍ଥାନ କରୁଥିଲି । ■■■

– ୭ –

# ପଶୁର ଗର୍ଜନ

'ବଛାବଛି' ପରଦିନ ମୁଁ ଇଭା ପାଖକୁ ଦୌଡ଼ି ଯାଇଥିଲି । ମୁଁ ବିସ୍ମିତ ହେଲି, ଯେତେବେଳେ ଜାଣିଲି ଯେ ସେ ଆମ ଜୁଙ୍ଗାଙ୍କ ବ୍ଲକକୁ ଆସିବାକୁ ବାହାରି ଥିଲା କାରଣ ଆମ ବ୍ଲକ୍‌ରେ ଯେଉଁ କେତେଜଣ ତଥାପି ବଞ୍ଚିଥିଲେ ଓ ସମସ୍ତେ ଶୋକ ଓ ଦୁଃଖରେ ଆଚ୍ଛନ୍ନ ହୋଇ ରହିଥିଲେ । ଇଭା ପ୍ରତିବେଶୀ ବ୍ଲକ୍‌ରେ କିରାଣୀ କାର୍ଯ୍ୟରେ ନିଯୁକ୍ତ ହୋଇଥିବାରୁ ସେ ଥିଲା 'ବାବୁ' ଶ୍ରେଣୀରେ ଅନ୍ତର୍ଭୁକ୍ତ । ସେଥିପାଇଁ ତ ସେଦିନ 'ବଛାବଛି' ବେଳେ ଆମ ଚାରିପଟେ ଘେରି ରହିଥିବା ମାନବ ଶୃଙ୍ଖଳ (ପରିବେଷ୍ଟନୀ) ତା' ବେଳକୁ ଖୋଲି ଯାଇଥିଲା । ତା'ର ପଦ ମର୍ଯ୍ୟାଦାକୁ ଧନ୍ୟବାଦ୍ । ସେ ସ୍ନାନାଗାର ନିକଟରେ ମଧ୍ୟ ନିର୍ବିଘ୍ନରେ ବୁଲାବୁଲି କରି ପାରୁଥିଲା । ମୁଁ ତା'ର ସେହି ମିଠାଳିଆ ସୁନ୍ଦର ମୁହଁଟିକୁ ଅନାଉଥିଲି, ଭାବୁଥିଲି, ସେ କୌଣସି ପାର୍ଥିବ ଜୀବ ନୁହେଁ । ଅବଶ୍ୟ ଆଉସ୍‌ଭିତ୍‌ଜ୍‌ର ପରିବେଶରେ କୌଣସି ଆଧ୍ୟାତ୍ମିକ ଚିନ୍ତା ଭାବନାର ଅବକାଶ ନଥିଲା । ମୋ' ପାଇଁ ସେ ଥିଲା ଗୋଟିଏ ସ୍ୱର୍ଗଦୂତ, ଯେ କି ମୋତେ ଭୟଙ୍କର ମୃତ୍ୟୁ ଗହ୍ୱରରୁ ଓଟାରି ଆଣିଥିଲା । ତା' ବିଷୟରେ ସେ ଯାହା କହୁଥିଲା, ମୁଁ ହତବାକ୍ ହୋଇ ତାହା ଶୁଣୁଥିଲି ।

୧୯୪୨ରେ ଚ୍ୟାଣ୍ଡମ୍‌ରୁ ଯେଉଁ ଇହୁଦୀ ଦଳ ଆଉସ୍‌ଭିତ୍‌ଜ୍ ଆସିଥିଲେ, ସେ ସେହି ଦଳରେ ଏ କୁ ଆସିଥିଲା । ତା' ସାଙ୍ଗରେ ଆସିଥିବା ତା'ର ପିତାମାତାଙ୍କୁ ଏଠାରେ ପହଞ୍ଚିବା ସଙ୍ଗେ ସଙ୍ଗେ 'ଗ୍ୟାସ୍' କୁ ପଠାଇ ଦିଆଯାଇଥିଲା ଏବଂ ଜୁଙ୍ଗାଙ୍କ ବ୍ଲକ୍‌ରେ ତାକୁ ଛାଡ଼ି ଦିଆଯାଇଥିଲା; ସମ୍ପୂର୍ଣ୍ଣ ଏକାକିନୀ । ତା'ର ପିତାମାତା ଏକ ପୋଲାଣ୍ଡ ହାଇସ୍କୁଲ୍‌ରେ ଜର୍ମାନ୍ ଭାଷାର ଶିକ୍ଷକ ଥିଲେ । ତେଣୁ ସେ ଜର୍ମାନୀ ଭାଷାରେ ଅନର୍ଗଳ କହି ପାରୁଥିଲା ।

ବ୍ଲକ୍‌ର ୱାର୍ଡେନ୍ ଇଭାକୁ ଲକ୍ଷ୍ୟ କରି ତାହାକୁ କୋରିଅର ବା ପତ୍ରବାହକ କାର୍ଯ୍ୟରେ ନିଯୁକ୍ତି ଦେବା ପାଇଁ ସେକ୍ରେଟେରିଏଟକୁ ସୁପାରିଶ୍ କରିଥିଲେ । 'କୋରିଅର୍' କାର୍ଯ୍ୟ ଆଦୌ ମାମୁଲି କାର୍ଯ୍ୟ ନଥିଲା । ବନ୍ଦୀ ଶିବିରଗୁଡ଼ିକ ବହୁ କିଲୋମିଟର ଅଞ୍ଚଳରେ ପରିବ୍ୟାପ୍ତ ହୋଇଥିଲା । ତାହା ବିଭିନ୍ନ ବ୍ଲକ୍‌ରେ ବିଭକ୍ତ ହୋଇଥିଲା ଏବଂ ପ୍ରତ୍ୟେକ ବ୍ଲକ୍ ମଝିରେ ଗେଟ୍‌ମାନ ରହିଥିଲା । ମୁଖ୍ୟ ପ୍ରଶାସନ କେନ୍ଦ୍ରରୁ ସମଗ୍ର ପ୍ରଶାସନ ପରିଚାଳିତ ହେଉଥିଲା ଏବଂ ସେଠାରୁ ସମସ୍ତ ପ୍ରଶାସନିକ ବିବରଣୀ ଓ ନିର୍ଦ୍ଦେଶନାମା ଏହି 'କୋରିଅର୍'ମାନଙ୍କ ଦ୍ୱାରା ବିଭିନ୍ନ ବ୍ଲକ୍‌ରେ ପ୍ରସାରିତ ହେଉଥିଲା । ଧଳା 'କଲାର' ଥିବା ଖେଳୁଆଡ଼ ପୋଷାକ ପରିହିତା ସୁନ୍ଦରୀ ତରୁଣୀମାନଙ୍କୁ କୋରିଅର୍ ଭାବରେ ନିଯୁକ୍ତି

କରାଯାଉଥିଲା । ସେମାନଙ୍କ ସାର୍ଟ କାନ୍ଧରେ 'Lauferka' ଚିହ୍ନିତ ବ୍ୟାଜ୍ ରହୁଥିଲା ସେମାନେ ଉଭୟ ଭଲ ଓ ମନ୍ଦ ବାର୍ତ୍ତା ବହନ କରୁଥିବାରୁ ସେମାନଙ୍କର ସର୍ବତ୍ର ପ୍ରବେଶାଧିକାର ଥିଲା ଓ ସମସ୍ତଙ୍କ ଦ୍ୱାରା ସେମାନେ ସମ୍ମାନିତ ହେଉଥିଲେ । କ୍ୟାମ୍ପରେ ଥିବା 'ଅଣ୍ଡର ଗ୍ରାଉଣ୍ଡ' ବା 'ଗୁପ୍ତ ସଂସ୍ଥା' ସେହି ତରୁଣୀମାନଙ୍କର ସାହାଯ୍ୟ ନେବାପାଇଁ ଉଦ୍ୟମ କରୁଥିଲା । କାରଣ ଜର୍ମାନମାନେ କ୍ୟାମ୍ପରେ କ'ଣ କରିବାକୁ ଯୋଜନା କରୁଛନ୍ତି, ସେ ସମ୍ପର୍କରେ ସମସ୍ତ ବିବରଣୀ ପାଇବାରେ ସେହି ଥିଲେ ଚମତ୍କାର ଉତ୍ସ । ସେହି 'କୋରିଅର'ମାନେ ଧରା ନପଡ଼ି ବିଭିନ୍ନ ବ୍ଲକ୍‌ରେ ଥିବା 'ଗୁପ୍ତସଂସ୍ଥା' ସହ ସମ୍ପର୍କ ରଖିବାକୁ ମଧ୍ୟ ମାଧ୍ୟମ ହେଉଥିଲେ । ସେମାନଙ୍କୁ ଅଶେଷ ଧନ୍ୟବାଦ ଯେ ସେମାନେ ଅସୁସ୍ଥ କମ୍ରେଡ୍(ସାଥୀ)ମାନଙ୍କୁ ଆଶ୍ରୟ ଦେଇ ପାରୁଥିଲେ କାରଣ ବନ୍ଦିନୀମାନଙ୍କୁ ନିର୍ଦ୍ଦିଷ୍ଟ କର୍ମୀ-ଗୋଷ୍ଠୀ ବା କମାଣ୍ଡୋମାନଙ୍କ ନିକଟକୁ ନେଇଯିବା ମଧ୍ୟ ସେମାନଙ୍କର ଏକ ଦାୟିତ୍ୱ ଥିଲା ।

କ୍ୟାମ୍ପ୍ ଭିତରେ ଗୋପନ ଭାବରେ ଏକ ପ୍ରତିରୋଧ ସଙ୍ଗଠନ କାମ ଚାଲିଥିଲା ବୋଲି ଇଭା ପ୍ରଥମ ଅବସ୍ଥାରେ ଆଦୌ ଜାଣି ନଥିଲା । ସେ ସ୍ୱାଭାବିକ ଭାବରେ ଓ୍ୱାର୍ଡେନ୍‌ମାନଙ୍କ ଠାରୁ ବାର୍ତ୍ତା ନେଇ ବିଭିନ୍ନ ଶିବିରରେ ପହଞ୍ଚାଇ ଦେଉଥିଲା । ସେ ଏକ ସ୍ୱତନ୍ତ୍ର କୋଠରୀରେ ରହୁଥିଲା ଏବଂ ଯଥେଷ୍ଟ ଖାଦ୍ୟ ପଦାର୍ଥ ପାଉଥିଲା । ଅଳ୍ପଦିନ ମଧ୍ୟରେ ସେ ଉପର ପାହ୍ୟାକୁ ଉନ୍ନୀତ ହେଉଥିଲା ।

ଥରେ ଜୁଲାଇ ମାସରେ ଦିନେ ତା'ର ନିତିଦିନିଆ ବାର୍ତ୍ତା ନେଇ ଗେଷ୍ଟାପୋ (ନାତ୍‌ସୀ ଜର୍ମାନୀର ହୃତକମ୍ପକାରୀ ଗୋପନ ପୋଲିସ୍) ଅଫିସ୍‌କୁ ଯାଇଥିବା ବେଳେ ସେଠାରେ ର୍ୟାଣ୍ଡମ୍‌ର ଏକ ଇହୁଦୀ ଯୁବବନ୍ଧୁଙ୍କୁ ସେଠାରେ ଦେଖିବାକୁ ପାଇଥିଲା । ତାକୁ ଭୀଷଣ ମାଡ଼ ହୋଇଥିଲା ଏବଂ ତାର ସମଗ୍ର ଶରୀର ରକ୍ତରେ ବୁଡ଼ିଥିଲା । କିନ୍ତୁ ନଜର ପଡ଼ିବା ମାତ୍ରେ ସେ ତା'ର ଆଖିକୁ ତଳକୁ କରିଦେଇଥିଲା, ଯେପରିକି ସେ ଇଭାକୁ ଜାଣିଥିଲା ବୋଲି କେହି ଜାଣି ନପାରୁ । କିନ୍ତୁ ଯେଉଁ କେତୋଟି ମୁହୂର୍ତ୍ତ ପାଇଁ ଦୁଇଜଣଙ୍କର ଆଖି ମିଳି ଯାଇଥିଲା ସେତିକିରୁ ଯୁବବନ୍ଧୁର ଘୃଣାବ୍ୟଞ୍ଜକ ଦୃଷ୍ଟିକୁ ଇଭା ଠଉରେଇ ପାରିଥିଲା । ଇଭା ଯେ ନାତ୍‌ସୀମାନଙ୍କ ପାଖରେ ନିଜକୁ ବିକ୍ରି କରିଦେଇଛି ସେକଥା ଭାବି ଯୁବକ ଜଣକ ସେହି ଅସନ୍ତୋଷ ଚାହାଣୀରେ ଚାହୁଁଥିଲା । ନାତ୍‌ସୀ ବିରୋଧୀ ଗୁପ୍ତ ସଙ୍ଗଠନରେ ଆଉ କେଉଁ କେଉଁ କମ୍ରେଡମାନେ ଥିଲେ, ସେକଥା ଆଦାୟ କରିବାକୁ 'ଗେଷ୍ଟାପୋ' ଯୁବକଟି ଉପରେ କରୁଥିଲା ଅକଥନୀୟ ଅତ୍ୟାଚାର । ପ୍ରାୟ ଦୈନିକ ଇଭା ଗେଷ୍ଟାପୋ ଅଫିସ୍‌କୁ ଆସୁଥିଲା ଏବଂ ଦୈନିକ ଦେଖୁଥିଲା ଯୁବକର କ୍ଷତ ବିକ୍ଷତ ଶରୀରର ଯନ୍ତ୍ରଣା ତଥା ସେହି ଘୃଣାବ୍ୟଞ୍ଜକ ଚାହାଣୀ ।

ଇଭା ମୋତେ କହିଲା ''ମୁଁ ସେ ଯୁବକ ବନ୍ଧୁକୁ ସାହାଯ୍ୟ କରିବାକୁ ଚାହେଁ । କିନ୍ତୁ

କେମିତି କ'ଣ କରିବି କିଛି ବୁଝିପାରୁ ନଥିଲି । କିଏ ସତ୍ ପରାମର୍ଶ ଦେବ ମୁଁ ସେହିଭଳି ବନ୍ଧୁକୁ ଖୋଜିଲି । ଭିତରେ ଭିତରେ ଗୋଟାଏ ଗୁପ୍ତ ପ୍ରତିରୋଧ ଆନ୍ଦୋଳନ ଚାଲୁଥିବା କଥା ମୁଁ ଆଦୌ ଜାଣି ନଥିଲି ।

ତଥାପି ବହୁ ବିଶିଷ୍ଟ ମହିଳା ବନ୍ଦିନୀଙ୍କ ସହ ମୁଁ ବେଶ୍ ପରିଚିତ ହେଲି ଏବଂ ସେମାନଙ୍କ ସହ କଥାବାର୍ତ୍ତା ହେଉଥିଲି । ମୁଁ ସେହି 'କୋରିଅର' କାର୍ଯ୍ୟ ରଖିବି କିମ୍ବା ପରିତ୍ୟାଗ କରିବି ତାହାହିଁ ସର୍ବ ପ୍ରଥମେ ମୋର ଜାଣିବାର ଥିଲା । ଯୁବକ ବନ୍ଧୁର ଘୃଣା ବ୍ୟଞ୍ଜକ ଦୃଷ୍ଟିକୁ ମୁଁ ଆଦୌ ଭୁଲି ପାରୁ ନଥିଲି । ସେଥିପାଇଁ ଘୋର ଦୁଶ୍ଚିନ୍ତାରେ ମୋର ସମୟ ଅତିବାହିତ ହେଉଥିଲା । ଏମିତି ବି ଘଟିଲା ଯେ 'ଗୁପ୍ତ ସଂସ୍ଥା'ର କମ୍ରେଡ୍‌ମାନେ ମୋ ସହ ସମ୍ପର୍କ ରଖିବାକୁ ଚେଷ୍ଟା କଲେ । ମୁଁ 'କୋରିଅର' କାର୍ଯ୍ୟ ଚଳାଇ ରଖିଲି ଏବଂ ବନ୍ଧୁମାନଙ୍କର ବାର୍ତ୍ତା ମଧ୍ୟ ଯଥାସ୍ଥାନରେ ପହଞ୍ଚାଇ ଦେଉଥିଲି । 'ଗୁପ୍ତସଂସ୍ଥା'ର ବାର୍ତ୍ତା ବହନ କରିବା କାର୍ଯ୍ୟ ଚଳେଇବାର କେତେ ସପ୍ତାହ ପରେ ମୋ'ର ଯୁବବନ୍ଧୁଟିକୁ ଗୁଳି କରି ହତ୍ୟା କରାଯାଇଥିଲା । ଆମେ ତାକୁ ରକ୍ଷା କରିପାରିଲୁ ନାହିଁ ।

ମୁଁ ପ୍ରାୟ ବର୍ଷେ କାଳ ସେହି କୋରିଅର କାମ ଚଳାଇ ରଖିଲି କିନ୍ତୁ ଶେଷକୁ ପୂରା ଅତିଷ୍ଠ ହୋଇ ପଡ଼ିଲି । ମୁଁ ଅନୁଭବ କଲି ଯେ ଯଦି ଜର୍ମାନମାନଙ୍କ ସହ ଅଧିକ ଦିନ ମୋତେ ସେ କାମ କରିବାକୁ ହୁଏ, ତେବେ ହୁଏତ କେଉଁଦିନ ମୋ'ର ବୋକାମି ଯୋଗୁଁ ସେହିଠାରେ ଖତମ ହୋଇଯିବି । ବର୍ତ୍ତମାନ ମୁଁ ବ୍ଲକ୍‌ରେ ଗୋଟିଏ କ୍ଲର୍କ ମାତ୍ର । ଓ୍ୱାର୍ଡେନ୍ ଜଣେ ସ୍ଲୋଭାକିଆ ଇହୁଦୀ- ଟିକେ କଡ଼ା ଲୋକ ! କିନ୍ତୁ ମୋର ପୂର୍ବ କାର୍ଯ୍ୟ ଯୋଗୁଁ ସର୍ଦ୍ଦାରମାନଙ୍କ ସହ ମୋର ସମ୍ପର୍କ ଅତ୍ୟନ୍ତ ନିବିଡ଼ । ସେହି ସୁବିଧା ଯୋଗୁଁ ମୁଁ ତୁମକୁ ସେଦିନ ବାଥ୍‌ରୁମ୍ ପାଖରୁ ନେଇ ଆସିବାକୁ ସମର୍ଥ ହେଲି । ବଛାବଛି ଦିନ ସକାଳେ ସୋନିଆ ମୋତେ ଖବର ଦେଲା ଯେ ''ତୁ ସକାଳେ ଗେଟ୍ ପାଖକୁ ଆସିବୁ । ତୋ' ପାଖରେ ଜରୁରୀ କାମ ଅଛି ।'' ବଛାବଛି ଚାଲିଲେ ସବୁ ଫିଲ୍ଡର ଗେଟ୍ ବନ୍ଦ କରି ଦିଆଯାଏ । ସେଦିନ ସୋନିଆ ''ବି'' ଗେଟ୍‌ରେ ଓ ଆମେ ''ଏ'' ଗେଟ୍‌ରେ ଥିଲୁ, ତୁମକୁ 'ବଛାବଛି'ରୁ ନେଇଯିବା ପାଇଁ ସୋନିଆ ମୋତେ କହିଥିଲା, ଯାହାହେଉ, ଶେଷସୁଦ୍ଧା ମୁଁ ସେଥିରେ ସଫଳ ହେଲି ଏବଂ ସେଥିପାଇଁ ମୁଁ ବହୁତ ଖୁସି ।''

ମୋ' ମନ ଭିତରେ ଇଭା ଚିରଦିନ ଏକ ଅପାର୍ଥିବ ମଣିଷ ଭାବରେ ରହିଗଲା । ଏପରିକି ୨ୟ ମହାଯୁଦ୍ଧ ଶେଷ ହେବା ପରେ ମୋତେ ଭେଟିବା ପାଇଁ ଯେତେବେଳେ ଲୁବ୍‌ଲିନ୍‌କୁ ଆସିଲା ତା' ସମ୍ପର୍କରେ ମୋର ସେହି ପ୍ରଥମ ଧାରଣା ଆଦୌ ବଦଳି ନଥିଲା । ବାଥ୍‌ରୁମ୍ ପାଖରୁ ମୋତେ ନେଇ ଯିବା ଦିନ ସେ ଯେପରି ଦେଖାଯାଉଥିଲା, ଲୁବ୍‌ଲିନ୍‌ରେ ମଧ୍ୟ ସେହିଭଳି ଦିଶିଲା ।

'ବଛାବଛି'ର ତିନିଦିନ ପରେ 'ଓବେର କାପୋ' (Obero kapo - କର୍ମଗୋଷ୍ଠୀର ମୁଖ୍ୟ ନେତା) ବୁବି ଆମ ବ୍ଲକ୍‌କୁ ଆସିଲା । ମୁଁ ତାକୁ ପ୍ରଥମ ଥର ପାଇଁ ଦେଖିଲି । ଆଉସ୍‌ଭିଟ୍‌ଜ୍‌ରେ ସମସ୍ତ ମହିଳା ବୁବିକୁ ଅତ୍ୟନ୍ତ ଭୟ କରନ୍ତି । ସେ ପୁରୁଷଙ୍କ ଭଳି ପ୍ୟାଣ୍ଟ ଓ ସ୍ୱେଟର ପିନ୍ଧେ । ମୁଣ୍ଡର ବୁଳ ଛୋଟ ଛୋଟ କରି କାଟେ । ତା'ର କଣ୍ଠସ୍ୱର ଖୁବ୍ ଗଭୀର ଓ ଚାଲିଚଳନ ଅତ୍ୟନ୍ତ କ୍ଷିପ୍ର । ପୋଷାକରେ ତା'ର ନମ୍ବର ପାଖରେ ଗୋଟିଏ କଳା ରଙ୍ଗର ତ୍ରିଭୁଜ ଚିହ୍ନ । ତା'ର ଅର୍ଥ ହେଉଛି ସେ ଜଣେ କ୍ରିମିନାଲ୍ ବନ୍ଦୀ । ସେ ଏହି କ୍ଷେତ୍ରରେ କର୍ମୀଗୋଷ୍ଠୀର ମୁଖ୍ୟ । ସେ ଅତି କଠୋର ହସ୍ତରେ ଶାସନ କରେ ।

ସେ ସକାଳୁ ଆସି ପହଞ୍ଚିଗଲା । ତା' ସହ ପହଞ୍ଚିଲା ୨୫ ନମ୍ବର ବ୍ଲକ୍‌ର ୱାର୍ଡେନ୍ । ବୁବି ମୃତ୍ୟୁ ତାଲିକା ଭୁକ୍ତ ବନ୍ଦିନୀମାନଙ୍କୁ ବାଛିବାକୁ ଆସିଥିଲା । ୨୫ ନମ୍ବର ବ୍ଲକ୍ 'ମୃତ୍ୟୁବ୍ଲକ୍' ନାମରେ କୁଖ୍ୟାତି ଅର୍ଜନ କରିଥିଲା । ଯେଉଁ ବନ୍ଦିନୀମାନଙ୍କୁ ଗ୍ୟାସ୍‌ରେ ମାରିବାକୁ ସ୍ଥିର ହୋଇଥାଏ ସେମାନଙ୍କୁ ୨୫ ନମ୍ବର ବ୍ଲକ୍‌ରେ ଅପେକ୍ଷା କରିବାକୁ ପଡ଼େ । 'ଡେଥ୍ ବ୍ଲକ୍'ର ୱାର୍ଡେନ୍‌କୁ ବ୍ୟଙ୍ଗ କରି କୁହାଯାଏ 'ସୁନ୍ଦରୀ ଶୀଲା' (Beautiful Cyla) ତା'ର ବୟସ ୧୮ ବର୍ଷ ଭିତରେ । ଯଥେଷ୍ଟ ସଂଖ୍ୟକ 'ଶିକାର' (ଦଣ୍ଡିତ ବନ୍ଦିନୀ) ନହେଲେ, ଗ୍ୟାସ୍‌ରେ ଅଧିକ ଖର୍ଚ୍ଚ ହୋଇଯାଏ ବୋଲି ସେହି ଅପେକ୍ଷାଗାର ୨୫ ନମ୍ବର ବ୍ଲକ୍‌ରେ ଅପେକ୍ଷା କରିବାକୁ ପଡ଼େ । 'ସୁନ୍ଦରୀ ଶୀଲା' ସ୍ଲୋଭାକିଆ ଇହୁଦୀମାନଙ୍କ ମଧ୍ୟରେ ସର୍ବ କନିଷ୍ଠ ଥିଲା । ଚେହେରା ସ୍ୱର୍ଗର ଅପ୍‌ସରୀ ତୁଲ୍ୟ କିନ୍ତୁ କାର୍ଯ୍ୟଟି ଅତି ଭୟଙ୍କର ।

ଆକମାନଙ୍କ ଆଖି ଆଗରେ ଘଟିବାକୁ ଯାଉଥିବା ସେହି ଆସନ୍ନ ଗଣହତ୍ୟା କଥା ଚିନ୍ତା କରି ଆମେମାନେ ଅସହାୟ ଓ ଆତଙ୍କିତ ହୋଇ ବସିଥାଉଁ । କେହି ଉଁ ଚୁଁ ହେଉ ନଥାନ୍ତି କିମ୍ବା କାନ୍ଦୁନଥାନ୍ତି । ସେମାନେ ଯେତେବେଳେ ଆମ ବ୍ଲକ୍‌ରେ ପ୍ରବେଶ କଲେ, ସର୍ବତ୍ର ଶ୍ମଶାନର ନୀରବତା ସୃଷ୍ଟି ହୋଇଗଲା । ଉଚ୍ଚ ହିଲ୍ ବୁଟ ପିନ୍ଧି, ହାତରେ ଚାବୁକ୍ ଧରି ବୁବି ଓ ଅନ୍ୟମାନେ ବ୍ଲକ୍‌ରେ ପ୍ରବେଶ କଲେ । ଶିବିରର ମଧ୍ୟ ଭାଗରେ ଟେବୁଲ୍ ଥୁଆ ହେଲା । ସେଠି କିରାଣୀ ଓ ସର୍ଦ୍ଦାର ବସିଲେ । ଗୋଟାଏ ପାଖରେ ଛିଡ଼ା ହୋଇ ଗଲେ ବୁବି ଓ ୱାର୍ଡେନ୍ । ନିଜ ନିଜ ଶଯ୍ୟାରୁ ପ୍ରାୟ କୁଦାମାରି ଆମେମାନେ ବାହାରି ଆସିଲୁ ଏବଂ ଆଟେନ୍‌ସନ୍ ମୁଦ୍ରାରେ ଛିଡ଼ା ହୋଇଗଲୁ । ବୁବି ସମସ୍ତ ବ୍ଲକ୍‌କୁ ନିରୀକ୍ଷଣ କରିସାରି ବନ୍ଦୀମାନଙ୍କୁ ଭଲଭାବରେ ଦେଖିଲା । ସେତେବେଳକୁ ବ୍ଲକ୍‌ର ଗେଟ୍ ସବୁ ବନ୍ଦ ହୋଇସାରିଥିଲା ।

ୱାର୍ଡେନ୍ କହିଲା, ''ସମସ୍ତେ ଲାଇନ୍‌ରେ ଛିଡ଼ା ହୁଅ ଏବଂ ସାର୍ଟରେ ବାମପଟ ମୋଡ଼ା ଖୋଲିଦିଅ ଯେପରିକି ତୁମର ନମ୍ବର ସ୍ପଷ୍ଟ ଦେଖାଯିବ । ଜଣେ ଜଣେ ଧୀରେ ଧୀରେ ଟେବୁଲ୍ ଚାରିପଟେ ବୁଲିଯିବ, ଯେପରିକି ନମ୍ବର ଦିଶିବ ।

ବିନା ପ୍ରତିବାଦରେ ଆମେ ଧାଡ଼ିରେ ଛିଡ଼ା ହୋଇଗଲୁ ଏବଂ ଜଣ ଜଣ କରି ଧୀରେ ଧୀରେ ଟେବୁଲ୍ ଚାରିପଟରେ ବୁଲିଗଲୁ । ଆଜି ଯେତେବେଳେ ମୁଁ ସେ କଥା ଭାବୁଛି, ମୁଁ ବୁଝିପାରୁଛି କାହିଁକି କେତେକ ଆମମାନଙ୍କୁ ପଚାରନ୍ତି- ''ଇହୁଦୀମାନେ କାହିଁକି ଏଭଳି ଶାନ୍ତଶିଷ୍ଟ ଭାବରେ ଚାଲିଯାଆନ୍ତି ? ବିନା ପ୍ରତିବାଦରେ ସେମାନେ କାହିଁକି ଗ୍ୟାସ୍ ଚ୍ୟାମ୍ବରକୁ ଯିବାପାଇଁ ପ୍ରସ୍ତୁତ ହୋଇପଡ଼ନ୍ତି ?'' ବ୍ଲକ୍‌ରେ ସର୍ବମୋଟ ପାଞ୍ଚଶହ ମହିଳା ବନ୍ଦିନୀ ଥିଲେ ଯେଉଁମାନଙ୍କୁ ଗ୍ୟାସ୍ ପାଇଁ ବଛା ଯାଇଥିଲା, ''ସେମାନେ ନିଜେ ମରିବା ପୂର୍ବରୁ କାହିଁକି ସେମାନେ ବୁବି, ୱାର୍ଡେନ୍ ସର୍ଦ୍ଦାରମାନଙ୍କ ଉପରକୁ କୁଦିପଡ଼ି ସେମାନଙ୍କୁ ମାରି ନ ଦିଅନ୍ତି ?'' ସେମାନଙ୍କର କ'ଣ ବା ଆଉ ହରାଇବାର ଥିଲା ? ଗ୍ୟାସ୍ ଚ୍ୟାମ୍ବରକୁ ନୀରବ ମୃତ୍ୟୁ ଅଭିଯାନ ଆଉସ୍‌ଭିଟ୍‌ଜ୍‌ରେ ମୁଁ ବହୁବାର ଦେଖିଛି । ମୁଁ ଆପଣାକୁ ସେହି ପ୍ରଶ୍ନ ବାରମ୍ବାର ପଚାରୁଛି । କାହିଁକି ସେମାନେ ନୀରବ ? ସେମାନେ ବି ଟିକେ କାନ୍ଦୁ ନାହାନ୍ତି କାହିଁକି ? ଆମ୍ଭେମାନେ ଆଉସ୍‌ଭିଟ୍‌ଜ୍‌ରେ ବହୁବାର ଆଲୋଚନା କରିଛୁ । ଯେଉଁମାନେ ଆଉସ୍‌ଭିଟ୍‌ଜ୍‌ର ନର୍କକୁଣ୍ଡ ଭିତର ଦେଇ ଗତିକରି ଆସିଲୁ ତା'ର କାରଣଗୁଡ଼ିକ ଅତି ସ୍ପଷ୍ଟ ଭାବରେ ଉପଲବ୍ଧି କରିଅଛୁ । ଆଉସ୍‌ଭିଟ୍‌ଜ୍‌ରେ ପହଞ୍ଚିବା ପରେ ଯେତେବେଳେ ଇହୁଦୀମାନଙ୍କୁ ଗ୍ୟାସ୍ ଚ୍ୟାମ୍ବରକୁ ନିଆଯାଏ, ସେମାନେ ତାହା ଜାଣିପାରନ୍ତି ନାହିଁ । କେହି କହିଲେ ବି ବିଶ୍ୱାସ କରନ୍ତି ନାହିଁ ।''

୧୯୪୪ରେ ଯେତେବେଳେ ସାରା ୟୁରୋପରୁ ବହୁ ସଂଖ୍ୟକ ଇହୁଦୀ ଏଠାରେ ପହଞ୍ଚିବାକୁ ଲାଗିଲେ ସେମାନଙ୍କୁ ସିଧା 'ଗ୍ୟାସ୍'କୁ ପଠାଇ ଦିଆଗଲା । ଯେଉଁଠାରେ ଆଗନ୍ତୁକ ଇହୁଦୀମାନଙ୍କୁ ଗ୍ରହଣ କରାଯାଉଥିଲା ଏବଂ ସେମାନଙ୍କର ଜିନିଷପତ୍ର ଜିମା ନିଆଯାଉଥିଲା ସେଠାରେ କାର୍ଯ୍ୟ କରୁଥିବା ଜଣେ 'କମାଣ୍ଡୋ'କୁ ଗୁପ୍ତ ସଂସ୍ଥା ଦାୟିତ୍ୱ ଦେଇଥିଲା ଯେ ସେ ଇହୁଦୀମାନଙ୍କୁ ବାସ୍ତବରେ କେଉଁଠାକୁ ନିଆଯାଉଥିଲା, ସେକଥା ସେମାନଙ୍କୁ ଚୁପ୍‌ଚାପ୍ କହିଦେବ । 'କମାଣ୍ଡୋ'ଟି ଜଣେ ଅଷ୍ଟ୍ରିଆ ଅଧିବାସୀ ଇହୁଦୀ ଥିଲା । ଜଣେ ପ୍ରାଣ ପ୍ରାଚୁର୍ଯ୍ୟ ଭରା ଯୁବକ । କିନ୍ତୁ ସେ ଇହୁଦୀମାନଙ୍କୁ ସେମାନଙ୍କର ବାସ୍ତବ ଗନ୍ତବ୍ୟସ୍ଥଳ ବିଷୟରେ କହିଲା ବେଳେ ସେମାନେ ତାହା ବିଶ୍ୱାସ କରୁ ନଥିଲେ । ବରଂ ଓଲଟା 'ନାତ୍‌ସୀ ଗୁଣ୍ଡାବାହିନୀ'କୁ ପଚାରୁଥିଲେ, ''ଏକଥା କ'ଣ ସତ ଯେ ଆମମାନଙ୍କୁ ମାରିବା ପାଇଁ ଗ୍ୟାସ୍ ଚ୍ୟାମ୍ବରକୁ ନିଆଯାଉଛି ?'' ନୂତନ ଆଗନ୍ତୁକ ଇହୁଦୀମାନଙ୍କର ମନୋଭାବ ଏଭଳି ଥିଲା । ସେମାନେ ଭାବୁଥିଲେ ଯେ ସେମାନେ ମଣିଷ ତେଣୁ ସେମାନଙ୍କର ମାନବିକ ଅଧିକାର ରହିଅଛି । ଯେଉଁମାନେ ଆଉସ୍‌ଭିଟ୍‌ଜ୍‌ରେ ପହଞ୍ଚିବା ପରେ କିଛିଦିନ ନିର୍ମମ ପିଟା ଖାଇଥାନ୍ତି, ଅନାହାର ଅର୍ଦ୍ଧାହାରରେ ଅମାନୁଷିକ ଦୁର୍ବ୍ୟବହାର ତିକ୍ତ ଅଭିଜ୍ଞତା ଅର୍ଜନ କରିଥାନ୍ତି, ସେମାନଙ୍କ ଭିତରେ ଆଉ କୌଣସି

ଜୀବନୀ ଶକ୍ତି ଓ ସମ୍ବେଦନଶୀଳତା ନଥାଏ ଓ ପ୍ରତିରୋଧ କରିବାର ଇଚ୍ଛା ବା ସାମର୍ଥ୍ୟ ମଧ୍ୟ ନିଃଶେଷ ହୋଇଯାଇଥାଏ । ସାଧାରଣତଃ ହିଂସ୍ର ପଶୁ ତାହାର ଶିକାର ଉପରକୁ ଲମ୍ଫ ପ୍ରଦାନ କରିବା ପୂର୍ବରୁ ଯେଉଁ ହୃତକମ୍ପକାରୀ ଗର୍ଜନ କରେ ସେହି ଗର୍ଜନର ଶବ୍ଦରେ ନିରୀହ ଶିକାରଟି ଏଭଳି ଭୀତତ୍ରସ୍ତ ଓ ଶକ୍ତିହୀନ ହୋଇପଡ଼େ ଯେ ସେ ଆଉ କୁଆଡ଼କୁ ଦୌଡ଼ି ପଳାଇ ଯାଇପାରେ ନାହିଁ । ଶିକାରଟି ଡରି ମରି କାଠଭଳି ପଡ଼ି ରହେ ଆସନ୍ନ ମୃତ୍ୟୁର ଅପେକ୍ଷାରେ । ଠିକ୍ ସେୟା ଘଟୁଥିଲା ମୃତ୍ୟୁ ଅପେକ୍ଷାମାଣା ସେହି ପାଞ୍ଚଶହ ବନ୍ଦିନୀଙ୍କ କ୍ଷେତ୍ରରେ । ଗାଳି, ମାଡ଼, ବର୍ବରୋଚିତ ଅମାନବିକ ବ୍ୟବହାର ସହିତ ସପ୍ତାହ ସପ୍ତାହ ବ୍ୟାପି ଶିବିରର କଷ୍ଟଦାୟକ ଜୀବନ ଓ ଶେଷରେ 'ବଛାବଛି'– ଯେପରିକି ବନ୍ଦିନୀମାନେ ସାଧାରଣ ମଣିଷ ବି ନୁହଁନ୍ତି, ଛିନ୍ନବସ୍ତ୍ର ସଦୃଶ ପରିତ୍ୟଜ୍ୟ; ଏସବୁ ବନ୍ଦିନୀମାନଙ୍କ ଉପରେ ହିଂସ୍ରପଶୁର ହୃତକମ୍ପକାରୀ ଗର୍ଜନ ଭଳି କାମଦିଏ । ଆମମାନଙ୍କ ଭିତରୁ ସମସ୍ତ ମାନବୀୟ ବୃତ୍ତି, ଅନ୍ୟାୟ-ମୃତ୍ୟୁ ଆଦେଶ ବିରୁଦ୍ଧରେ କ୍ଷୀଣତମ ସ୍ୱର ଉତ୍ତୋଳନ କରିବାର ସମସ୍ତ ଶକ୍ତିକୁ ଲୋପ କରିଦିଏ । ଆମେମାନେ ଭୟରେ ପରସ୍ପର ଲଗା ଲଗି ହୋଇ ଶୃଙ୍ଖଳିତ ଲାଇନ୍‌ରେ ଛିଡ଼ା ହୋଇ ରହୁ ଏବଂ ହିଂସ୍ର ଜନ୍ତୁମାନେ ଆମକୁ ଖାଇବା ପର୍ଯ୍ୟନ୍ତ ଅପେକ୍ଷା କରୁ ।

ବଞ୍ଚି ରହିବାର ଦୁର୍ବାର ଅଭିଳାଷ ହିଁ ମନୁଷ୍ୟର ସମସ୍ତ କାର୍ଯ୍ୟକଳାପ ଓ ସଂଗ୍ରାମ ପାଇଁ ଶକ୍ତି ପ୍ରଦାନ କରେ । ଯେତେ କ୍ଷୁଦ୍ରାଦପି କ୍ଷୁଦ୍ର ମଣିଷ ହେଉନା କାହିଁକି ତା' ମନରେ ଥିବା ବଞ୍ଚିବାର ଇଚ୍ଛା ହିଁ ଏକ ନିର୍ଦ୍ଦେଶନାମା ଭଳି କାର୍ଯ୍ୟ କରେ– ''ଚେଷ୍ଟାକର, ହୁଏତ ତୁମେ ସଫଳ ହୋଇପାରିବ ।'' କିନ୍ତୁ ନାତ୍‌ସୀ ବନ୍ଦୀ ଶିବିରର ମୃତ୍ୟୁ ତାଲିକାରେ ଥରେ ନାଁ ଅନ୍ତର୍ଭୁକ୍ତ ହୋଇଗଲେ ବଞ୍ଚିବାର ଇଚ୍ଛାଶକ୍ତି ମଧ୍ୟ ନିଃଶେଷ ହୋଇଯାଏ ଓ ମଣିଷ ନିଷ୍ପ୍ରାଣ ହୋଇଯାଏ ।

ଯେଉଁମାନେ ବୁବି ସାମନାରେ ଛିଡ଼ା ହେଉଥିଲେ ସେମାନଙ୍କ ନାମକୁ ସେ ଡାକୁଥିଲେ ଏବଂ କିରାଣୀ ସେମାନଙ୍କ ନାମକୁ ତାଲିକା ସହିତ ମିଳାଉଥିଲା । ଯେଉଁମାନେ ତାଲିକାଭୁକ୍ତ ହେଉଥିଲେ ସେମାନଙ୍କୁ ଶୀଲା ପାଖରେ ଛିଡ଼ା ହେବାକୁ ନିର୍ଦ୍ଦେଶ ଦିଆଗଲା । ଗୋଟିଏ ଗେଡ଼ୀ ଝିଅ ବଙ୍କରରେ ଲୁଚିବାକୁ ଚେଷ୍ଟା କରୁଥିଲା । ଗୋଡ଼ଉଥିବା କୁକୁରକୁ ଦେଖି ଠେକୁଆ ଯେପରି ଲୁଚିବାକୁ ଚେଷ୍ଟାକରେ ଝିଅଟିକୁ ସେହିଭଳି ଲୁଚିବାକୁ ଉଦ୍ୟମ କରୁଥିବାର ଦେଖି ସର୍ଦ୍ଦାର ତା' ଉପରେ ଯେପରି କୁଦି ପଡ଼ିଲା ସେପରି ବୁବି ମଧ୍ୟ ତା' ମୁହଁରେ ଦୁଇ ତିନି ମୁଥ ମାରିଲା । ତା' ପରେ ସବୁକାମ ଠିକ୍ ଠିକ୍ ଚାଲିଲା ।

'ମାତାମ୍ ହେଲା' କିନ୍ତୁ ଟେବୁଲ୍ ପାଖରେ ଥିବା ତଥାକଥିତ 'ଜଜ୍‌ମାନଙ୍କୁ' ବୁଝାଇବାକୁ ଚେଷ୍ଟା କରୁଥାନ୍ତି ଯେ ସେ ଜଣେ ସୁନ୍ଦରୀ ସ୍ୱାସ୍ଥ୍ୟବତୀ ରମଣୀ କିନ୍ତୁ ତାଙ୍କ

ନାମଟା ଭୁଲବଶତଃ ତାଲିକାଭୁକ୍ତ ହୋଇ ଯାଇଛି । ଟେବୁଲ୍ ପାଖରେ ପହଞ୍ଚିବା ସଙ୍ଗେ ସଙ୍ଗେ ସେ ତା'ର ପୋଷାକ ପତ୍ର ଫୋପାଡ଼ି ଦେଇ ଉଲଗ୍ନ ହୋଇଗଲା ଏବଂ ବୁବି ସମ୍ମୁଖରେ ଆଣ୍ଠେଇ ପଡ଼ି ତା'ଠାରୁ ଦୟା ଭିକ୍ଷା କଲା । ମୁଁ ସେ ଦୃଶ୍ୟ ଦେଖି ପଥର ପାଲଟି ଗଲି । କିଛି ଗୋଟାଏ ଅଘଟଣ ଘଟିବ ବୋଲି ଆଶଙ୍କା କଲି । ବୁବି ତାକୁ ପିଟିଲା ନାହିଁ । ତାକୁ ଦୀର୍ଘ ସମୟ ଅନେଇଲା । ଶେଷରେ ତାକୁ କହିଲା ''ଏଇ ପାଖରେ ଛିଡ଼ା ହୁଅ ।'' ତାକୁ ପୋଷାକ ପିନ୍ଧିବାକୁ ମଧ୍ୟ କହିଲା ନାହିଁ ।

କିନ୍ତୁ କାର୍ଯ୍ୟକ୍ରମରେ ପୁନର୍ବାର ବିଘ୍ନ ହେଲା । ଜଣେ ତରୁଣୀର ମା'କୁ ଗ୍ୟାସକୁ ପଠାଇବାକୁ ସ୍ଥିର ହୋଇଥିଲା । ତରୁଣୀଟି କହିଲା, ''ମୋ ମା ସାଙ୍ଗରେ ମୋତେ ମଧ୍ୟ ଗ୍ୟାସ୍‌କୁ ପଠାଇ ଦିଅନ୍ତୁ ।'' ସେ କଥା ବା କିଏ କାହିଁକି ଶୁଣନ୍ତା ? ମା'କୁ ଝିଅଠାରୁ ବଳପୂର୍ବକ ଛଡ଼େଇ ଅଣାହେଲା ।

ସମସ୍ତେ ଏକାଠି ହେବାପରେ ଶୀଲା ସେମାନଙ୍କୁ ପାଞ୍ଚଜଣିଆ ଧାଡ଼ି କରାଇଲା । ବୁବିର ନିର୍ଦ୍ଦେଶାନୁସାରେ ସେହି ସୁନ୍ଦରୀ ଉଲଗ୍ନ 'ହେଲା'ର ନେତୃତ୍ୱରେ ସମସ୍ତ ବନ୍ଦିନୀ କୁହୁଡ଼ି ଓ ବରଫ ବର୍ଷା ଭିତରକୁ ଯିବାକୁ ଆରମ୍ଭ କଲେ ।

ଟିକିଏ କଳ୍ପନା କର ତ । ଏତେ ଗୁଡ଼ିଏ ମହିଳା ମୃତ୍ୟୁ ଯନ୍ତା ଭିତରକୁ ପ୍ରବେଶ କଲେ ଅଥଚ ଜଣେ ସୁଦ୍ଧା ଜର୍ମାନୀ ପୋଲିସ୍ ଆବଶ୍ୟକ ପଡ଼ିଲା ନାହିଁ । ଜର୍ମାନମାନେ ସେହି ଘୃଣ୍ୟ କାର୍ଯ୍ୟଗୁଡ଼ିକ ସେହି ଇହୁଦୀ ବନ୍ଦିନୀମାନଙ୍କ ଦ୍ୱାରା ହିଁ କରାଉଥିଲେ ।

■■■

– ୮ –

# ଅକ୍ଷମଶାଳା

ଆଉସ୍‌ଭିତ୍‌ଜ୍‌ର ଅକ୍ଷମଶାଳାରେ ମୁଁ ତିନିଦିନ ରହିଥିଲି । ବଛା ହୋଇଥିବା ବନ୍ଦିନୀମାନଙ୍କୁ ମୃତ୍ୟୁ ଯନ୍ତାକୁ ପଠାଇ ସାରିବା ପରେ ଜଣେ କମ୍ରେଡ୍ କିରାଣୀ ମୋ ପାଖକୁ ଆସି ମୋତେ ଅକ୍ଷମଶାଳାକୁ ଯିବା ପାଇଁ କହିଲେ । ମୁଁ ପ୍ରତିବାଦ ସ୍ୱରରେ କହିଲି, ''ମୁଁ ତ ଅସୁସ୍ଥ ନୁହେଁ !'' କାରଣ ହସପିଟାଲ ନାମ ଶୁଣିଲେ ମୋତେ ବଡ଼ ଭୟ ଲାଗେ । ଆଉସ୍‌ଭିତ୍‌ଜ୍‌ରେ ଅସୁସ୍ଥ ଓ ଦୁର୍ବଳ ବ୍ୟକ୍ତିମାନଙ୍କ ପ୍ରତି କିଭଳି ବ୍ୟବହାର କରାଯାଏ, ସେକଥା ମୁଁ ସ୍ୱଚକ୍ଷୁରେ ଦେଖିଛି ।

ସେ ଉତ୍ତର ଦେଲେ, ''ଆପଣ ଯିବାକୁ ଚାହାନ୍ତି କି ନା ମୁଁ ତାହା ଶୁଣିବାକୁ ଆସିନି, ମୁଁ କମ୍ରେଡ୍ ଓର୍ଲିଙ୍କ ନିର୍ଦ୍ଦେଶରେ ଆସିଛି, ତେଣୁ ଅଧିକ କଥାବାର୍ତ୍ତା ନ କରି ଆପଣ ବାହାରି ପଡ଼ନ୍ତୁ ।''

କମ୍ରେଡ୍ ମାସା ଏଠାରେ ଥିବାବେଳେ ମୋତେ କହିଥିଲେ ଯେ ଓର୍ଲି ହେଉଛନ୍ତି ଜଣେ ଜର୍ମାନ୍ କମ୍ୟୁନିଷ୍ଟ । ୧୯୩୩ ମସିହାରେ ହିଟଲର୍ ଜର୍ମାନୀ କ୍ଷମତା ଦଖଲ କରିବା ପରେ ଓର୍ଲିଙ୍କୁ ଗିରଫ କରି କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପକୁ ପଠାଇ ଦେଇଥିଲେ । ସେହି ଦିନଠାରୁ ଓର୍ଲି ଏହିଠାରେ । ସେ ସେତେବେଳେ ସମସ୍ତ ବନ୍ଦୀ ଶିବିରରେ ମୁଖ୍ୟ ପ୍ରଶାସିକା ବା ବନ୍ଦୀ କର୍ମଚାରୀଙ୍କ ଗୋଷ୍ଠୀର ସର୍ବୋଚ୍ଚ ନେତା । ତା' ହାତରେ ବହୁତ କ୍ଷମତା ଥିବାରୁ ସେଇ ସୁଯୋଗରେ ସେ କମ୍ରେଡ୍‌ମାନଙ୍କୁ ସାହାଯ୍ୟ କରେ । ସୁତରାଂ କମ୍ରେଡ୍ ଓର୍ଲି ଯେତେବେଳେ ମୋତେ ହସ୍‌ପିଟାଲକୁ ଯିବାକୁ ଚାହୁଥିଲେ ସେଥିରେ ମୋର କୌଣସି ଅମଙ୍ଗଳ ଘଟିବ ନାହିଁ ବୋଲି ମୁଁ ବୁଝିପାରିଲି । ଯେଉଁ ବନ୍ଧୁମାନଙ୍କ ସହାୟତାକୁ ସେ ପର୍ଯ୍ୟନ୍ତ ମୁଁ ଅପେକ୍ଷା କରିଥିଲି ସେ ସାହାଯ୍ୟ ସେହିମାନଙ୍କଠାରୁ ଆସିଥିଲା ।

ନିୟମିତ ଭାବେ ମିଳିଥିବା ପ୍ରାତଃ ଭୋଜନ ପରେ ପରେ ମୁଁ କ୍ଲିନିକ୍‌କୁ ଗଲି । ମୋ' ସହ ସର୍ଦ୍ଦାର ଦ୍ୱାରା ମନୋନୀତ ଓ ବହୁଦିନ ଧରି ରୋଗ ଯନ୍ତ୍ରଣାରେ ଛଟପଟ ହେଉଥିବା ଅନ୍ୟ କେତେକ ବନ୍ଦିନୀ ମଧ ଗଲେ । ହସ୍‌ପିଟାଲଟି 'A' ଏରିଆ ପାଖାପାଖି ଅବସ୍ଥିତ । ଆମ ଗେଟ୍‌ଟି ପାର ହୋଇଗଲେ ହସପିଟାଲ । ତା' ମଧ ଅନ୍ୟ ଶିବିରମାନଙ୍କ ଠାରୁ କିଛି ଭିନ୍ନ ଧରଣର ନୁହେଁ । ସେହି ବାରାକ୍, ସେହି ବୃକ୍ଷଲତା ଶୂନ୍ୟ ପରିବେଶ,ସେହି ସ୍ତୁପୀକୃତ ଆବର୍ଜନା ଏବଂ ଦଳାଚକଟା ବରଫ । ଗୋଟିଏ କୋଣରେ ଅବସ୍ଥିତ ବ୍ୟାରାକ୍‌ରେ ଥିଲା ଅକ୍ଷମଶାଳା । ଅନ୍ୟ ବ୍ଲକରୁ ଆସିଥିବା ଅସୁସ୍ଥ ବନ୍ଦୀମାନେ ସେହିଠାରେ ଅପେକ୍ଷାରତ । ସେଠାରେ ଆର୍ଯ୍ୟ ଏବଂ ଇହୁଦୀମାନଙ୍କ ପାଇଁ ପୃଥକ୍ ଅକ୍ଷମଶାଳା । ମୋତେ ଇହୁଦୀ ଅକ୍ଷମଶାଳାକୁ ନିଆଗଲା । ଆମେମାନେ ଅତ୍ୟଧିକ ଥଣ୍ଡାରେ ଜଡ଼ସଡ଼ ହୋଇ ବାହାରେ ଅପେକ୍ଷା କଲୁ । ଯଦିଓ ଅଧିକାଂଶ ଭୟଭୀତ ହୋଇ ଯାଇଥିଲେ ତଥାପି ସେମାନେ 'ଅସୁସ୍ଥ' ବୋଲି ରିପୋର୍ଟ କରିଥିଲେ । କେତେକ ଛିଡ଼ା ହେବାକୁ ମଧ ଅସମର୍ଥ ଥିଲେ । କେତେକ ଆମାଶୟ ଭୋଗୁଥିଲେ, ଶିବିରରେ ତାହା ଏକ ସାଧାରଣ ରୋଗ ଥିଲା । ସାମାନ୍ୟ ରୁଟି ଟୁକୁରାଏ ମଧ ପେଟରେ ରହୁ ନଥିଲା ଫଳରେ ଦିନକୁ ଦିନ ଅଧିକ ଦୁର୍ବଳ ହୋଇ ପଡୁଥିଲେ । ଶୁଖି ଶୁଖି କଳାକାଠ ପଡ଼ିଯାଉଥିଲେ । ମୁହଁ ସବୁଜ ରଙ୍ଗର ହୋଇ ଯାଉଥିଲା ଏବଂ ଦେହରୁ ଦୁର୍ଗନ୍ଧ ବାହାରୁ ଥିଲା । କେତେକ ମହିଳାଙ୍କର ବକ୍ଷରେ ଘା' ହୋଇ ଅସହ୍ୟ ଯନ୍ତ୍ରଣା ଦେଉଥିଲା କିନ୍ତୁ ସେମାନେ ହସ୍‌ପିଟାଲ୍‌ରେ ରହିବାକୁ ଚାହୁଁନଥିଲେ । ସେମାନେ କେବଳ ଚାହୁଁଥିଲେ ଘା'ର ଡ୍ରେସିଂ କରିବାକୁ । ଇହୁଦୀ ବ୍ଲକମାନଙ୍କରେ ବାରମ୍ବାର 'ବଛାବଛି' ହେଉଥିବାରୁ ସେମାନେ ସେଠାରେ ରହିବାକୁ ଭାରି ଡରୁଥିଲେ ।

ସେଠାରେ କିଛି ସମୟ ରହିବା ପରେ କିରାଣୀ ଆସି ଆମକୁ ଅକ୍ଷମଶାଳାକୁ ନେଇଗଲେ । କାନ୍ଥରେ ଥିବା ଥାକରେ ବେଣ୍ଡେଜ୍ ଜମା ହୋଇଥିଲା । ମଝିରେ ଥୁଆ

ହୋଇଥିଲା ଗୋଟିଏ ବଡ଼ ଟେବୁଲ୍ । ସେହିଠାରେ ରୋଗୀର ପରୀକ୍ଷା ହେଉଥିଲା ଏବଂ କ୍ଷତ ସ୍ଥାନରେ ଡ୍ରେସିଂ ହେଉଥିଲା । ମଝିରେ ଥୁଆ ହୋଇଥିବା ଛୋଟ ଟେବୁଲ୍ ଉପରେ ଜମା ହୋଇଥିଲା ଫାଇଲ୍ ସବୁ । ସେଠାରେ କାର୍ଡ଼ଗୁଡ଼ିକ ପଞ୍ଜିକୃତ ହେଉଥିଲା । ଟେବୁଲ୍ ପାଖରେ ଝିଅଟି ବସିଥିଲା, ସେ ବୋଧହୁଏ କିରାଣୀ ! ଆମେ ସବୁ ଲାଇନ୍‌ରେ ଛିଡ଼ା ହେଲୁ । କିରାଣୀ ପାଖକୁ ଯାଇ ନିଜ ନିଜ ନାଁ ଓ ନମ୍ବର କହିବାକୁ ପଡୁଥିଲା । କିରାଣୀ ବାକ୍ସରେ ସେହି ନାଁକୁ ଖୋଜୁଥିଲା; ନମଳିଲେ, ଗୋଟାଏ ନୂଆ କାର୍ଡ ତିଆରି କରି ଦେଉଥିଲା । ସେହି କାର୍ଡ ଧରି ଡାକ୍ତର ପାଖକୁ ଗଲେ ଡାକ୍ତର ଓ ନର୍ସ ତା'ର ସେବା କରୁଥିଲେ ।

ଯେଉଁ ମହିଳା ଛିଡ଼ା ହେବାକୁ ମଧ ଅସମର୍ଥ ଥିଲା, ମୁଁ ତା' ପଛରେ ଛିଡ଼ା ହୋଇଥିଲି । ମୋତେ ଖଣ୍ଡେ କାର୍ଡ ମିଳିଥିଲା । ମୁଁ ସେ କାର୍ଡ ଖଣ୍ଡିକ ଧରି ଡାକ୍ତରଙ୍କ ପାଖକୁ ଗଲି କିନ୍ତୁ ତାଙ୍କୁ କ'ଣ କହିବି ଭାବି ପାରୁ ନଥିଲି । ଡାକ୍ତର ମଧ ଥିଲେ ଜଣେ ସୁନ୍ଦରୀ ତରୁଣୀ । ସେ ଜଣେ ଚେକ୍ (Czech) ଇହୁଦୀ । ମୁଁ ତାଙ୍କ ପାଖରେ ପହଞ୍ଚିବା ପୂର୍ବରୁ ଚୁପ୍‌ଚାପ୍ ଛିଡ଼ା ହେବାକୁ ମୋତେ ଇସାରା ଦେଲେ । ମୁଁ ସେହି ଥଣ୍ଡା ଓ ଭୟାବହ ନିଷ୍ଠୁର ନିର୍ମମ ପରିବେଶରେ ଅପେକ୍ଷା କରୁଥିବା ବେଳେ ଭ୍ରାତୃତ୍ୱ ଓ ବନ୍ଧୁତାର ସଙ୍ଗୀତ ମୋ ହୃଦୟରେ କିପରି ଗୁମୁରି ଉଠିଲା ।

ମାରୁସିଆ ନାମ୍ନୀ ସେହି ନର୍ସଟି ମଧ ଜଣେ ଚେକ୍ ଇହୁଦୀ ଥିଲେ । ସେ ମୋ କାର୍ଡ ଦେଖିବା ସଙ୍ଗେ ସଙ୍ଗେ ମୋ' ଆଡ଼କୁ ଏକ ଉଷ୍ମ ଚାହାଣୀରେ ଚାହିଁଲେ । ତାଙ୍କ ମୁହଁରେ ହାସ୍ୟରେଖାଟି ଫୁଟି ଉଠିଲା ଏବଂ ଅନୁଚ୍ଚ ସ୍ୱରରେ ମୁହଁରୁ ବାହାରି ପଡ଼ିଲା 'NAZDAR' – ମୋ ଭାଗ୍ୟ ! ମୋତେ ଗୋଟାଏ ପାଖକୁ ଟାଣି ନେଇ ଧୈର୍ଯ୍ୟ ଧରିବାକୁ କହିଲେ ।

ମାରୁସିଆ ବଡ଼ ଦକ୍ଷତା ସହକାରେ ପୁଜ ଭରା କ୍ଷତଗୁଡ଼ିକୁ ପରିଷ୍କାର କରିଦେଲେ । ବାହୁତଳେ ହୋଇଥିବା ବଥଗୁଡ଼ିକୁ ନିଶ୍ଚେତକ ବିନା କଟାକଟି କରି ଦେଲେ, କେହି ଊଁ ଚୁଁ ମଧ ହେଲେ ନାହିଁ । କେବଳ ହସ୍‌ପିଟାଲ୍‌କୁ ଯିବା କଥା କହିଲେ କେହି ଯୁକ୍ତି ତର୍କ କରୁଥିବାର ଶୁଭୁଥିଲା । ହସ୍‌ପିଟାଲ୍ ଅର୍ଥ କ'ଣ, ସେକଥା ପୁରାତନ ବନ୍ଦିନୀମାନେ ଜାଣିଥିଲେ, ତେଣୁ ସେମାନେ ହସପିଟାଲ ଯିବାକୁ ଆଦୌ ରାଜି ହେଉନଥିଲେ । ନୂତନ ବନ୍ଦିନୀମାନେ ଅକ୍ଷମଶାଳାରେ ରହିବାକୁ ଚାହୁଁଥିଲେ କାରଣ ସେମାନେ କୌଣସି କାର୍ଯ୍ୟ କରିବାକୁ ସମର୍ଥ ନଥିଲେ ।

କିନ୍ତୁ ସେଠାରେ ରହିବା ଭୁଲ ହେବ ବୋଲି ସେମାନଙ୍କୁ ଯେତେ ବୁଝାଇଲେ ମଧ ସେମାନେ ତାହା ବୁଝୁ ନଥିଲେ । ଶେଷରେ ସେମାନଙ୍କୁ ଧମକ ଦେଇ ତଡ଼ିବାକୁ ପଡୁଥିଲା । ଅଯମଶାଳାର ସମସ୍ତଙ୍କୁ ପରୀଯା କରିବା ପରେ କୋଡ଼ିଏ ଜଣ ଅତ୍ୟନ୍ତ ଅସୁସ୍ଥ ରୋଗୀଙ୍କୁ

ଚିହ୍ନଟ କରାଗଲା ଏବଂ ସେମାନଙ୍କୁ ବିଭିନ୍ନ ହସ୍‌ପିଟାଲ୍‌କୁ ପଠାଇ ଦିଆଗଲା । କିରାଣୀ ସେମାନଙ୍କୁ ଦୁଇଜଣିଆ ଲାଇନ୍ କରିଦେଲା । ରୋଗର ନିଦାନ ଓ ଉଦ୍ଦିଷ୍ଟ ବ୍ଲକ୍‌ର ନାମ ଲେଖାଥିବା କାର୍ଡଗୁଡ଼ିକ ସେ ହାତରେ ଧରିଲା ଏବଂ ସେମାନଙ୍କୁ ସଙ୍ଗରେ ଧରି ଚାଲିଗଲା । ମୁଁ ଏକା ଚାହିଁ ରହିଲି ଅକ୍ଷମଶାଳାରେ ।

ନର୍ସ ମାରୁସିଆ ଓ ଡାକ୍ତର ମାନ୍‌ସୀ ମୋତେ ଅଭିନନ୍ଦନ ଜଣାଇଲେ । ''ଆମେମାନେ ଚୋକୋସ୍ଲୋଭାକିଆର କମ୍ୟୁନିଷ୍ଟ । ଆମେ ତୁମ କଥା ସବୁ ଜାଣିଛୁ । ତୁମେ ଅକ୍ଷମଶାଳାରେ ଆମ ସହ କିରାଣୀ କାମ କରିବ । ଦୁଃଖର କଥା ଯେ ବର୍ତ୍ତମାନ କିରାଣୀ କାମ ଖାଲି ନାହିଁ । ତେଣୁ ତୁମକୁ ହସ୍‌ପିଟାଲ୍ ବ୍ଲକରେ ନାମ ଲେଖାଇ ଦେଉଛୁ । ତୁମେ କେବଳ ରାତିରେ ହସ୍‌ପିଟାଲ୍‌ରେ ଶୋଇବ । ଖୁବ୍ ସକାଳୁ ହାଜିରା ପୂର୍ବରୁ ଆମ ପାଖକୁ ପଳାଇ ଆସିବ ଏବଂ ଏଇଠି କାମ କରିବ ।'' ମାରୁସିଆ ଏ କଥାଗୁଡ଼ାକ ସ୍ମିତ ମୁଖରେ ଟକଟକ ହୋଇ କହି ଯାଉଥାଏ । ତା କଥାରୁ ସ୍ପଷ୍ଟ ବୁଝାଯାଉଥାଏ ଯେ ସେ ସର୍ବଦା ଚେଷ୍ଟିତ ଯେପରିକି ସବୁ ଯୋଜନା କାର୍ଯ୍ୟକାରୀ ହୁଏ ଏବଂ ଫଳାଫଳ ମଧ୍ୟ ନିର୍ଭୁଲ୍ ହୁଏ । ଡାକ୍ତର ମାନ୍‌ସୀ ବଡ଼ ଶାନ୍ତ ଓ ଚୁପ୍‌ଚାପ୍ । ''ତୁମେ ଜାଣିଥିବା ଆମର ବହୁତ ବନ୍ଧୁ ଏ ବିଭାଗରେ କାର୍ଯ୍ୟରତ । ସମ୍ଭବତଃ ମାସା ଖୁସି ଖୁବ୍ ଶୀଘ୍ର ଆସିବ ଏବଂ ତୁମକୁ ସବୁକଥା ବୁଝାଇ ଦେବ ।'' ସେହି ଅଞ୍ଚଳ ବା ଏରିଆରେ (କେତେଗୁଡ଼ିଏ ବ୍ଲକ୍‌ର ସମଷ୍ଟି) ବହୁ ସଂଖ୍ୟକ ଫାସିଷ୍ଟ ବିରୋଧୀ ସଙ୍ଗଠନର ସଭ୍ୟ ଭର୍ତ୍ତି ହୋଇଥିଲେ । ବହୁ ସର୍ଦ୍ଦାର, କିରାଣୀ, ଡାକ୍ତର ଓ ନର୍ସମାନେ ଆମର ବନ୍ଧୁ ଥିଲେ । ଏରିଆ ଡାଇରେକ୍ଟର ଓର୍ଲି ଯୋଗୁଁ ତାହା ସମ୍ଭବ ହୋଇଥିଲା । ସମସ୍ତ କର୍ମୀଙ୍କର ନିଯୁକ୍ତିରେ ତାଙ୍କର ନିଷ୍ପତ୍ତି ମୂଳକ ଭୂମିକା ଥିଲା । ସବୁ ନିଯୁକ୍ତି ପଛରେ ସେ ଯୁକ୍ତିଯୁକ୍ତ କାରଣ ରଖୁଥିଲେ । ଅନ୍ୟ ଉପାୟରେ ନିଯୁକ୍ତ ହୋଇ ଯେଉଁମାନଙ୍କୁ ଏହି ଏରିଆରେ ଖୁନ୍ଦି ଦିଆଯାଇଥିଲା, ସେମାନଙ୍କୁ ସାଧାରଣତଃ ବାହାର କରାଯାଉ ନଥିଲା । ଅନ୍ୟ କୌଣସି ଏରିଆ ଅପେକ୍ଷା ଏହି ଏରିଆରେ କର୍ମୀମାନେ ଅଧିକ ନିରାପଦରେ ରହୁଥିଲେ ।

କାଗଜ ପତ୍ରରେ ମୁଁ ଅସୁସ୍ଥ ଥିଲି । ମୋ'ର କାର୍ଡ ଅନୁସାରେ ମୁଁ ହସ୍‌ପିଟାଲ୍‌ରେ କିନ୍ତୁ ବାସ୍ତବ କ୍ଷେତ୍ରରେ ମୁଁ ଅକ୍ଷମଶାଳାରେ କାର୍ଯ୍ୟ କରୁଥିଲି । ମୋ' ମନରୁ ଉତ୍କଣ୍ଠା ଦୂର କରିବାକୁ ମାନ୍‌ସୀ ମୋତେ ବୁଝାଇ ଦେଲେ ଯେ ମୋ' ଭଳି ବ୍ଲକ୍‌ର ଅଧିକାଂଶ କର୍ମକର୍ତ୍ତା 'ରୋଗୀ' ଭାବରେ ପଞ୍ଜିକୃତ । ସେମାନେ ସେହିଭଳି ରହିବା ପାଇଁ ନିରାପଦ ମଣନ୍ତି, କାରଣ ବ୍ଲକ୍‌ରେ 'ଗ୍ୟାସ୍' ପାଇଁ ଯେଉଁ 'ବଛାବଛି' ହୁଏ କର୍ମକର୍ତ୍ତାମାନେ ସେତେବେଳେ ଆଉ ରୋଗୀ ରୂପରେ ନଥାନ୍ତି, ଥାନ୍ତି କାର୍ଯ୍ୟବ୍ୟସ୍ତ କର୍ମୀ ରୂପରେ ।

ସେହି ସମୟରେ ଅକ୍ଷମଶାଳାରେ କାର୍ଯ୍ୟରତ କର୍ମକର୍ତ୍ତା ପାଞ୍ଚଜଣ ଥିଲେ -

ଦୁଇଜଣ କିରାଣୀ, ଜଣେ ନର୍ସ, ଜଣେ ଡାକ୍ତର ଓ ଜଣେ ସଫେଇ କର୍ମୀ । ମୁଁ ତୃତୀୟ କିରାଣୀ । ମୋ' ପାଇଁ ମୁଖ୍ୟ କଥା ହେଲା ଯେ ମୁଁ ଜଣେ କର୍ମକର୍ତ୍ତା ଭାବରେ ନିଯୁକ୍ତ ହେଲି । ମୁଁ କାର୍ଯ୍ୟରେ ଯୋଗ ଦେବାପରେ କିରାଣୀ ବାଳିକା ଦୁଇଜଣଙ୍କ ସହ ପରିଚିତ ହେଲି । ସେମାନେ ଚେକୋସ୍ଲୋଭିଆର ଇହୁଦୀ ଥିଲେ ଏବଂ ଭୀଷଣ ଧର୍ମଭୀରୁ ଥିଲେ । ସେମାନେ ସର୍ବଦା ଧର୍ମପୁସ୍ତକ ଧରୁଥିଲେ । ଜ୍ୟେଷ୍ଠା ରାଚେଲ୍ ଥିଲେ ସ୍ଲୋଭାକର "ସନାତନୀ ସ୍ଲୋଭାକ୍ ସଙ୍ଗଠନ"ର (Jewish orthodox slovak organisation) ଡାଇରେକ୍ଟର । ଶିବିର ଭିତରେ ତାଙ୍କର ଗୋଟିଏ ଗ୍ରୁପ୍ ମଧ୍ୟ ଗଢ଼ିଥିଲେ ଯେଉଁମାନେ ଧର୍ମୀୟ ଅନୁଶାସନକୁ ନିଷ୍ଠାପର ଭାବରେ ପାଳନ କରୁଥିଲେ । ୨ୟ କିରାଣୀ ନାମ 'ଆଦା' । ସେ ରାଚେଲ୍‌ଙ୍କ ନିର୍ଦ୍ଦେଶକୁ ଅକ୍ଷରେ ଅକ୍ଷରେ ପାଳନ କରୁଥିଲା ।

ମୁଁ ସେମାନଙ୍କ ସମ୍ପର୍କରେ ଆସିବା ପରେ ସେମାନଙ୍କ ଧର୍ମାନ୍ଧତା ମୋତେ ବିରକ୍ତ ବୋଧ ହେଲା । ସେମାନଙ୍କ ଚତୁର୍ଦ୍ଦିଗରେ ଯେଉଁ ବାସ୍ତବତା ଘଟି ଯାଉଥିଲା ତା ସତ୍ତ୍ୱେ ସେମାନେ "ଈଶ୍ୱର ନିର୍ବାଚିତ ଭକ୍ତ" ତତ୍ତ୍ୱରେ ତଥାପି ବିଶ୍ୱାସ କରୁଥିଲେ । ଆଉସ୍‌ଭିଟ୍‌ଜ୍‌ରେ ଇହୁଦୀମାନଙ୍କ ଅପ୍ରତିରୋଧ୍ୟ ଗଣସଂହାର ଏବଂ ବୃଦ୍ଧ ଶିଶୁ ଓ ମହିଳା ନିର୍ବିଶେଷରେ ସେମାନଙ୍କ ପ୍ରତି ହେଉଥିବା ପାଶବିକ ଲୋମହର୍ଷଣକାରୀ ନିର୍ଯାତନା ସତ୍ତ୍ୱେ ଈଶ୍ୱର ଭକ୍ତମାନେ ଦୃଢ଼ ଭାବରେ ବିଶ୍ୱାସ କରୁଥିଲେ ଯେ ଈଶ୍ୱର ଇହୁଦୀମାନଙ୍କୁ ଅଧିକ ଶ୍ରଦ୍ଧା କରନ୍ତି । ବାସ୍ତବତା ପ୍ରତି ଆଖିବୁଜି ଦେଇ ସେମାନେ କିପରି ଯେ ସେହି ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୁଅନ୍ତି, ତାହା ମୁଁ ବୁଝି ପାରେନା । ତଥାପି ସେମାନେ ସେଥିରେ ବିଶ୍ୱାସ କରନ୍ତି । ଈଶ୍ୱରଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରନ୍ତି ।

ମାଗ୍‌ଦା (Magda) ନାମ୍ନୀ ଜନୈକା ସ୍ଲୋଭାକ୍ ତରୁଣୀ ସଫେଇ କାର୍ଯ୍ୟ କରୁଥିଲେ । ମୁଁ ତାକୁ ଯେତେବେଳେ ଭେଟିଲି ସେତେବେଳେ ତାକୁ ୧୮ ବର୍ଷ ବୟସ ହୋଇଥିଲା । କିନ୍ତୁ ସେ ଆଉସ୍‌ଭିଟ୍‌ଜ୍‌ରେ ୧୯୪୧ ମସିହାରୁ ରହୁଥିଲା । ମଦର ମେରୀଙ୍କ ଭଳି ସୌମ୍ୟ ମୁଖମଣ୍ଡଳ । ହାଲୁକା ରଙ୍ଗର କେଶ ଏବଂ ନୀଳ ରତ୍ନ ସଦୃଶ ଉଜ୍ଜ୍ୱଳ ଚକ୍ଷୁଯୁଗଳ । ଶିବିର ଜୀବନର କୃଚ୍ଛ୍ର ସାଧନା ବହୁ ମହିଳାଙ୍କୁ ନିମ୍ନଗାମୀ କରିଥାଏ କିନ୍ତୁ ତାହା ମାଗ୍‌ଦାକୁ ଅଧିକ ମହନୀୟ କରିଥିଲା । ସେ ଏକ ବିଚିତ୍ର ଝିଅ ଥିଲା । ଖୁବ୍ ସାହସୀ, ବେଶ୍ ହସଖୁସିଆ । ପରେ ସେ ହୋଇଗଲା ମୋର ମାନସ କନ୍ୟା । ଆଉସ୍‌ଭିଟ୍‌ଜ୍‌ରେ ବହୁ ଆନନ୍ଦ ଓ ଦୁଃଖ ମୁହୂର୍ତ୍ତ ଆମର ଅତିବାହିତ ହୋଇଥିଲା । ର୍ୟାଭେନ୍‌ବ୍ରୁକ୍ ଶିବିରରେ ମଧ୍ୟ ମୋ' ସହ ତାହାର କିଛିଦିନ କଟିଥିଲା ।

ରୋଗୀମାନଙ୍କୁ ଭର୍ତ୍ତି କରିବା କାର୍ଯ୍ୟ ମଧ୍ୟାହ୍ନ ଭୋଜନ ପର୍ଯ୍ୟନ୍ତ ଚାଲୁଥିଲା । ତାହାପରେ ମାଗ୍‌ଦାର ବ୍ଲକ୍ ସଫେଇ କାର୍ଯ୍ୟ ଆରମ୍ଭ ହେଉଥିଲା । ପ୍ରଥମେ ଚଟାଣର

ଟାଇଲ ଧୁଆ ହେଉଥିଲା । ସେ କାର୍ଯ୍ୟରେ ଅବଶ୍ୟ ସମସ୍ତ ଅନ୍ତେବାସିନୀ ଭାଗ ନେଉଥିଲେ । ସଫେଇ କାର୍ଯ୍ୟ ଚାଲିବା ବେଳେ ଆମେ ଚେକ୍, ସ୍ଲୋଭାକ୍ ଓ ପୋଲାଣ୍ଡ ଭାଷାରେ ଗୀତ ଗାଉଥିଲୁ, ଗପ କରୁଥିଲୁ । ସେହି ଭାଷାକୁ ସମସ୍ତେ ବୁଝନ୍ତି । ପ୍ରଥମାବସ୍ଥାରେ ମୁଁ ସେହି ମଜା କରିବା ବା ଗପ କରିବାର ମାନସିକତାକୁ ଆସି ନଥିଲି । ଶିବିରର ଭୟାବହତା ସହ ଖାପ୍ ଖାଇବାକୁ ମୋତେ ବହୁଦିନ ଲାଗିଥିଲା । ଦୁଃଖ ଦୁର୍ଦ୍ଦଶା ଓ ମୃତ୍ୟୁ ବିଭୀଷିକାରେ ଜର୍ଜରିତ ହେଉଥିବା ଯେଉଁମାନଙ୍କୁ ପ୍ରତି ପଦକ୍ଷେପରେ ସମ୍ମୁଖୀନ ହେଉଥିଲି, ସେମାନଙ୍କୁ ବିସ୍ମୃତ ହୋଇ ପାରୁ ନଥିଲି; ଘୃଣିତ ଜୁଙ୍ଗାଙ୍ଗ ନା ନବ ଆଗନ୍ତୁକ ଇହୁଦୀର ଖୋଳପାକୁ ଛାଡ଼ି ପାରୁ ନଥିଲି । କିନ୍ତୁ ସେ ଖୋଳପା ନ ଛାଡ଼ିଲେ ଆଉସ୍‌ଭିଚ୍‌ଜ୍‌ରେ ବଞ୍ଚିବା ସୁଦୂର ପରାହତ ।

ଅକ୍ଷମଶାଳାର ଏକ କ୍ଷୁଦ୍ର କୋଠରୀରେ ଆମେ ମଧ୍ୟାହ୍ନ ଭୋଜନ କଲୁ । ସେହି କୋଠରୀରେ କେତେ ଗୋଟି ତିନିଥାକିଆ ଖଟ କେତେ ଖଣ୍ଡ ଚେୟାର ଏବଂ ଗୋଟିଏ ସ୍ୱତନ୍ତ୍ର ଚେୟର ଥିଲା । କାନ୍ଥରେ ଝୁଲୁଥାଏ ଗୋଟିଏ ବଡ଼ ଦର୍ପଣ । ଆଉସ୍‌ଭିଚ୍‌ଜକୁ ଆସିବା ଦିନଠୁ ସେହି ଦୁର୍ଲଭ ବସ୍ତୁଟିକୁ କେବେ ଦେଖିନଥିଲି । ଲୋଭ ସମ୍ବରଣ କରି ନପାରି ଦର୍ପଣ ପାଖକୁ ଦୌଡ଼ିଗଲି । କିନ୍ତୁ ସେ କିଏ ? ମୁଁ ? ମୁଁ ବଡ଼ ଭୟଙ୍କର ଦିଶିଲି । ମୁଁ ମୋ ଭଳି ଆଦୌ ଦିଶିଲି ନାହିଁ । ମନେହେଲା ଯେପରି ଆଉ ଜଣେ କିଏ ମୋ' ପଛରେ ଛିଡ଼ା ହୋଇଛି ଏବଂ ତାହାର ପ୍ରତିଛବି ପ୍ରତିବିମ୍ବିତ ହେଉଛି ।

ସନ୍ଧ୍ୟାରେ ହସ୍‌ପିଟାଲ ଗଲି । ସେଠାରେ ମୋ'ର କାର୍ଡ ଖଣ୍ଡିକ ରହିଥିଲା । ତେଣୁ ମୋତେ ସେଠାରେ ଶୋଇବାକୁ ପଡ଼ିଲା । ସେଠାରେ ରାତ୍ରୀଭୋଜନ ଶେଷ ହୋଇଥିଲା । ବ୍ଲକ୍‌ଟା ପୂରା ଶାନ୍ତ ନିସ୍ତବ୍ଧ । ମୋତେ ଆଦୌ ଭଲ ଲାଗିଲା ନାହିଁ । ରୁମ୍‌ର ଉଭୟ ପାର୍ଶ୍ୱରେ ତିନିଥାକିଆ ଖଟ । ପ୍ରତି ଖଟରେ ଦୁଇଜଣ । ମୋ' ବେଡ୍ ଖଣ୍ଡିକ ବ୍ଲକ୍‌ର ଶେଷ ଭାଗରେ । ତାହା ମଧ୍ୟ ତିନିଥାକିଆ । ମୁଁ ତୃତୀୟ ଖଟରେ ଶୋଇଲି । ମୋ ପାଖାପାଖି ଗୋଟେ ବଡ଼ ଷ୍ଟୋଭ୍ ବା ଚୁଲା । ତାହା ସାରା ବ୍ଲକ୍‌କୁ ଲମ୍ବିଥାଏ । ସେହି ପ୍ରଥମ ଥର ପାଇଁ ଦେଖିଲି ଯେ ଦୁଇଟି ଇହୁଦୀ ବାଳିକା ଷ୍ଟୋଭ୍‌ରେ ଅଗ୍ନିସଂଯୋଗ କଲେ ଏବଂ ଗୋଟିଏ ପାତ୍ରରେ ରାତ୍ରିଭୋଜନ ରାନ୍ଧିଲେ । ଆଳୁଝୋଳ ଏବଂ ପିଆଜ ଭଜାର ବାସନା ବ୍ଲକ୍ ସାରା ମହକି ଗଲା । ବ୍ଲକ୍‌ରେ ଥିବା ଅନ୍ୟାନ୍ୟ ରୋଗୀଙ୍କ ଆଡ଼କୁ ସେମାନଙ୍କ ନଜର ନଥିଲା । ତା ପରେ ସେମାନେ ସେହି ଷ୍ଟୋଭ୍‌ରେ ନିଆଁ ପୁଇଁଲେ ।

ହଠାତ୍ କେତେଗୁଡ଼ାଏ ବଡ଼ ବଡ଼ ମୂଷା ଷ୍ଟୋଭ୍ ଆଡ଼କୁ ମାଡ଼ି ଆସିବା ଦେଖି ମୁଁ ଛାନିଆ ହୋଇଗଲି । ମୂଷା ଗୁଡ଼ିକର ଲୋମ ହଳଦିଆ ଓ ଲାଞ୍ଜ ବେଶ୍ ଲମ୍ବା । ମୁଁ ବଡ଼ ପାଟିରେ ଚିତ୍କାର କଲି । କିନ୍ତୁ ସେମାନେ ଟିକେ ହେଲେ ଡରିଲେ ନାହିଁ, ଯେପରିକି ପୋଷା

ବିରାଡ଼ି । ଇହୁଦୀ ବାଳିକାଟି କହିଲା, ''ତୁମେ ଅଳ୍ପଦିନ ଭିତରେ ସେମାନଙ୍କ ସହ ଅଭ୍ୟସ୍ତ ହୋଇଯିବ ।'' କିନ୍ତୁ ରାତିରେ ମୁଁ ସ୍ୱପ୍ନ ଦେଖିଲି ଯେ ସେହି ମୂଷାମାନେ ମୋ' ଗଳାକୁ କାଟି ଚୋବେଇବାରେ ଲାଗିଛନ୍ତି ।

■■■

– ୯ –

# ଓର୍ଲି କିଭଳି ମଣିଷ

ଓର୍ଲି ରିଚେଟ୍‌କୁ ମୁଁ ଭେଟିବା ପୂର୍ବରୁ ତାଙ୍କ ସମ୍ପର୍କରେ ରକମ ରକମ ଗପ ଶୁଣିଥିଲି । ୧୯୩୩ ମସିହାରୁ ଜେଲ୍‌ର ଏକ କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପରେ ରହି ଆସିଥିବା ଓର୍ଲିଙ୍କ ସମ୍ବନ୍ଧରେ ଫାସିଷ୍ଟ ବିରୋଧୀ ସଙ୍ଗଠନର କମ୍ରେଡ୍‌ମାନେ ଭିନ୍ନ ଭିନ୍ନ ମତ ପୋଷଣ କରୁଥିଲେ । ହିଟ୍‌ଲର କ୍ଷମତାକୁ ଆସିବା ପରେ ପରେ ଓର୍ଲିଙ୍କୁ ବନ୍ଦୀଶାଳାରେ ନିକ୍ଷେପ କରାଯାଇଥିଲା । ସେତେବେଳେ ତାଙ୍କର ବୟସ ୧୮ ବର୍ଷ ଥିଲା । କେତେକ 'ପ୍ରଚାର ପତ୍ର'ରେ ସେ ସମ୍ପୃକ୍ତ ଥିବା ଅଭିଯୋଗରେ ତାଙ୍କୁ ପାଞ୍ଚବର୍ଷ ଜେଲଦଣ୍ଡ ଦିଆଯାଇଥିଲା । ୧୯୩୮ରେ ଯେତେବେଳେ ତାଙ୍କ ମୁକ୍ତିର ସମୟ ପହଞ୍ଚିଲା ଗେଷ୍ଟାପୋ (ଜର୍ମାନ୍ ଗୋଇନ୍ଦା ପୋଲିସ୍) ତାଙ୍କୁ ଦୁଇଟି ବିକଳ୍ପ ଦେଇଥିଲା- ତାଙ୍କର ଆଉ ସାଥିମାନଙ୍କ ନାମ ସେ ପ୍ରକାଶ କରିବେ, ନଚେତ୍ ଅବଶିଷ୍ଟ ଜୀବନ କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପରେ ରହିବେ । କିନ୍ତୁ ଗେଷ୍ଟାପୋ ସହ ସହଯୋଗ ନ କରିବାରୁ ତାଙ୍କୁ ସେହି 'କ୍ୟାମ୍ପ'ରେ ରହିବାକୁ ପଡ଼ିଲା । ଜର୍ମାନୀ ଦ୍ୱାରା ପୋଲାଣ୍ଡ ଦଖଲ ହେବାପରେ ତାଙ୍କୁ ଆଉସ୍‌ଭିଟ୍‌ଜ୍‌କୁ ପଠାଇଦିଆଗଲା । ସେ ସେହି 'ମୃତ୍ୟୁ ଶିବିର'ରେ ବରିଷ୍ଠତମ ବ୍ୟକ୍ତି ଥିଲେ । ସେ ଏରିଆ ଡାଇରେକ୍ଟର ଥିଲେ । ଅର୍ଥାତ୍ ଶିବିରର ଅସଂଖ୍ୟ ମହିଳା ବନ୍ଦିନୀମାନଙ୍କ ଜୀବନ ତାଙ୍କ ହାତ ମୁଠାରେ ଥିଲା ।

ମୃତ୍ୟୁ ଶିବିରରେ ଥିବାବେଳେ ଓର୍ଲିଙ୍କର ବ୍ୟକ୍ତି କୈନ୍ଦ୍ରିକ ଜୀବନ ଦେଖି ମୋ' ମନରେ ଅସୀମ କୌତୂହଳ ଜାତ ହେଉଥିଲା । ମୁଁ ସ୍ୱୀକାର କରୁଛି ଯେ ଆଜି ମଧ୍ୟ ମୁଁ ତାଙ୍କ କଥା ଭାବେ । ସେ ଜଣେ ପ୍ରକୃତ ଜର୍ମାନ୍ ଥିଲେ ଏବଂ ତତ୍‌ସହ ଜଣେ କମ୍ୟୁନିଷ୍ଟ ମଧ୍ୟ ଥିଲେ । ଶିବିରରେ ତାଙ୍କର କେତେଦୂର ନୈତିକ ଅଧଃପତନ ହୋଇଥିଲା, ମୁଁ ତାହା କହିପାରିବି ନାହିଁ । ବେଳେବେଳେ ମୋର ମନେହୁଏ ଗେଷ୍ଟାପୋ ତାଙ୍କୁ ଅପରିସୀମ କ୍ଷମତା ପ୍ରଦାନ କରିଥିଲେ, ତାଙ୍କୁ ଆଦର୍ଶଚ୍ୟୁତା କରିବା ପାଇଁ ଅନ୍ୟ ଦେଶରେ ଯେଉଁ କମ୍ୟୁନିଷ୍ଟମାନେ ସେହି ମୃତ୍ୟୁ ଶିବିରରେ ବଞ୍ଚି ରହିବାକୁ ଆପ୍ରାଣ ଉଦ୍ୟମ କରୁଥିଲେ, ଓର୍ଲିଙ୍କୁ ସେମାନେ ତାଙ୍କରଂ ବିରୁଦ୍ଧରେ ଲଗାଇ ଦେଉଥିଲେ ।

ଓର୍ଲିକୁ କଳିବା ପାଇଁ ମୁଁ ଅସମର୍ଥ । କଳିବା ପାଇଁ ଚେଷ୍ଟା ମଧ କରି ନାହିଁ । ଗୋଟାଏ ପରିସ୍ଥିତିରେ ସେ ହୁଏତ କର୍ତ୍ତୃପକ୍ଷଙ୍କର ଅବାଧ ହୁଅନ୍ତି ତ ଅନ୍ୟ କେତେବେଳେ ବନ୍ଦୀମାନଙ୍କ ପ୍ରତି ଅତ୍ୟନ୍ତ ନିଷ୍ଠୁରତା ପ୍ରଦର୍ଶନ କରନ୍ତି । କେତେବେଳେ ବା ମନୁଷ୍ୟର ଦୁଃଖ ଯନ୍ତ୍ରଣା ପ୍ରତି ଅତ୍ୟନ୍ତ ସମ୍ବେଦନଶୀଳ ହୋଇ ପଡ଼ନ୍ତି ତ ପୁଣି ପର ମୁହୂର୍ତ୍ତରେ ଆଖି ପିଛୁଳାରେ ସେ ଗ୍ୟାସ୍ ପାଇଁ ମନୋନୀତ ବନ୍ଦୀମାନଙ୍କ ମଧ୍ୟରୁ ଯେପରି ଜଣେ ମଧ ଖସିଯାଇ ନପାରେ ସେଥିପ୍ରତି ପୂରା ସତର୍କ ହୋଇଯାନ୍ତି । ବେଳେ ବେଳେ ସେ ଦେଶ ଓ ଜାତୀୟତା ନିର୍ବିଶେଷରେ ସ୍ୱାଧୀନତା ପାଇଁ ଲଢୁଥିବା ବନ୍ଦିନୀମାନଙ୍କ ପ୍ରତି ସହାନୁଭୂତିଶୀଳ । ପୁନଶ୍ଚ କେତେବେଳେ ତାଙ୍କ ଭିତରେ ଥିବା ଜର୍ମାନ୍ ସ୍ୱାଭିମାନ ତାଙ୍କୁ ଅନ୍ୟ ଦେଶର ଲୋକ ସହ ମିଶିବାକୁ ମଧ ବାଧା ଦିଏ । ବରଂ ଜଣେ ଜର୍ମାନ ଅଧିକାରୀ (ଉଚ୍ଚ କର୍ମକର୍ତ୍ତା) ଭାବରେ ଜର୍ମାନୀର ସ୍ୱାର୍ଥକୁ ସେ ସର୍ବୋଚ୍ଚ ସ୍ଥାନ ଦେଇଥାଏ । ଭଲ ଓ ମନ୍ଦରେ ସେ ଜଣେ ଜର୍ମାନ ନାଗରିକ ।

ବିଭିନ୍ନ ବନ୍ଦିନୀମାନଙ୍କ ପ୍ରତି ତାଙ୍କର ବ୍ୟବହାର ସମ୍ପର୍କରେ ପରେ ବର୍ଣ୍ଣନା କରିବି ଏବଂ ତାଙ୍କ ସମ୍ପର୍କରେ କିଛି ଗୋଟାଏ ମୂଲ୍ୟାୟନ କରିବି ।

■■■

## – ୧୦ –

# 'ମାସା'ର ଜୀବନ ରକ୍ଷାପାଇଁ ସଂଗ୍ରାମ

ଦିନେ ମାସା ମୋତେ କହିଲା "ଅରେ ଓର୍ଲି ମୋର ଜୀବନ ରକ୍ଷା କଲା, ଶୁଣ । ୧୯୪୩ ମସିହା ଗ୍ରୀଷ୍ମ ଋତୁରେ ବନ୍ଦି ଶିବିରରେ 'ଟାଇଫସ୍ ଜ୍ୱର' (ସାଙ୍ଘାତିକ ସଂକ୍ରାମକ ଜ୍ୱର) ମହାମାରୀରେ ପରିଣତ ହୋଇଥିଲା । ଏଭଳି ହେଲା ଯେ ଏକ ସମୟରେ ତିନିଶହରୁ ଅଧିକ ମହିଳା ସେହି ରୋଗରେ ଆକ୍ରାନ୍ତ ହୋଇଗଲେ । ପ୍ରତି ହସ୍‌ପିଟାଲ୍ ସାମନାରେ ସ୍ତୁପୀକୃତ ଶବ ପୋପଡ଼ା ହେବାକୁ ଲାଗିଲା । ପ୍ରଥମାବସ୍ଥାରେ ଜର୍ମାନ୍‌ମାନେ ସେଥିପ୍ରତି ବିଶେଷ ଦୃଷ୍ଟି ଦେଇ ନଥିଲେ । ମନେ ହେଉଥିଲା ସେମାନେ ଭାବୁଥିଲେ ଯେ ସେହି ରୋଗ କେବଳ ବନ୍ଦୀ ଶିବିର ଭିତରେ ସୀମାବଦ୍ଧ ରହିବ ଓ ବନ୍ଦିନୀମାନଙ୍କର ଧ୍ୱଂସ ସାଧନ କରିବ । କିନ୍ତୁ ଟାଇଫସ୍‌ବାହୀ କୀଟମାନେ (Lice) ଏତେ ଧୃଷ୍ଟ ଯେ ନାଜି ଗୁଣ୍ଡା ବାହିନୀ (SS Man)କୁ ମଧ କାମୁଡ଼ିବାକୁ ଲାଗିଲେ ଏବଂ ଦିନକୁ ଦିନ ଅଧିକ ଗୁଣ୍ଡା ବାହିନୀ ଟାଇଫସ୍‌ରେ ଶଯ୍ୟାଶାୟୀ ହେଲେ । ସେତେବେଳେ ଯାଇ କ୍ୟାମ୍ପ୍ ପ୍ରଶାସକମାନେ ତାହାର ପ୍ରତିରୋଧ କରିବାକୁ ସ୍ଥିର କଲେ । କିନ୍ତୁ ଅଶ୍ୱିତ୍ସର ଚଳଣୀ ଅନୁସାରେ ରୋଗ ପ୍ରତିରୋଧ ଅର୍ଥ ରୋଗର ଚିକିତ୍ସା ନୁହେଁ ବରଂ ରୋଗର ଜୀବାଣୁ

ସାଙ୍ଗରେ ରୋଗୀକୁ ମଧ୍ୟ ପୋଡ଼ି ନିଃଶେଷ କରିଦେବା । ବ୍ଲକ୍‌ର ସମସ୍ତ ରୋଗୀ ଓ ସେମାନଙ୍କର ସେବା କରୁଥିବା ନର୍ସମାନଙ୍କୁ ଗ୍ୟାସ୍‌କୁ ପଠାଇଦେବା ଆରମ୍ଭ ହୋଇଗଲା ।''

''ସେହି ସମୟରେ ମୁଁ ମଧ୍ୟ ଟାଇଫସ୍‌ରେ ପଡ଼ିଗଲି । ତଥାପି ସେହି ଅସୁସ୍ଥତା ମଧ୍ୟରେ ମୁଁ କାମ ବନ୍ଦ କଲି ନାହିଁ । ଚାଳିଶି ଡିଗ୍ରୀ ଉତ୍ତାପରେ ମଧ୍ୟ ମୁଁ ପ୍ରାୟ ସଜ୍ଞାହୀନ ଅବସ୍ଥାରେ ବ୍ଲକ୍‌ରେ ବୁଲୁଥିଲି, ଶେଷରେ ଜର୍ମାନ୍‌ମାନେ ମୋତେ ଧରି ପକାଇଲେ ଏବଂ ଟାଇଫସ୍ ବ୍ଲକ୍‌ରେ ଭର୍ତ୍ତି କରିଦେଲେ । ସେହି ଶିବିରରେ ସମସ୍ତେ କର୍ମୀ ହୋଇଥିବାରୁ ଲୋକମାନଙ୍କର ଏକ ଭ୍ରମଧାରଣା ହେଲା ଯେ ଜର୍ମାନ୍‌ମାନେ ସେହି ବ୍ଲକ୍‌କୁ ବାଦ୍ ଦେଇ ଦେବେ । ପ୍ରଥମ କେତେଦିନ ମୁଁ ପ୍ରାୟ ସଜ୍ଞାହୀନ ହୋଇ ପଡ଼ି ରହିଥିବାରୁ ମୋ' ଚାରିପଟେ କ'ଣ ଘଟୁଥିଲା ମୁଁ କିଛି ଜାଣି ପାରୁ ନଥିଲି । କେତେ ଦିନ ପରେ ଯେତେବେଳେ ମୁଁ ପ୍ରକୃତିସ୍ଥ ହେଲି, ସେତେବେଳେ ଜାଣିବାକୁ ପାଇଲି ଯେ ସେହି ବ୍ଲକ୍‌ର ସମସ୍ତଙ୍କୁ ଗ୍ୟାସ୍‌କୁ ପଠାଇ ଦେବାକୁ ସ୍ଥିର ହୋଇଛି । ସେତେବେଳେ ବ୍ଲକ୍‌ରେ ଅସୁସ୍ଥ ଲୋକ ସଂଖ୍ୟା ଥିଲା ସର୍ବମୋଟ ତିନିଶହ । ସେମାନେ ସମସ୍ତେ ଥିଲେ ତରୁଣୀ ଏବଂ ସେତେବେଳେ କେତେକ ଆରୋଗ୍ୟ ଲାଭ କରୁଥିଲେ । କେତେକ ସମ୍ପୂର୍ଣ୍ଣ ରୋଗମୁକ୍ତ ହୋଇ ଯାଇଥିଲେ । ଏବଂ ପରଦିନ ହସ୍‌ପିଟାଲ୍ ପରିତ୍ୟାଗ କରିବେ ବୋଲି ବଛା ହୋଇଥିଲେ । କିନ୍ତୁ କେହି ହସ୍‌ପିଟାଲ୍ ଛାଡ଼ିବା ପୂର୍ବରୁ ସମ୍ପୂର୍ଣ୍ଣ ବ୍ଲକଟାକୁ ସିଲ୍ କରାଗଲା । ମୁର୍ଦ୍ଦାର ପୋଡ଼ା ଚୁଲାର ଚିମିନି ଛଡ଼ା ବାହାରକୁ ଯିବାପାଇଁ ଅନ୍ୟ କୌଣସି ବାଟ ନଥିଲା ।

'ଗ୍ୟାସ୍'କୁ ଯିବାକୁ ଆମକୁ ତିନିଦିନ କାଳ ଅପେକ୍ଷା କରିବାକୁ ପଡ଼ିଲା । ଯେଉଁ ଝିଅଗୁଡ଼ିକ ଆରୋଗ୍ୟଲାଭ କରିସାରିଥିଲେ ସେମାନେ ସମ୍ପୂର୍ଣ୍ଣ ବିଚଳିତ ହୋଇ ଯାଇଥିଲେ । ସେଠାରେ ଲୁଚିଯିବା ପାଇଁ କୌଣସି ସ୍ଥାନ ନଥିବା ବିଷୟ ସେମାନଙ୍କୁ ଜଣାଥିଲେ ମଧ୍ୟ ନିଜ ନିଜକୁ ରକ୍ଷା କରିବା ପାଇଁ ବିକଳ ହୋଇ ଉହାଡ଼ିଆ ସ୍ଥାନ ଖୋଜୁଥିଲେ । ସେମାନେ ମରିବାକୁ ଚାହୁଁ ନଥିଲେ । ଦିନେ ମଧ୍ୟାହ୍ନରେ କେତେକ ଝିଅଙ୍କୁ ଗ୍ୟାସ୍‌କୁ ନେବାକୁ କାର ଆସି ପହଞ୍ଚିଗଲା । ବ୍ଲକ୍ ସାମନାରେ କାରଗୁଡ଼ିକ ଛିଡ଼ା ହୋଇଗଲା । ନାତ୍‌ସୀ ଆତଙ୍କବାଦୀମାନେ ଷ୍ଟୋଭ୍ ଉପରେ ଛିଡ଼ା ହୋଇଯାଇ ଗୋଟି ଗୋଟି ନମ୍ବର ଓ ନାମ ଘୋଷଣା କଲେ । ଉଦ୍ଦିଷ୍ଟ ମହିଳାମାନଙ୍କୁ ସେହିଠାରେ ସମ୍ପୂର୍ଣ୍ଣ ଉଲଗ୍ନ ହେବାକୁ ପଡୁଥିଲା ଏବଂ ସେହି ଅବସ୍ଥାରେ ସେମାନଙ୍କୁ କାର୍ ଭିତରେ ଭର୍ତ୍ତି କରାଯାଉଥିଲା । କେତେକ ମହିଳା ପ୍ରାଣ ଭୟରେ ଚିତ୍କାର କଲେ, କେତେକ ଦୌଡ଼ି ପଳାଇ ଯିବାକୁ ଚେଷ୍ଟା କଲେ । କେତେକ ବିଛଣା ତଳେ ଲୁଚିଗଲେ । ନାତ୍‌ସୀମାନେ ସେମାନଙ୍କୁ ଛାଡୁ ନଥିଲେ । ଏପରିକି ଜଣକୁ ଗୁଳିକରି ସେହିଠାରେ ମାରି ଦେଲେ ।

ରୋଗରେ ପଡ଼ି ମୋ କାନକୁ ଭଲ ଶୁଭୁ ନଥିଲା । ତେଣୁ ମୋ' ନମ୍ବର କେତେବେଳେ ଡକାଯିବ, ତାହା ଶୁଣିବାକୁ ମୁଁ କାନ ଡେରି ରହିଥିଲି । ମୋର ଜୀବନଟା ବଡ଼ ଅପ୍ରୀତିକର ବୋଧ ହେଉଥିଲା । ମୁଁ ଗ୍ୟାସ୍‌କୁ ଆଦୌ ଖାତିର କରୁ ନଥିଲି । ମୁଁ କେବଳ ଏତିକି ଚାହୁଁଥିଲି ଯେ ମୋର ନାମ ଡକାଯିବା ସଙ୍ଗେ ସଙ୍ଗେ ମୁଁ ହାଜର ହୋଇଯିବି ଓ ନାତ୍‌ସୀ ଆତଙ୍କବାଦୀଙ୍କ ପିଟାରୁ ରକ୍ଷା ପାଇଯିବି । କିନ୍ତୁ ମୋ ନମ୍ବରଟା ମୁଁ ଶୁଣି ପାରିଲି ନାହିଁ । ସମସ୍ତେ ଚାଲିଗଲା ପରେ ମୁଁ ଏକା ସେଠାରେ ପଡ଼ି ରହିଲି, ଜଣେ ଆତଙ୍କବାଦୀ ପଚାରିଲା, ''ତୋ ନମ୍ବର କେତେ ?'' ମୁଁ ହାତ ଟେକି ଦେଖାଇଲି, ଜବାବ୍ ଦେବାକୁ ମୋର ଶକ୍ତି ନଥିଲା । ବୁବି ମୋ ଆଡ଼କୁ ଅନେଇଲା । କାରଣ ଆତଙ୍କବାଦୀମାନେ ମୋ ପାଖକୁ ଆସିବାକୁ ଭୟ କରୁଥିଲେ । ବୁବି କହିଲା, ''ତୁ ଆପାତତଃ ଏଠାରେ ଥାଆ ।'' ପରେ ଦ୍ୱିତୀୟ ବ୍ଲକ୍‌କୁ ବଦଳି କରାଯିବ ତା' ପରେ ସେ ପଳାଇଗଲା । ସେହି ବିଶାଳ ମରଣ ଶିବିରରେ ମୁଁ ଏକାକୀ ପଡ଼ି ରହିଲି । ମୁଁ ଏଭଳି ଭୟଙ୍କର ଭାବରେ ଥରିବାକୁ ଲାଗିଲି ଯେପରିକି ଖଟ ଉପରୁ ପଡ଼ିଯିବି ।

ସନ୍ଧ୍ୟାରେ ଓର୍ଲି କେତେକ ନର୍ସଙ୍କୁ ଧରି ସେଠାରେ ପହଞ୍ଚିଲା । ପରେ ମୁଁ ସେହି ଝିଅମାନଙ୍କଠାରୁ ଶୁଣିବାକୁ ପାଇଲି ଯେ ମୋର ନାମକୁ ମୃତ୍ୟୁ ତାଲିକାରୁ କାଟିଦେବା ପାଇଁ ଓର୍ଲି ସେ ବିଶ୍ୱାସଘାତକ ଡାକ୍ତର ମେଙ୍ଗେଲ୍‌କୁ କହିଥିଲେ । ମେଙ୍ଗେଲ୍ ଯଦି ତା କଥା ନ ଶୁଣେ ତେବେ ସେ ଅନ୍ୟ ଇହୁଦୀମାନଙ୍କ ସହ ଗ୍ୟାସ୍‌ରେ ପ୍ରାଣ ହରାଇବ ବୋଲି କହିଥିଲେ । ଓର୍ଲି ପ୍ରତି ମେଙ୍ଗେଲ୍‌ର ଦୁର୍ବଳତା ଥିଲା । ଅଧିକନ୍ତୁ ଓର୍ଲି ଜଣେ ଜର୍ମାନୀ ନାଗରିକ ଥିଲା । ବହୁ ମୁଲଚାଲ ପରେ ସେ ମୋ ନାଁକୁ ମୃତ୍ୟୁ ତାଲିକାରୁ କାଟି ଦେଇଥିଲେ । ଏଭଳି ଉପାୟରେ ଓର୍ଲି ମୋ' ଜୀବନ ରକ୍ଷା କରିଥିଲେ; ନଚେତ୍ ମୁଁ ଆଜି ପର୍ଯ୍ୟନ୍ତ ବଞ୍ଚି ରହି ନ ଥାନ୍ତି ।''

■■■

– ୧୧ –

# ଏକ ପ୍ଲେଟ୍ ଝୋଳ

ୟୁରାଲ ପାହାଡ଼ିଆ ଅଞ୍ଚଳରୁ ଆସିଥିଲା ସୋନିଆ । ସେ ୧୯୪୩ରୁ ଆଉସ୍‌ଭିତ୍‌ଜ୍‌ରେ ରହୁଥିଲା । ତା ସାଙ୍ଗରେ ଆସିଥିଲେ ଏଗାର ଜଣ ନର୍ସ ଏବଂ ଆଉସ୍‌ଭିତ୍‌ଜ୍‌ରେ ଜଣାଶୁଣା ସର୍ଜନ ଡାକ୍ତର ଲୁବୋ । ସେମାନେ ସମସ୍ତେ ସେହି 'ଏରିଆ'ରେ କେମିତି ରହିପାରିଲେ ମୁଁ ଜାଣେନା । ରଷିୟାନ୍ ବନ୍ଦିନୀମାନେ ଅନ୍ୟମାନଙ୍କ ଠାରୁ ଟିକିଏ ଭିନ୍ନ । ସେମାନେ ବେଶ୍ ଟାଣୁଆ ଓ ସୁଗଠିତ । ସୋନିଆର ହସ ହସ ମୁହଁ । ଭାରି ସୁନ୍ଦର ଝିଅଟି ସେ । ବଡ଼ ଦୟାଳୁ

ମଧ୍ୟ । ସେ ଏତେ ଭଲ ଯେ ବେଳେ ବେଳେ ବଡ଼ ଅସହାୟ ବୋଧ କରୁଥିଲା । ଆଉସ୍‌ଭିଟ୍‌ଜ୍‌ରେ ଅତି ଭଲ ହେବା ବଡ଼ ବିପଦ୍‌ଜନକ । ସେଠାରେ ଗୋଟିଏ କଥା ଅଛି, ''ଆଉସ୍‌ଭିଟ୍‌ଜ୍‌ର ଘୁଷୁରିମାନେ ବାଛି ବାଛି ଭଲ ମଣିଷ ଗୁଡ଼ିକୁ ଖାଇଯାଆନ୍ତି ।''

ସୋନିଆ ଗୋଟିଏ ବ୍ଲକ୍‌ରେ ନର୍ସ କାର୍ଯ୍ୟ କରେ । ଓର୍ଲି ତାକୁ ଜାଣେ ଏବଂ ସମ୍ମାନ ମଧ୍ୟ ଦିଏ । ସୋନିଆ କାହାର ନିନ୍ଦା କରିବା ମୁଁ କେବେ ଶୁଣି ନଥିଲି, ଏପରିକି ଓର୍ଲି ସମ୍ପର୍କରେ ମଧ୍ୟ । ପୁନଶ୍ଚ ଓର୍ଲିର ସାମଗ୍ରିକ ବ୍ୟବହାରର କୌଣସି ମୂଲ୍ୟାୟନ କରିବାକୁ ମଧ୍ୟ ସେ ସମର୍ଥ ହୋଇ ପାରି ନଥିଲା ।

ସୋନିଆ କହେ ''ମୁଁ ଯେତେବେଳେ ପ୍ରଥମେ ଏଠାକୁ ଆସିଲି ଗୋଟିଏ ସପ୍ତାହ ମଧ୍ୟ ଏଠାରେ ତିଷ୍ଠି ପାରିବି ବୋଲି ଆଶା କରିପାରୁ ନଥିଲି । ପ୍ରତି ପଦକ୍ଷେପରେ ମୁଁ ଏଭଳି ଭୟାବହ ପରିସ୍ଥିତିର ସମ୍ମୁଖୀନ ହେଉଥିଲି ଯେ ତାହା ସହ୍ୟ କରିବା ମୋ ପକ୍ଷରେ ସମ୍ଭବ ହେଉନଥିଲା । ଦୁଃଖରେ ପଡ଼ିଥିବା ଲୋକମାନଙ୍କୁ ଯଥାଶକ୍ତି ସାହାଯ୍ୟ କରିବା ମୋ'ର ପ୍ରକୃତି ଥିଲା । କିନ୍ତୁ ଏଠାରେ ମୁଁ ବା କି ସାହାଯ୍ୟ କରିପାରିବି ? ଏଠାରେ ଖାପ ଖୁଆଇ ଚଳିବା ବଡ଼ କଷ୍ଟକର ବୋଧ ହେଲା । କିନ୍ତୁ ଏଠାରେ ପହଞ୍ଚିବା ଦିନଠାରୁ ମୁଁ ଓର୍ଲିକୁ ଖୁବ୍ ପସନ୍ଦ କରୁଥିଲି । ସେହି ଦୁଃଖର ସମୁଦ୍ର ଭିତରେ ବି ସେ ବେଶ୍ ଆତ୍ମପ୍ରତ୍ୟୟ ଓ ଦୃଢ଼ତା ସହକାରେ ବୁଲି ପାରୁଥିଲା । କାହାକୁ ସାହାଯ୍ୟ କରିବାକୁ ହେବ ଓ କାହାକୁ ପରିତ୍ୟାଗ କରିହେବ ସେ ତାହା ନିର୍ଣ୍ଣୟ କରିପାରୁଥିଲା । ସମସ୍ତଙ୍କୁ ତ କଦାପି ସାହାଯ୍ୟ କରିପାରିବ ନାହିଁ । ତେଣୁ ସାହାଯ୍ୟଟା କାହାର ସହାୟକ ହେବ; କିଏ ଉପକୃତ ହେବ; କିଏ ସାହାଯ୍ୟ ଦରକାର କରୁଛି; ଓର୍ଲି ତାହା ନିର୍ଣ୍ଣୟ କରିପାରୁଥିଲା । ସେକଥା ସେ ଜାଣିଥିଲା । କହୁ କହୁ ସୋନିଆ ଟିକେ ଅଟକି ଗଲା, ଯେପରିକି ଠିକ୍‌ରୂପେ ତା' ମନୋଭାବ ପ୍ରକାଶ କରିବା ପାଇଁ ସେ ଶବ୍ଦ ଖୋଜୁଥିଲା ।

ସେହି ବକ୍ତବ୍ୟ ବିରତି ସମୟରେ ମୁଁ ଭାବୁଥିଲି ଦୁଃଖ ଦୁର୍ଦ୍ଦଶାରେ ପଡୁଥିବା ସାଥୀଟିକୁ ସାହାଯ୍ୟ କରିବା ଅପେକ୍ଷା ଅଧିକ ମହନୀୟ କାର୍ଯ୍ୟ ଆଉସ୍‌ଭିଟ୍‌ଜ୍‌ରେ ଆଉ କ'ଣ ବା ଥାଇପାରେ ? ପରମୁହୂର୍ତ୍ତରେ ମୁଁ ପୁନର୍ବାର ଭାବିଲି ''କାହାର ଦୁଃଖ ଦୂର କରାଯିବା ଉଚିତ ବା କାହାର ଯନ୍ତ୍ରଣାକୁ ନିର୍ବିରୋଧ ଛାଡ଼ିଦେବା ବୋଲି ସ୍ଥିର କରିବା କେତେବଡ଼ ନୈତିକ ଅପରାଧ ସତେ ? ଜଣକୁ ମାରିବା ଓ ଆଉ ଜଣକୁ ତାରିବାର ଅଧିକାର ଆମକୁ କିଏବା ଦେଇଛି ? ବଞ୍ଚିବା ପାଇଁ ଆଉସ୍‌ଭିଟ୍‌ଜ୍‌ରେ ଯେଉଁ ଯନ୍ତ୍ରଣାଦାୟକ ସଂଗ୍ରାମ ହେଉଥିଲା, ସେଠାରେ ନୈତିକତା ବା ସାଧୁତାର କୌଣସି ସ୍ଥାନ ନଥିଲା । ବିବେକବାନ୍ ମଣିଷମାନଙ୍କୁ ସେଠାରେ ଅଖୋଜା ଅଲୋଡ଼ା ମରିବାକୁ ହେଉଥିଲା । ଏହା ହିଁ ଥିଲା କନ୍‌ସେନ୍‌ଟ୍ରେସନ୍ କ୍ୟାମ୍ପର ନୂତନ ଚଳଣୀ ।

ସୋନିଆ କହି ଚାଲିଲା, ''ଦୈନିକ ମଧ୍ୟାହ୍ନରେ ଆମେ ରୋଷେଇ ଶାଳକୁ ଯାଉଥିଲୁ, ତା' ତୁମେ ଦେଖିଛ । ରୋଷେଇ ଶାଳ 'ଏରିଆ'ଠାରୁ ବହୁତ ଦୂର । ବାଲ୍‌ଟି ଗୁଡ଼ିକ ମଧ୍ୟ ଖୁବ୍ ଓଜନ । ଫରାସୀ ଓ ପୋଲାଣ୍ଡର ଝିଅମାନେ ସେଠାକୁ ଯାଉଥିଲେ ଓ ୪ ଜଣ ମଧ୍ୟ ବାଲ୍‌ଟିକୁ ଆଣୁଥିଲେ । ଭେରା ଓ ମୁଁ ସେମାନଙ୍କ ସାଙ୍ଗରେ ଆସୁଥିଲୁ । ଆମର ମଧ୍ୟ ଯଥେଷ୍ଟ ଶକ୍ତି ଥିଲା ।

ମଧ୍ୟାହ୍ନ ଭୋଜନ ବେଳେ ବନ୍ଦିନୀମାନେ ଯେତେବେଳେ ଚାରିପଟେ ଘୁରି ବୁଲନ୍ତି ସେତେବେଳେ ସେମାନଙ୍କ ମୁହଁ କେମିତି ଦିଶୁଥିବ ତା' ତୁମେ ଜାଣ । ପ୍ରାୟ ସମସ୍ତେ ନିଜ ନିଜ ଫ୍ରକ୍ ଉପରେ ଫିତା ବାନ୍ଧି ସେଥିରେ ସେମାନଙ୍କ ଝୋଳ ଖିଆ କପ୍ ଝୁଲାଇ ଥାଆନ୍ତି । ତରକାରୀ ବାସନାରେ ସେମାନେ ଭୋକିଲା କୁକୁର ଭଳି ଧାଇଁ ଆସୁଥିଲେ ଓ ଦସ୍ୟୁ ଭଳି ଶିକାର ଉପରେ କୁଦି ପଡୁଥିଲେ ।''

''ସେମାନେ ଆମ ପାଇଁ ଗୋଟେ ଗୋଟେ ମହାକାଳ ଭଳି ଦିଶୁଥିଲେ । ଆମେ ତରକାରୀ ବାଲ୍‌ଟି ଆଣୁଥିବାର ଦେଖିଲେ ସେମାନେ ଆମ ପଛପଟୁ ଝମ୍ପି ପଡୁଥିଲେ । ବାଲ୍‌ଟି ଘୋଡ଼ଣୀକୁ କାଢ଼ି ଆମେ କିଛି କହିବା ପୂର୍ବରୁ ସେମାନେ ନିଜ ନିଜ କପ୍ ବାଲ୍‌ଟି ଭିତରେ ବୁଡ଼େଇ ତରକାରୀ ନେଇ ପଳେଇ ଯାଉଥିଲେ । ଧମକ ଦେଲେ ସେମାନେ ସିନା ପଳାଉଥିଲେ କିନ୍ତୁ ଆଉ ଦଳେ ମାଡ଼ି ଆସୁଥିଲେ । ଆମେ ଯାଇ ବ୍ଲକ୍‌ରେ ପହଞ୍ଚିବା ବେଳକୁ ବାଲ୍‌ଟି ଅଧା ହୋଇ ଯାଉଥିଲା । ମୁଁ ସେମାନଙ୍କ ବିବେକକୁ ଆହ୍ୱାନ କରିବାକୁ ଚେଷ୍ଟା କରୁଥିଲି । ଭୋକିଲା ଲୋକଙ୍କ ମୁହଁରୁ ଖାଦ୍ୟ ଏମିତି କିଏ ଛଡ଼ାଇ ଆଣିପାରିବ ? ଏଭଳି ଅବସ୍ଥାରେ ଆମେ ତା' ପରଦିନ କିପରି ବ୍ଲକ୍‌କୁ ଝୋଳ ବାଲ୍‌ଟି ନେଇ ଯିବୁ ସେକଥା ସମସ୍ୟା ହୋଇପଡୁଥିଲା । ସେମାନ କ୍ଷୁଧାର୍ତ୍ତ— ତାହା ହିଁ ସେମାନଙ୍କର ଏକମାତ୍ର ଯୁକ୍ତି ଥିଲା । ଆମେ ଅଧ ବାଲ୍‌ଟି ଝୋଳ ନେଇ ପହଞ୍ଚିବାର ଅର୍ଥ ଥିଲା ବ୍ଲକ୍‌ରେ ପଡ଼ି ରହିଥିବା ଅସମର୍ଥ ବନ୍ଦିନୀମାନଙ୍କୁ ଭୋକରେ ମାରିବା ।

ଦିନେ ଓର୍ଲି ଆମ ସହ ଝୋଳ ବାଲ୍‌ଟି ଧରି ବ୍ଲକ୍‌କୁ ଗଲେ । ସେ ଆମମାନଙ୍କୁ କହିଲେ ''ଆଉସ୍‌ଭିଜ୍‌ଜ୍‌ରେ ସେଭଳି କାର୍ଯ୍ୟ କିପରି କରାଯିବା ଆବଶ୍ୟକ ତାହା ତୁମମାନଙ୍କୁ ଦେଖାଇ ଦେବି ।''

ଓର୍ଲିଙ୍କୁ କ୍ୟାମ୍ପରେ କିଏ ବା ନ ଜାଣିଥିଲା ? ତାଙ୍କ ଉପସ୍ଥିତିରେ କେହି ବାଲ୍‌ଟି ପାଖକୁ ଆସିବେ ନାହିଁ ବୋଲି ଆମେ ଭାବୁଥିଲୁ । କିନ୍ତୁ କ୍ଷୁଧାର ତାଡ଼ନାକୁ କିଏ ବା ରୋକି ପାରିବ ? ସେମାନେ ଆମକୁ ଚାକି ବସିଥିଲେ । ପ୍ରଥମେ ଦୁଇଜଣ ଯେମିତି ବାଲଟି ଆଡ଼କୁ ଆସିଲେ, ଓର୍ଲି ସେମାନଙ୍କ ଉପରକୁ କୁଦାମାରି ସେମାନଙ୍କ ମୁହଁକୁ ଏମିତି ଶକ୍ତ ମୁଥ ମାରିଲା ଯେ ସେମାନେ ପ୍ରାଣ ଭୟରେ ଦୌଡ଼ି ପଳାଇଗଲେ । ତା' ପରେ

କେହି ଆମ ପାଖ ମାଡ଼ିଲେ ନାହିଁ । ଆମେ ପୂରା ବାଲ୍‌ଟିଏ ଝୋଳ ଧରି ବ୍ଲକ୍‌ରେ ପହଞ୍ଚି ପାରିଲୁ । ସେହି କାର୍ଯ୍ୟ ପାଇଁ ମୁଁ ଓର୍ଲିକୁ କେମିତି ଗାଳି ଦେଇ ପାରିବି, ତାହା ଭାବି ପାରୁ ନଥିଲି । ସେ ଆମକୁ କ'ଣ କହିଲା ଜାଣ ? ସେମାନଙ୍କ ସାଙ୍ଗରେ ଏଭଳି ବ୍ୟବହାର ନ କଲେ କ'ଣ କାମ କରିପାରିବ ? ସେମାନେ ସେୟା ଚାହାନ୍ତି ?'' ସେତେବେଳେ ମୁଁ ଭାବୁଥିଲି, ''ଆହା ବିଚାରୀ ଓର୍ଲି ତୁମେ ଦୃଢ଼ ଭାବରେ ବିଶ୍ୱାସ କରୁଥିଲ ଯେ ମଣିଷ ସହ ବ୍ୟବହାର ଏକାମାତ୍ର ବାଟ - 'ମାଡ଼' ।

■■■

– ୧୨ –

# ଏରିକାଙ୍କ ଲାଲ୍ ତ୍ରିଭୁଜ

ଏରିକା ସ୍ୱେଡ୍‌ର ଜଣେ ଜର୍ମାନ । ତାଙ୍କର ସାର୍ଟରେ ଲେଖାଥିବା ଚାରିଅଙ୍କ ବିଶିଷ୍ଟ ସଂଖ୍ୟାରୁ ଜଣା ଯାଉଥିଲା ଯେ ସେ ଆଉସ୍‌ଭିଦ୍‌ଜକୁ ଆସିଥିବା ପ୍ରଥମ ଦଳ ଇହୁଦୀଙ୍କ ଭିତରୁ ଜଣେ । ସଂଖ୍ୟା ଉପରକୁ ଚିହ୍ନିତ ଥିଲା ଏକ ଲାଲ ତ୍ରିଭୁଜ । ସେହି ଚିହ୍ନର ଅର୍ଥ ହେଲା ଯେ ସେ ଜଣେ ରାଜନୈତିକ ବନ୍ଦୀ । ସେ ଥିଲେ ଜଣେ ପକ୍କା ସନାତନୀ କମ୍ୟୁନିଷ୍ଟ । ହିଟଲର୍ କ୍ଷମତାକୁ ଆସିବା କାଳରୁ ସେ ବନ୍ଦୀ ଜୀବନଯାପନ କରୁଥିଲେ । ୧୯୪୪ ମସିହାରେ ମୁଁ ଯେତେବେଳେ ପ୍ରଥମେ ତାଙ୍କୁ ଦେଖିଲି ସେତେବେଳେ ତାଙ୍କର ବୟସ ହୋଇଥିଲା ୪୦ ବର୍ଷ । ଅନତି ଦୀର୍ଘ ଧୂସର-କେଶୀ ମହିଳାଟି ବେଶ୍ ହାସ୍ୟ ମୁଖର ଥିଲେ ।

ଏରିକା ଓର୍ଲିକୁ ଆଦୌ ଭଲ ପାଉ ନଥିଲେ । ଓର୍ଲିର ମନୋଭାବ ବ୍ୟବହାର ଏବଂ ବିଚିତ୍ର କମ୍ୟୁନିଷ୍ଟ ଚରିତ୍ରକୁ ସେ ସମାଲୋଚନା କରୁଥିଲେ । ସେ ତା'ର ଦୁର୍ବଳତାକୁ ବିରୋଧ କରିବା ସଙ୍ଗେ ସଙ୍ଗେ ନାତ୍‌ସୀ ଆତଙ୍କବାଦୀମାନଙ୍କ ପ୍ରତି ତାଙ୍କର ଆନୁଗତ୍ୟ ଏବଂ ମଣିଷ ପ୍ରତି ସେମାନଙ୍କର ଅମାନବିକ ମାନସିକତାକୁ ମଧ୍ୟ ସେ ଭର୍ତ୍ସନା କରୁଥିଲେ । ସେ କେବଳ ବିଭିନ୍ନ ବିଷୟର ମୂଲ୍ୟାୟନରେ ନୁହେଁ ମଣିଷର ଚରିତ୍ର ମୂଲ୍ୟାୟନରେ ମଧ୍ୟ ଅତ୍ୟନ୍ତ ଦୃଢ଼ତା ଅବଲମ୍ବନ କରୁଥିଲେ । ସେ ଭୁଲି ଯାଉଥିଲେ ଯେ ଓର୍ଲିଙ୍କର ରାଜନୈତିକ ଖଡ଼ିଛୁଆଁ ହେବାବେଳକୁ ତାଙ୍କୁ ୧୮ ବର୍ଷ ହୋଇଥିଲା । କମ୍ୟୁନିଷ୍ଟ ଆନ୍ଦୋଳନରେ ତାଙ୍କର ସମ୍ପୃକ୍ତି ନିଜର ଇଚ୍ଛାରେ ଯେତେଦୂର ହୋଇ ନଥିଲା, ବରଂ ହୋଇଥିଲା ତାଙ୍କର ପିତାମାତା ଦୁହେଁ ଜର୍ମାନୀ କମ୍ୟୁନିଷ୍ଟ ପାର୍ଟିର ନେତା ଥିବାରୁ । ଏରିକା କମ୍ୟୁନିଷ୍ଟ ଆନ୍ଦୋଳନର ଏଜେଣ୍ଟ ଏବଂ କମ୍ରେଡ୍ ଥେଲ୍‌ମାନ୍‌ଙ୍କ ସହକର୍ମୀ ଭାବରେ ଯେତେବେଳେ ଗିରଫ ହେଲେ ସେତେବେଳେ ତାଙ୍କୁ ତିରିଶ ବର୍ଷ ବୟସ ହୋଇଥିଲା ।

ଜଣେ ଜର୍ମାନୀ ନାଗରିକ ଭାବରେ ବହୁଦିନ ଆଗରୁ ଯଦିଓ ଅପେକ୍ଷାକୃତ ସହଜ ଜୀବନଯାପନ କରିପାରିଥାନ୍ତେ, କିନ୍ତୁ ତାହା ହୋଇନଥିଲା । ଏରିକା ଶିବିରର କୌଣସି କର୍ମକର୍ତ୍ତା ହେବାକୁ ମଧ୍ୟ ଇଚ୍ଛା କରି ନଥିଲେ । ସେ ସବୁବେଳେ କହୁଥିଲେ ଯେ ''ଠିକ୍ ସେହି କାରଣରୁ ହିଁ ଜର୍ମାନୀର ଦଳିତ ଶ୍ରେଣୀର ଦୁର୍ଭାଗ୍ୟ ସହ ମୁଁ ନିଜକୁ ମିଶାଇ ଦେବାକୁ ଚାହେ ।''

ଏରିକାଙ୍କୁ ଯେ ମୁଁ ଖୁବ୍ ପସନ୍ଦ କରୁଥିଲି ସେକଥା ମୁଁ ସ୍ୱୀକାର କରୁଅଛି । ଆଉସ୍‌ଭିଡ୍‌ଜ୍‌ର ନିଷ୍ଠୁର ଜୀବନ ଭିତରେ ତାଙ୍କର ବେସାଲିସ୍ କମ୍ୟୁନିଷ୍ଟ ଚରିତ୍ର ଏବଂ ଆଦର୍ଶ ନିଷ୍ଠା ଯେଉଁ ଉଜ୍ଜ୍ୱଳ ଆଲୋକ ବିକୀରଣ କରୁଥିଲା ସେଥିରେ ମୁଁ ମୁଗ୍ଧ ହୋଇଯାଇଥିଲି । ଥରେ ଅକ୍ଷମଶାଳାର ଅନ୍ଧକାର ଭିତରେ ଆମେ ବସି ଓର୍ଲି ବିଷୟରେ ଆଲୋଚନା କରୁଥିଲୁ ।

ଏରିକା କହୁଥିଲା, ଶୁଣ ମୁଁ ତୁମକୁ ଗୋଟିଏ ଘଟଣାର ବର୍ଣ୍ଣନା ଶୁଣାଇବି । ଯେଉଁଥିରୁ ତୁମେ ବୁଝିପାରିବ ମୁଁ କାହିଁକି ଓର୍ଲିକୁ ଭଲପାଇ ପାରେନା । ବର୍ଷକ ତଳେ ବ୍ଲକ୍‌ରେ ଗୋଟାଏ ହୃଦୟ ବିଦାରକ 'ବଛାବଛି' ହୋଇଥିଲା । ସେଠାରେ ଜଣେ ବନ୍ଦିନୀ ଥିଲେ ଯେ କି ମୋ'ର ଅନ୍ୟତମ ବନ୍ଧୁ । ସେ ଜଣେ ଜର୍ମାନ୍ ଇହୁଦୀ । ଅଳ୍ପଦିନ ପୂର୍ବରୁ ସେ ନିମୋନିଆରୁ ଆରୋଗ୍ୟ ଲାଭ କରିଥିବାରୁ ବଡ଼ ଦୁର୍ବଳ ଥିଲେ । କିନ୍ତୁ ଡାକ୍ତର ମେଙ୍ଗେଲ୍ ତାଙ୍କୁ ଗ୍ୟାସ୍ ପାଇଁ ତାଲିକା ଭୁକ୍ତ କରି ଦେଇଥିଲା । ମୁଁ ସେଥିରେ ଭୀଷଣ ବିଚଳିତ ହୋଇ ପଡ଼ିଲି । ଜଣେ ଜର୍ମାନ୍ ନାଗରିକ ଭାବରେ ମୋର ଯେଉଁ ସ୍ୱତନ୍ତ୍ର ସ୍ଥିତି ଥିଲା- ଏହି ଗୋଟିଏ ମାତ୍ର ଘଟଣାରେ ମୁଁ ତାହାର ସୁଯୋଗ ନେଇ ମୋତେ ସାହାଯ୍ୟ କରିବା ପାଇଁ ଡାକ୍ତର ମେଙ୍ଗେଲ୍‌କୁ ଅନୁରୋଧ କଲି । ଏହି ଗୋଟିଏ କାର୍ଯ୍ୟ ପାଇଁ ମୋତେ କେତେ ମୂଲ୍ୟ ଦେବାକୁ ପଡ଼ିଲା ତାହା ତୁମେ କଳ୍ପନା କରିପାରିବନି । ମେଙ୍ଗେଲ୍ ମୋତେ ନମ୍ରତା ସହକାରେ ଉତ୍ତର ଦେଇ କହିଲା ''ଆସନ୍ତା କାଲି ଦଣ୍ଡିତାମାନଙ୍କୁ ଗ୍ୟାସ୍‌କୁ ନେଲାବେଳେ ତୁମେ ତୁମର ବନ୍ଧୁଙ୍କୁ ମୋତେ ଚିହ୍ନାଇ ଦେବ । ମୁଁ ନିଜେ ସେ ବିଷୟ ଦେଖିନେବି ଓ ତୁମ ବନ୍ଧୁଙ୍କୁ 'ଦଣ୍ଡିତା'ମାନଙ୍କ ଦଳରୁ ଅଲଗା କରି ସାଙ୍ଗରେ ନେଇଯିବି ।'' ତା'ର ସେଭଳି ଉତ୍ତରରେ ମୁଁ ବେଶ୍ ଉତ୍ତେଜନା ଅନୁଭବ କଲି । କିନ୍ତୁ ସତ କହୁଛି, ମେଙ୍ଗେଲ୍‌ର ସେହି ଆପାତ ମଧୁର ପ୍ରତିଶ୍ରୁତି ପଛରେ କୌଣସି ହୀନ ଦୂରଭିସନ୍ଧି ଥିବା ମଧ୍ୟ ସନ୍ଦେହ କରୁଥିଲି । ମୁଁ ସେହି ନୃଶଂସ ଅପରାଧର ଏତେ ନିକଟକୁ ଚାଲି ଆସିବି ବୋଲି କେବେ ହେଲେ କଳ୍ପନା କରି ନଥିଲି । କିନ୍ତୁ ମୋତେ ସେଠାକୁ ଯିବାକୁ ପଡ଼ିଲା, କାରଣ ଗୋଟାଏ ମଣିଷର ଜୀବନକୁ ରକ୍ଷା କରିବାର ପ୍ରଶ୍ନ ଥିଲା ।

''ସେଇଟା ଜୁଲାଇ ମାସ ହୋଇଥିଲେ ମଧ୍ୟ ସନ୍ଧ୍ୟା ବେଶ୍ ଶୀତଳ ଥିଲା ।

ମାଲ୍‌ବାହୀ ଗାଡ଼ି ଗୁଡ଼ାକ 'ଏରିଆ'କୁ ପ୍ରବେଶ କଲା । ସେ ଗୁଡ଼ିକ ବ୍ଲକ୍ ସାମନାରେ ଛିଡ଼ା ହୋଇଗଲା । ମେଙ୍ଗେଲ୍ ସେଠାରେ ଛିଡ଼ା ହୋଇଗଲା । ତାହାର ସାମାନ୍ୟ ଦୂରରେ ଓର୍ଲି । ନାତ୍‌ସୀ ଆତଙ୍କବାଦୀମାନେ ଗୋଟି ଗୋଟି କରି ନାଁ ଡାକିଲେ ଏବଂ ବନ୍ଦିନୀମାନେ ଛାୟା ପ୍ରାୟ ନୀରବତା ଭିତରେ ଗାଡ଼ି ଭିତରେ ପ୍ରବେଶ କଲେ । ଚିନ୍ତାକର ସେହି ଘୃଣ୍ୟ ଅପରାଧର ଓର୍ଲି ମଧ୍ୟ ଜଣେ ସହଯୋଗୀ । କଙ୍କାଳ ଓ ଚର୍ମସାର ଜଣେ ଯୁବତୀ ଖସିଯିବାକୁ ଚେଷ୍ଟା କରିବାରୁ ତାକୁ ଗୋଡ଼େଇ ଗୋଡ଼େଇ ଧରି ଗାଡ଼ିରେ କିଏ ଭର୍ତ୍ତି କଲା ଜାଣ ? ସେଇ ଓର୍ଲି । ମୁଁ ଧୈର୍ଯ୍ୟ ହରାଇ ଓର୍ଲି ଉଦ୍ଦେଶ୍ୟରେ ଛେପ ପୋପାଡ଼ିଲି ।''

''ମୁଁ ଯେମିତି ସମ୍ମୋହିତ ପ୍ରାୟ ଗୋଟିଏ ସ୍ଥାନରେ ଛିଡ଼ା ହୋଇ ରହିଥିଲି । ପାଦେ ଚାଲିବାକୁ ମଧ୍ୟ ଅସମର୍ଥ ଥିଲି । ଡାକ୍ତର ମେଙ୍ଗେଲ୍ ମୋ' ପାଖକୁ ଚାଲି ଆସି କହିଲା । ''ତୁମେ ଗାଡ଼ି ପାଖରେ ଛିଡ଼ା ହୁଅ ଏବଂ ତୁମର ବନ୍ଧୁକୁ ମୋତେ ଚିହ୍ନାଇ ଦିଅ ।'' ସେହି ଭୟାବହ ଦୃଶ୍ୟ; ବିଶେଷତଃ ମୃତ୍ୟୁ ସମ୍ମୁଖରେ 'ମନୁଷ୍ୟ'ର ଉଦାସୀନତାକୁ ମୁଁ ଯେ ସ୍ୱଚକ୍ଷୁରେ ଦେଖେ ତାହା ମେଙ୍ଗେଲ୍‌ର ଅଭିସନ୍ଧି ଥିଲା । ଯେଉଁ ବନ୍ଧୁଜଣକ ପାଇଁ ମୁଁ ସେହି ଅସହ୍ୟ ମାନସିକ ନିର୍ଯ୍ୟାତନା ଭୋଗୁଥିଲି, ସେହି ବନ୍ଧୁଙ୍କୁ ଦେଖିବା ମାତ୍ରେ ମୁଁ ତାଙ୍କ ପାଖକୁ କ୍ଷିପ୍ର ଗତିରେ ଆଗେଇଗଲି । ମେଙ୍ଗେଲ୍ ତାକୁ ପାଖକୁ ଡାକି ନେଲେ ଏବଂ ପୋଷାକ ପତ୍ରକୁ ଓହ୍ଲାଇ ଗୋଟିଏ କଡ଼କୁ ଛିଡ଼ା ହେବାକୁ ନିର୍ଦ୍ଦେଶ ଦେଲେ । ମୁଁ ତା' ପାଖରେ ଛିଡ଼ା ହେଲି । ଗାଡ଼ି ବନ୍ଦିନୀମାନଙ୍କ ଦ୍ୱାରା ଭର୍ତ୍ତି ହୋଇଗଲା । ଦରଜା ବନ୍ଦ ହେବାର ଠିକ୍ ପୂର୍ବ ମୁହୂର୍ତ୍ତରେ ମେଙ୍ଗେଲ୍ ମୋ'ର ବନ୍ଧୁକୁ ଜୋର କରି ଗାଡ଼ି ଭିତରକୁ ଠେଲି ଦେଇ ଦରଜାକୁ ବନ୍ଦ କରିଦେଲା । ମୁଁ ତାହା ଦେଖି ହତବାକ୍ ହୋଇଗଲି । ମୋ ପାଦ ସେଠାରେ ପୂରା ଲାଖିଗଲା । ମେଙ୍ଗେଲ୍ ମୋ ପାଖକୁ ଆସି କ'ଣ କହିଲା ଜାଣ ? ''ବୁଝି ପାରିଲ ତ ?'' ମୁଁ ତା' ସ୍ୱାର୍ଥରେ ଏପରି କଲି, କାରଣ ସେ ଏତେ ଦୁର୍ବଳ ହୋଇ ଯାଇଛି ଯେ ବଞ୍ଚିବା ରହିବାଟା କଷ୍ଟ । କାହିଁକି ବୃଥାରେ କଷ୍ଟ ଗୁଡ଼ାକ ଭୋଗିଥାନ୍ତା ।'' ମୁଁ ଯେତେବେଳେ ଉପଲବ୍ଧି କଲି ଯେ ପ୍ରତି 'ବଛାବଛି' ସମୟରେ ଓ ମରଣ ଶୋଭାଯାତ୍ରା ବେଳେ ଓର୍ଲି ଅବଶ୍ୟ ସେଠାରେ ଉପସ୍ଥିତ ରହୁଥିଲା ତାହା ମୋତେ ଭୀଷଣ ଭାବରେ ମାନସିକ ଆଘାତ ଦେଉଥିଲା ।

''ପରଦିନ ମୁଁ ମୋର ବନ୍ଧୁମାନଙ୍କ ଆଗରେ ସେହି ଘଟଣାଟିର ଅବତାରଣା କଲାବେଳେ ସେମାନେ କହିଲେ, ''ସେହି ଓର୍ଲି ଯୋଗୁଁ ଗତକାଲି ବହୁ କମ୍ରେଡ୍ ନିଶ୍ଚିତ ମୃତ୍ୟୁ ମୁଖରୁ ବଞ୍ଚି ଯାଇଛନ୍ତି ।'' ସେ କେତେକଙ୍କୁ ମରଣ ମୁହଁରୁ ରକ୍ଷା କରି ପୁଣି କେତେକଙ୍କୁ ମରଣ ମୁହଁକୁ ଠେଲିଦେଇପାରେ କିପରି କେଜାଣି ?''

■■■

- ୧୩ -

# ଏକ ବିଚିତ୍ର 'ରୋଲ୍‌କଲ୍'

ଆମ ଏରିଆରେ କେବେହେଲେ 'ରୋଲ୍‌କଲ୍' (ହାଜିରା) ହୁଏ ନାହିଁ । କିନ୍ତୁ ହସ୍‌ପିଟାଲ ତାରବାଡ଼ ଆରପଟେ ସକାଳେ ସନ୍ଧ୍ୟାରେ ହାଜିରା ନିଆଯାଏ ବୋଲି ଶୁଣୁଁ । ସେମାନଙ୍କ ଭଳି ଆମ୍ଭମାନଙ୍କୁ ଥଣ୍ଡା ଓ ବର୍ଷା ଭିତରେ ଘଣ୍ଟା ଘଣ୍ଟା ଧରି ଛିଡ଼ା ହେବାକୁ ପଡୁ ନଥିବାରୁ ଆମେ ବରଂ ଖୁସି ଥାଉ । କିନ୍ତୁ ଯେତେବେଳେ ଦିନେ ଓ୍ୟାର୍ଡେନ୍ ଆମକୁ କହିଦେଲା ଯେ ଆମର ମଧ 'ରୋଲ୍‌କଲ୍' ହେବ ଏବଂ ସେଥିରେ ଡାକ୍ତର ନର୍ସ ଓ ଅନ୍ୟାନ୍ୟ କର୍ମଚାରୀମାନେ ତଥା ଆମେ ସମସ୍ତଙ୍କୁ ଅକ୍ଷମଶାଳା ସମ୍ମୁଖରେ ଏକାଠି ହେବାକୁ ପଡ଼ିବ, ସେଥିରେ ଆମେମାନେ ବିସ୍ମୟାଭିଭୂତ ହୋଇଗଲୁ ।

ଆଉସ୍‌ଭିଜ୍‌ରେ ଆମର ଦୈନନ୍ଦିନ ରୁଟିନ୍‌ରେ କୌଣସି ପରିବର୍ତ୍ତନ ହେଲେ ଆମେ ଆତଙ୍କିତ ହୋଇ ପଡୁଥିଲୁ । ଆମେ ଅଭିଜ୍ଞତାରୁ ଜାଣିଥିଲୁ ଯେ କୌଣସି ପ୍ରକାର ପରିବର୍ତ୍ତନ ଆମ ପାଇଁ ମଙ୍ଗଳକର ହୁଏ ନାହିଁ, ତେଣୁ ରୁଟିନ୍‌ର ସେହି ବ୍ୟତିକ୍ରମକୁ ଆମେ ଆତଙ୍କିତ ହୋଇ ଗ୍ରହଣ କରୁଥିଲୁ । ଶହ ଶହ ଅନ୍ତେବାସିନୀ ଇହୁଦୀ, ଆର୍ଯ୍ୟ ବ୍ଲକ୍‌ର କାର୍ଯ୍ୟରତ ସମସ୍ତ ଅଧିକାରୀ ଓ କର୍ମକର୍ତ୍ତା ଅକ୍ଷମଶାଳା ସମ୍ମୁଖରେ ଏକତ୍ରିତ ହେଲେ । ଗୋଟାଏ ପାଖରେ ଡାକ୍ତର ଓ ନର୍ସମାନେ ଏବଂ ଅନ୍ୟ ପାଖରେ ଓ୍ୱାର୍ଡେନ୍ ଓ ସର୍ଦ୍ଦାର ପ୍ରଭୃତି କର୍ମକର୍ତ୍ତାଗଣ ।

ଓ୍ୱାର୍ଡେନ୍ ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ ଆମ୍ଭେମାନେ ଛିଡ଼ା ହୋଇ ପଡ଼ିଲୁ ଏବଂ ଅଷ୍ଟାକୁ ସଲଖ କରି ଆଟେନ୍‌ସନ୍ ମୁଦ୍ରାରେ ନାତ୍‌ସୀ ଆତଙ୍କବାଦୀମାନଙ୍କ ଆସିବାକୁ ଅପେକ୍ଷା କରି ରହିଲୁ । ଓର୍ଲି ଧୀର ପଦକ୍ଷେପରେ ପ୍ରଥମ ଧାଡ଼ିକୁ ଚାଲି ଆସିଲା । ସେ ଏକା । ମୁଁ ପ୍ରଥମ ଥର ପାଇଁ ଓର୍ଲିକୁ ଏତେ ନିକଟରେ ଦେଖିବାକୁ ପାଇଲି । ସେ ବେଶ୍ ପତଳା; କିନ୍ତୁ ଦୁର୍ବଳ ନୁହେଁ- ମଜବୁତ୍ । ସେ ପ୍ୟାଣ୍ଟ୍ ଏବଂ ସୋଟିଂ ଜ୍ୟାକେଟ୍ ପିନ୍ଧିଥାଏ । ତା'ର ବାଦାମୀ ରଙ୍ଗର କେଶ ପୁରୁଷ ଷ୍ଟାଇଲ୍‌ରେ କଟାଯାଇଥାଏ । ସେ ନତ ମସ୍ତକରେ ଲାଇନ୍‌ର ଶେଷ ପର୍ଯ୍ୟନ୍ତ ଚାଲିଗଲା ଏବଂ ପକେଟ୍‌ରୁ ଗୋଟେ କାର୍ଡ ବାହାର କଲା ।

ସେ କହିଲା ''ତୁମେମାନେ ଅଯଥା ଆତଙ୍କିତ ହୁଅ ନାହିଁ । କାରଣ ଏଠାରେ କୌଣସି ହାଜିରା ନିଆଯିବ ନାହିଁ । 'ଏରିଆ'ର କର୍ମକର୍ତ୍ତାମାନେ ଡାକ୍ତର ମେଙ୍ଗେଲ୍ ନିକଟରେ ମୋ' ବିରୁଦ୍ଧରେ ଅଭିଯୋଗ କରିଛନ୍ତି । ଅଭିଯୋଗରେ କୁହାଯାଇଛି ଯେ ''ଆମର କ୍ୟାମ୍ପ୍ ଲିଡର୍ ଓର୍ଲି ତାଙ୍କ ଚତୁଃପାର୍ଶ୍ୱରେ କମ୍ୟୁନିଷ୍ଟ ଇହୁଦୀମାନଙ୍କୁ ନେଇ ଚାଲୁଛନ୍ତି । 'ଏରିଆ'ର ସମସ୍ତ ଦାୟିତ୍ୱ ସେ କେବଳ କମ୍ୟୁନିଷ୍ଟମାନଙ୍କୁ ଦେଉଛନ୍ତି ।

ଏଭଳି ଅବସ୍ଥା ଆଉ ଚାଲିବା କିମ୍ବା ଓର୍ଲିଙ୍କୁ ସେହି ଦାୟିତ୍ୱ ଦେବା ଆମେ ଚାହୁଁନା ।'' ଡାକ୍ତର ମେଙ୍ଗେଲ୍ ସେ ଚିଠିକୁ ନେଇ କ'ଣ କଲେ ତାହା ଜାଣିବା ପାଇଁ ତୁମେମାନେ କୌତୂହଳୀ ହୋଇପାର । ସେ ଚିଠିଟି ମୋତେ ଦେଇଛନ୍ତି ଓ ଅଭିଯୋଗର ସତ୍ୟତା ସମ୍ପର୍କରେ ଜାଣିବାକୁ ଚାହିଁଛନ୍ତି । ମୁଁ ତାଙ୍କୁ କହିଛି ଯେ ମୁଁ ଜଣେ କମ୍ୟୁନିଷ୍ଟ । ତେଣୁ କୌଣସି ପତିତା ବା ଗଣିକାମାନଙ୍କର ବନ୍ଧୁ ହେବା ମୋ' ପକ୍ଷରେ ଅସମ୍ଭବ । ଡାକ୍ତର ମେଙ୍ଗେଲ୍ ଅବଶ୍ୟ ସେହି ଅଭିଯୋଗ ପତ୍ରକୁ ଚିରିଦେବାକୁ ମୋତେ କହିଥିଲେ କିନ୍ତୁ ମୁଁ ସେଇଟି ତୁମମାନଙ୍କୁ ଦେଖାଇବା ପାଇଁ ରଖିଥିଲି । ବର୍ତ୍ତମାନ ମୁଁ ତାକୁ ଚିରି ଦେଉଛି । କିନ୍ତୁ ଯେଉଁମାନେ ଏହି ଅଭିଯୋଗ ପତ୍ର ଲେଖିଛନ୍ତି, ସେମାନଙ୍କୁ ମୁଁ ପଚାରୁଛି, ''ଡାକ୍ତର ମେଙ୍ଗେଲ୍ ପାଖକୁ ଏଭଳି ଅଭିଯୋଗ ପତ୍ର ଲେଖିବା ପାଇଁ ତୁମମାନଙ୍କୁ ଲଜ୍ଜାବୋଧ ହେଲା ନାହିଁ ? ଜଣେ ଜର୍ମାନ୍ ନାଗରିକ ଭାବେ ମୁଁ ତୁମମାନଙ୍କ ପାଇଁ ଅତ୍ୟନ୍ତ ଲଜ୍ଜିତ ।''

ନୀରବରେ ଆମ୍ଭେମାନେ ବ୍ଲକ୍‌କୁ ଫେରିଲୁ ''ଓର୍ଲି କି କିସମର ମଣିଷ ?''

■■■

## - ୧୪ -

# ମରଣ ଶିବିର

ମାତ୍ର ଦୁଇଥର ଆଘାତ ଦେଇ ମଣିଷକୁ ମାରି ଦେବାରେ ନାତ୍‌ସୀ ଆତଙ୍କବାଦୀ ବାହିନୀରେ ରୋଲକଲ୍ ଅଫିସର 'ଟାଉବେ'ର ଆଉସ୍‌ଭିତ୍‌ଜ୍‌ରେ ଖୁବ୍ ନାଁ ଥିଲା । ମୁଣ୍ଡରେ ଗୋଟିଏ ଆଘାତ ଦେଇ ସଂଜ୍ଞାହୀନ କରି ପକାଇ ପରେ ତା' ଗଳାକୁ ବୁଟ୍‌ରେ ମରିବା ପର୍ଯ୍ୟନ୍ତ ଚାପି ଧରେ, ବେଶ୍ ଏତିକି । ମୁଁ ଜୁଙ୍ଗାଙ୍ଗ ବ୍ଲକ୍‌ରେ ତା' ଦ୍ୱାରା ହୋଇଥିବା ସେଭଳି ହତ୍ୟାକାଣ୍ଡକୁ ସ୍ୱଚକ୍ଷୁରେ ଦେଖିଥିବାର ମନେ ଅଛି ।

ଥରେ ସନ୍ଧ୍ୟାରେ ଟାଉବେ ଆମ ବ୍ଲକ୍‌ର 'ରୋଲ୍‌କଲ୍' ଦାୟିତ୍ୱରେ ଥିଲା । ହିସାବରେ ଦେଖାଗଲା ଯେ ଜଣେ ଲୋକ କମ୍ ଥିଲା । ନିରୁଦ୍ଦିଷ୍ଟ ମହିଳାକୁ ଖୋଜି ବାହାର କରିବାକୁ ସର୍ଦ୍ଦାରକୁ ପଠାଇ ଦିଆଗଲା । ମିଳିବା ପରେ ଯେ ତା' ଅବସ୍ଥା କ'ଣ ହେବ, ସେକଥା ଭାବି ମୁଁ ଥରିବାକୁ ଲାଗିଲି । ସେ ମହିଳା ଜଣକ ପାଇଖାନା ଭିତରେ ଥିବାର ଜଣାଗଲା । ତାକୁ ରକ୍ତ-ଆମାଶୟ ହେଉଥିବାରୁ ସେ ବିଚାରି ସେଠାରୁ ଆସି ପାରୁ ନଥିଲା । ସେ ଆଦୌ ଜାଣି ନଥିଲା ଯେ ସେ ସେହି କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପ ରୂପୀ ବିରାଟ ମେସିନ୍‌ର ଏମିତି ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଅଂଶ (ପାର୍ଟ) ଯେ ତା' ଅଭାବରେ 'ରୋଲ୍‌କଲ୍' ଅଟକିଯିବ । ତେଣୁ ତାକୁ 'ରୋଲ୍‌କଲ୍'ରେ ଉପସ୍ଥିତ ରହିବାକୁ ହେବ ଏବଂ ସେଥିପାଇଁ

ଦରକାର ହେଲେ ସେଠାକୁ ଘୋଷାଡ଼ି ଆଣିବାକୁ ପଡ଼ିବ । ସେଥିରେ ସେ ମରୁ ବା ବଞ୍ଚୁ ସେକଥା ଗୌଣ । ସ ବ ତାକୁ ଆଣିବା ବେଳକୁ ସେ ଭୟରେ ଅଧାପ୍ରାଣ ହୋଇଯାଇଥିଲା । ଟା ବ ଧିରେ ଧିରେ ତା' ନିକଟରେ ପହଞ୍ଚିଗଲା ଏବଂ ତା'ର ଚିରାଚରିତ କୌଶଳରେ ତାକୁ ଗୋଟାଏ ମୁହୂର୍ତ୍ତରେ ଶେଷ କରିଦେଲା । ତା' ପ୍ରାଣ ନେବାକୁ 'ଟାଉବେ'କୁ ମାତ୍ର ପାଞ୍ଚ ସେକେଣ୍ଡ ସମୟ ଲାଗିଲା । ସେହି ପ୍ରାଣଦଣ୍ଡ କାର୍ଯ୍ୟ ସମାପ୍ତ ହେବାପରେ ଆମ୍ଭମାନଙ୍କୁ ନିଜ ନିଜ ବେଡ୍‌କୁ ଫେରିଯିବା ପାଇଁ ନିର୍ଦ୍ଦେଶ ଦିଆଗଲା । ସମସ୍ତେ ଉପସ୍ଥିତ ଥିବାରୁ ହାଜିରା କାମ ମଧ୍ୟ ଶେଷ ହୋଇଥିଲା ।

୧୯୪୧ରେ ସ୍ଲୋଭାକିଆରୁ ଆସିଥିବା ପ୍ରଥମ ଦଳ ବନ୍ଦିନୀମାନଙ୍କ ମଧ୍ୟରୁ ଶିଲା ପାଖରେ ଟାଉବେ କେଉଁ ବିଶେଷ ଗୁଣ ଆବିଷ୍କାର କରିଥିଲା କେଜାଣି ତାକୁ ୨୫ ନମ୍ବର ମରଣ ବ୍ଲକ୍‌ର ୱାର୍ଡେନ୍ କରି ଦେଲା । ଏହି ପ୍ରଶ୍ନ ମୁଁ ବାରମ୍ବାର ପଚାରିଛି । କିନ୍ତୁ କାହାଠୁ ଉତ୍ତର ପାଇ ନଥିଲି । ଶେଷରେ ବ୍ରାଟିସ୍ଲାଭାରୁ ଆସିଥିବା ଡାକ୍ତର ମାନ୍‌ସୀ ଓ ନର୍ସ ରୋଜିନା ମୋତେ ଶିଲା ସମ୍ପର୍କରେ ନିମ୍ନଲିଖିତ କାହାଣୀଟି କହିଥିଲେ । ମୁଁ ସେ ଦୁଇଜଣଙ୍କୁ ପଚାରିଲି, ''ଟାଉବେ ଶୀଲା ପାଖରେ ନିଶ୍ଚୟ କୌଣସି ଚମତ୍କାର ଗୁଣ ଲକ୍ଷ୍ୟ କରିଥିଲା, ଯାହାକି ତାକୁ ଅନ୍ୟ ବନ୍ଦିନୀମାନଙ୍କ ଠାରୁ ସ୍ୱତନ୍ତ୍ର ବୋଲି ଚିହ୍ନାଇ ଦେଲା ।''

ମାନସୀ ଏବଂ ରୋଜିନା କହିଲେ, ''ନା, ନା ସେମିତି କିଛି ନୁହେଁ । ସେ ପ୍ରଥମେ ଯେତେବେଳେ କ୍ୟାମ୍ପକୁ ଆସିଲା ତାର ବୟସ ପନ୍ଦର ଷୋଳ ହୋଇଥିଲା ଏବଂ ସେପର୍ଯ୍ୟନ୍ତ ସେ ତା'ର ସ୍କୁଲ୍ ପୋଷାକ ପିନ୍ଧୁଥିଲା । ଚେହେରା ପତଳା, ଅଧିକ ଡେଙ୍ଗା ନଥିଲା । କିନ୍ତୁ ଚେହେରାଟି ବେଶ୍ ସୁନ୍ଦର । ଏକ ସମ୍ଭ୍ରାନ୍ତ ମଧ୍ୟବିତ୍ତ ପରିବାରର ଝିଅଟି ସେ । ବେଶ୍ ଧର୍ମପ୍ରାଣ ଓ ସମ୍ମାନାସ୍ପଦ ପରିବାରର ସେ ଏକମାତ୍ର ସନ୍ତାନ ଥିଲା । ଗଣାଗଣି ବେଳେ ଟାଉବେ ଶିଲାକୁ ତାହା ପାଖରେ ଛିଡ଼ା ହେବାକୁ କହିଲା । ସେ ପର୍ଯ୍ୟନ୍ତ ସେ ଗୋଟିଏ ସାଧାରଣ ବାଳିକା ଭଳି ରହିଥିଲା ଏବଂ ସେଠାରେ ଯାହା ଘଟୁଥିଲା ତାକୁ ଦେଖି ସେ ଆମଭଳି ଆତଙ୍କିତ ଅବସ୍ଥାରେ ମଧ୍ୟ ଥିଲା ।''

ମାନ୍‌ସୀ କହି ଚାଲିଲା, ''ଟାଉବେ ଶୀଲା ଭଳି ଗୋଟିଏ ଶାନ୍ତଶିଷ୍ଟ ପିଲାକୁ କେମିତି ଜଣେ ପକ୍କା ଅପରାଧିନୀରେ ପରିଣତ କଲା ସେକଥା ଶୁଣ । ହାଜିରା ବେଳେ ସେ ତାକୁ ବାଛି ନେଲା । ସେଦିନ ଆମ ସମସ୍ତ ଜୁଙ୍ଗାଙ୍ଗୀ ଭଳି ସେ ମଧ୍ୟ ଛିନ୍ନ ବସ୍ତ୍ର ପରିଧାନ କରିଥିଲା, ଲଣ୍ଡା ମୁଣ୍ଡ ସହିତ ତା' ପାଦରେ ମଧ୍ୟ କାଠ ଜୋତା ଥିଲା । କିନ୍ତୁ ସେ ଦିନ ରାତିରେ ସେ ଆଉ ବ୍ଲକ୍‌କୁ ଫେରି ନଥିଲା । ତା' ଭାଗ୍ୟରେ କ'ଣ ହୋଇଥିବ ଭାବି ଆମେ ଅତ୍ୟନ୍ତ ବିବ୍ରତ ହୋଇପଡ଼ିଥିଲୁ । ସେମାନେ ତା'କୁ କୁଆଡ଼କୁ ନେଲେ, କ'ଣ କଲେ, ଆମେ କିଛି ଜାଣି ପାରି ନଥିଲୁ । ଆମେ ସମସ୍ତେ ଜୁଙ୍ଗାଙ୍ଗ- ନୂତନ ଆଗନ୍ତୁକ

ହୋଇଥିବାରୁ କାହାଠାରୁ କୌଣସି ସମ୍ବାଦ ସଂଗ୍ରହ କରିବା ଆମ ପକ୍ଷରେ ସମ୍ଭବ ନ ଥିଲା । କାରଣ ପ୍ରଥମ କେତେମାସ ଆମ ଭିତରେ କୌଣସି ସଙ୍ଗଠନ ବା ଯୋଗାଯୋଗ ବ୍ୟବସ୍ଥା ହୋଇ ପାରି ନଥିଲା ।''

''କେତେଦିନ ପର୍ଯ୍ୟନ୍ତ ଶୀଲାର କୌଣସି ପତ୍ତା ନଥିଲା । ସେ ତ ଆମ ବ୍ଲକ୍‌ରେ ନଥିଲା, ଆମେ ଧରି ନେଇଥିଲୁ ଯେ ଶୀଲା ଆଉ ଜୀବନରେ ନ ଥିଲା । ତାହା ବ୍ୟତୀତ ଅନ୍ୟ କିଛି ଆମେ ଭାବି ପାରୁ ନଥିଲୁ । ଆମେ ଆଉସ୍‌ଭିତ୍‌ଜ୍‌ରେ ପହଞ୍ଚିବାର ଅଳ୍ପ କେଇ ସପ୍ତାହ ଭିତରେ ଗ୍ୟାସ୍ ପାଇଁ ପ୍ରଥମ 'ବଛାବଛି' ଆରମ୍ଭ ହେଲା । ସନ୍ତସନ୍ତିଆ ମାଟିରେ ବିପଦ୍‌ଜନକ କାର୍ଯ୍ୟ । ପାନୀୟ ଜଳର ଘୋର ଅଭାବ । କ୍ଷୁଧା ଓ ବ୍ୟାଧି ଖୁବ୍ ଟାଣୁଆ-ବଳୁଆ ଲୋକଙ୍କୁ ମଧ ଶେଷ କରି ଦେଉଥିଲା । କେଡ଼େ ସୁନ୍ଦର ଦିଶୁଥିବା ଯୁବତୀ ଝିଅଗୁଡ଼ାକ ଏଠାରେ ପହଞ୍ଚିବାର କେଇଟା ଦିନ ଭିତରେ କାମ କରି ଏକାବେଳେକେ କଙ୍କାଳସାର ହୋଇଗଲେ । 'ମରଣ ବ୍ଲକ୍' ସେତେବେଳେ ନୂଆ କରି ତିଆରି ହେଉଥାଏ । ଗ୍ୟାସ୍ ଚ୍ୟାମ୍ବର୍, ଶବଚୁଲ୍ଲୀ (Crematoria) ଓ ମାଲଖାନା (Effecktenkamar) ପ୍ରଭୃତି ବନ୍ଦିନୀମାନଙ୍କ ଦ୍ୱାରା ତିଆରି ହେଉଥିଲା । ଯେଉଁମାନେ କଠିନ କାର୍ଯ୍ୟ କରିବାକୁ ଅସମର୍ଥ ଥିଲେ ସେମାନଙ୍କୁ ମରିବାକୁ ହେଉଥିଲା । ସେତେବେଳେ 'ରୋଲ୍‌କଲ୍' ହେଲେ ହିଁ 'ବଛାବଛି' ହୋଇଯାଉଥିଲା । କାରଣ ଗ୍ୟାସ୍ ଚ୍ୟାମ୍ବରଂ (ମରଣଯନ୍ତା)ଗୁଡ଼ିକ ସେ ପର୍ଯ୍ୟନ୍ତ କର୍ମକ୍ଷମ ହୋଇନଥିଲା । ୧୯୪୧ରେ ଶରତ ଋତୁରେ ପ୍ରଥମ 'ବଛାବଛି'ର ସେହି ଦୁର୍ଦ୍ଦିନରେ ଆମେମାନେ ମୃତ୍ୟୁ ଅପେକ୍ଷାରେ 'ରୋଲ୍‌କଲ୍'ରେ ଛିଡ଼ା ହେଉଥିଲୁ ।

ୱାର୍ଡେନ୍ ଗର୍ଜନ କଲା— ରେଡି । ସେତିକି ବେଳେ ଟାଉବେ ମଧ ହାଜିରା ପାଇଁ ମାଡ଼ି ଆସିଲା । ତା'ର ଅଳ୍ପ ଦୂରରେ ଆସୁଥିଲା ଶୀଲା । ମୁଁ ତ ପ୍ରଥମେ ତାକୁ ଆଦୌ ଚିହ୍ନି ପାରିଲି ନାହିଁ । ଯେତେବେଳେ ତାକୁ ଚିହ୍ନିଲି ସେତେବେଳେ ମୋ'ର ବିସ୍ମୟର ସୀମା ରହିଲା ନାହିଁ । ମୋ'ର ଆଖି ଖୋସି ହୋଇଗଲା । ଏତେ ସୁନ୍ଦର ଟିପ୍‌ଟପ୍ ଓ ବାସନା ମହ ମହ । ମୁଁ ତାକୁ ଆପାଦ ମସ୍ତକ ଚାହିଁଲି । ପାଦରେ ରବର ଜୋତା, ଦେହରେ ସୁନ୍ଦର ବର୍ଷାତି କୋଟ୍ ଓ ମୁଣ୍ଡରେ ରଙ୍ଗ ବେରଙ୍ଗ ସୁନ୍ଦର ସିଲ୍କ ସ୍କାର୍ଫ । ଆମ୍ଭମାନଙ୍କ ଆଖିକୁ ଆଡ଼େଇ ଯାଉଥିଲା ଆଗକୁ ଅନେଇ ଅନେଇ ସିଧା ସିଧା ଦୁର୍ଦ୍ଦାନ୍ତ ଟାଉବେର ପାଦରେ ପାଦ ମିଳେଇ । ଟାଉବେ ଛିଡ଼ା ହେଲେ ସେ ମଧ ଛିଡ଼ା ହେଉଥିଲା । ମୁଁ ଏଭଳି ବିମୋହିତ ହୋଇ ଯାଇଥିଲି ଯେ 'ବଛାବଛି' କଥା ଏକାବେଳେକେ ଭୁଲି ଯାଇଥିଲି । କିନ୍ତୁ ଶୀଲା ଗୋଟିଏ ପାଖରେ ଛିଡ଼ା ହୋଇ ଧୈର୍ଯ୍ୟ ସହକାରେ ଅପେକ୍ଷା କରି ରହୁଥିଲା ।

ୱାର୍ଡେନ୍ ଗର୍ଜନ କଲା, ''ସମସ୍ତେ ଲାଇନ୍‌ରେ ଛିଡ଼ା ହୁଅ ଏବଂ ଜଣ ଜଣ କରି ଫରହର (ଟାଉବେ)ଙ୍କ ପାଖକୁ ଯାଅ ।'' ଲାଇନ୍ ଧୀରେ ଧୀରେ ଚାଲିଲା । ସମସ୍ତେ

ଶୀଲାକୁ ନିରିଖେଇ ଦେଖୁଥାନ୍ତି । ମଝିରେ ମଝିରେ ଟାଉବେ ଲାଇନ୍ ଭିତରୁ ବାଛୁଥିଲା ଏବଂ ସେମାନଙ୍କୁ ତା' ନ ଏରେ ଛିଡ଼ା ହେବାକୁ କହୁଥିଲା । ତା' ପରେ ଶୀଲା ନୋଟ୍‌ବୁକ୍ ଧରି ସେମାନଙ୍କ ପାଖ ୍ ପହଞ୍ଚି ଯାଉଥିଲା ଓ ସେମାନଙ୍କ ନାମ ଲେଖି ଦେଉଥିଲା । ସେମାନଙ୍କ ସଂଖ୍ୟା କ୍ରମେ ବଢ଼ିବାକୁ ଲାଗିଲା । ବଛା ହେଉଥିବା ଲୋକଙ୍କ ଭିତରୁ ଜଣେ ସୁଦ୍ଧା ଯେପରି ଖସି ନଯାଏ, ସେଥିପ୍ରତି ଶୀଲା କଡ଼ା ନଜର ଦେଉଥାଏ । ଲେଖାଲେଖି ସରିବା ପରେ ଶୀଲା ସେମାନଙ୍କୁ ଚାରିଜଣିଆ ଲାଇନ୍ କରି ନୂଆ ବ୍ଲକ୍‌କୁ ଅଡ଼େଇ ନେଇଗଲା । ସେହି ମହିଳାମାନଙ୍କୁ ନେଇ ହୃତକମ୍ପକାରୀ 'ମରଣ ବ୍ଲକ୍' ସୃଷ୍ଟି ହୋଇଥିଲା । ସେହିଦିନ ଠାରୁ ଶୀଲା ସେହି ୨୫ ନମ୍ବର ବ୍ଲକ୍‌ର ଓ୍ୱାର୍ଡେନ୍ ହେଲା । ତାହାର ବୟସ ସେତେବେଳେ ମାତ୍ର ୧୮ ବର୍ଷ । କିନ୍ତୁ ସେତେବେଳକୁ ସେ ଏକ କଠୋର ହୃଦୟ ହତ୍ୟାକାରୀରେ ପରିଣତ ହୋଇ ସାରିଥିଲା ।''

ଉପରୋକ୍ତ ବିବରଣୀଟି ମୋତେ ଡକ୍ଟର ମାନ୍‌ସୀ ପ୍ରଦାନ କରିଥିଲେ ।

ଜୁଙ୍ଗାଙ୍ଗୀ ବ୍ଲକ୍‌ର ଅନତି ଦୂରରେ ଏବଂ 'ଏ' ଫିଲଡ୍‌ରେ ଅବସ୍ଥିତ ଥିଲା ସେହି କୁଖ୍ୟାତ ୨୫ ନମ୍ବର ବ୍ଲକ୍ । ବାହାରକୁ ସେଇଟି ଅନ୍ୟ ବ୍ଲକ୍ ଭଳି ଦିଶୁଥିଲେ ମଧ୍ୟ ସେଥିରେ ସର୍ବଦା ତାଲା ପଡ଼ିଥିଲା । ତା'ର ଆଖପାଖରେ କେହି ବୁଲାବୁଲି ମଧ୍ୟ କରୁ ନଥିଲେ । ଯଦି ଦୈବାତ୍ କେତେବେଳେ କାହାକୁ ସେଠାକୁ ପଠାଗଲେ ସେମାନେ ଯାଇଁ ଶବ ପରିବହନ ଗାଡ଼ି ଭିତରେ ରହନ୍ତି । ଶିବିର ଜୀବନରେ 'ବଛାବଛି' ଏକ ନିତିଦିନିଆ କାର୍ଯ୍ୟ । ବେଳେବେଳେ ବିପୁଳ ସଂଖ୍ୟାରେ 'ବଛାବଛି' ହୁଏ, ଏପରିକି ପୂରା ଗୋଟେ ଗୋଟେ ବ୍ଲକ୍ । ଡାକ୍ତର ମେଙ୍ଗେଲ୍ ଦ୍ୱାରା ହସ୍‌ପିଟାଲ୍‌ରେ 'ବଛାବଛି' ହୁଏ ଅଳ୍ପ କେଇ ସପ୍ତାହର ବ୍ୟବଧାନରେ । ସେ ଇହୁଦୀ ପର୍ବ ପର୍ବାଣୀରେ ହିଁ ବେଶୀ 'ବଛାବଛି' କରେ । ଏପରିକି ପର୍ବପର୍ବାଣୀ ପହଞ୍ଚିବା ସଙ୍ଗେ ସଙ୍ଗେ ମେଙ୍ଗେଲ୍‌ର 'ବଛାବଛି' ମଧ୍ୟ ପହଞ୍ଚିଯିବ ବୋଲି ଆମେ ଧରି ନେଉ । ବେଳେବେଳେ 'ବଛାବଛି' ମଧ୍ୟ ଆମକୁ ଆମର ପର୍ବପର୍ବାଣୀ କଥା ମନେ ପକାଇଦିଏ । ନଚେତ୍ ଆମେ ପର୍ବପର୍ବାଣୀ ଭୁଲି ଯାଆନ୍ତୁ । ରାକ୍ଷସ ମେଙ୍ଗେଲ୍ ତାହା ଆମକୁ ମନେ ପକାଇ ଦେଉଥିଲା ।

ସଙ୍ଗଠିତ ଓ ନିୟମିତ 'ବଛାବଛି'କୁ ବାଦ ଦେଲେ ବି ଏମିତି ଗୋଟାଏ ଦିନ ମଧ୍ୟ ଅତିକ୍ରମ କରେ ନାହିଁ, ଯେଉଁଦିନ ଜଣେ ଅଧେ ବଛା ହେଉନଥିଲେ । ଆମ ଅକ୍ଷମଶାଳାରେ ମଧ୍ୟ ନାତ୍‌ସୀ ଡାକ୍ତର (S.S.Docter) ମାନେ 'ଗ୍ୟାସ୍' ପାଇଁ ପ୍ରତିଟି ରୋଗୀକୁ ନିରୀକ୍ଷଣ କରନ୍ତି । ତାକୁ ଦେଖି ଦେଖି ଆମେମାନେ ମଧ୍ୟ ଶିଖି ଯାଇଥିଲୁ କିଏ ଗ୍ୟାସ୍ ପାଇଁ ଫିଟ୍ କିଏ ନୁହେଁ । ଉଦାହରଣ ସ୍ୱରୂପ ପାଦଫୁଲା ରୋଗୀକୁ ଡାକ୍ତର କୋଏନିଗ୍ ଆଦୌ ଭଲପାଉ ନଥିଲା । ଛାତିରେ ଘା' ହୋଇଥିବା ରୋଗୀକୁ ଡାକ୍ତର ମେଙ୍ଗେଲ୍ ଖୁବ୍ ଘୃଣା

କରେ । କେଉଁ ଡାକ୍ତର କେଉଁ ଦିନ ଆସୁଥିଲେ, ଆମେ ପୂର୍ବରୁ ଜାଣି ପାରୁନଥିବାରୁ ସେହିଭଳି ରୋଗୀଙ୍କୁ ଆମେ ଲୁଚାଇଦେବାକୁ ଚେଷ୍ଟା କରୁଥିଲୁ । ଡାକ୍ତର ମେଙ୍ଗେଲ୍ ଆମ ପାଇଁ ଭାରି ସମସ୍ୟା ଥିଲା । ତା'ର ସୁନ୍ଦର ଚେହେରା ଥିଲା । ସେ ଚୌକୀ ଉପରେ ଗୋଟାଏ ଷ୍ଟାଇଲ୍‌ରେ ବସି ଗପ ଜମେଇ ଦେଉଥିଲା । ତା'ର କଥା ଶୈଳୀ ଓ ଚେହେରା ଦେଖିଲେ ତା' ଉପରେ ବିଶ୍ୱାସ ସ୍ଥାପନ କରି ହେଉଥିଲା । ତା'ର ପ୍ରକୃତ ରୂପକୁ ନ ଜାଣି ପାରି ନୂତନ ଆଗନ୍ତୁକମାନେ ନିଜ ନିଜ ଅସୁବିଧା ଓ ରୋଗ ଯନ୍ତ୍ରଣାକୁ ତା' ସମ୍ମୁଖରେ ନିଃସଙ୍କୋଚରେ ପ୍ରକାଶ କରିଦେଉଥିଲେ । ଜଣେ ଜଣେ କୁହନ୍ତି, ''ଆଜ୍ଞା ବହୁଦିନରୁ ମୋର ହାର୍ଟ ଭାରି ଦୁର୍ବଳ, ପାଦେ ଚାଲିଲେ ବି ଥକି ପଡୁଛି'', କିମ୍ବା ଆଉ ଜଣେ ଜଣେ କୁହନ୍ତି, ''ଆଜ୍ଞା ଏଠିକାର ଖାଦ୍ୟ ମୋ ଦେହରେ ଯାଉନି, ମୋର ଲିଭର ସମସ୍ୟା ।'' ସେହି ମହିଳାମାନେ ଜାଣି ପାରୁ ନଥିଲେ ଯେ ସେଭଳି କଥା କହି ସେମାନେ ନିଜ ମରଣ ଗାତ ନିଜ ହାତରେ ହିଁ ଖୋଳୁଥିଲେ । ଡାକ୍ତର ଆସିବା ପୂର୍ବରୁ ଆମେ ସେହି ମହିଳାମାନଙ୍କୁ ନିବେଦନ କରି କହୁଥିଲୁ ଯେ ସେମାନେ ଡାକ୍ତର ନିକଟରେ ଛଳନା କରି କୁହନ୍ତୁ ଯେ ସେମାନେ ଜର୍ମାନୀ ଭାଷା ଜାଣନ୍ତି ନାହିଁ, କିନ୍ତୁ ଆମର ଅନୁରୋଧ ପ୍ରାୟ କେହି ଶୁଣୁନଥିଲେ । ବେଳେବେଳେ ନାତ୍‌ସୀ ଆତଙ୍କବାଦୀମାନଙ୍କୁ ଯେଉଁ ମହିଳା ଭଲ ମନେ ହେଉ ନଥିଲେ, ତାକୁ ଗ୍ୟାସ୍ ପାଇଁ ତାଲିକାଭୁକ୍ତ କରିଦେଉଥିଲେ । ବେଳେବେଳେ ଏଭଳି ମଧ୍ୟ ଘଟୁଥିଲା ଯେ ବିନା କାରଣରେ ନିୟମିତ 'ବଛାବଛି' ବ୍ୟବସ୍ଥାକୁ ଉଲଙ୍ଘନ କରି ମଧ୍ୟ ଦଳେ ଡାକ୍ତର ବ୍ଲକ୍‌ରେ ପହଞ୍ଚି ଯାଉଥିଲେ ଏବଂ ରୋଗୀମାନଙ୍କୁ ଦେଖି କେତେକଙ୍କୁ ଗ୍ୟାସ୍ ପାଇଁ ତାଲିକାଭୁକ୍ତ କରି ଦେଉଥିଲେ ।

ତାଲିକାଭୁକ୍ତ ବନ୍ଦିନୀମାନଙ୍କୁ ପ୍ରଥମେ ଯିବାକୁ ପଡୁଥିଲା ୱାର୍ଡେନ୍ ପାଖକୁ । ୱାର୍ଡେନ୍ ତାକୁ ୨୫ ନମ୍ବର ବ୍ଲକ୍‌ର ଶୀଳା ପାଖକୁ ନେଇଯାଉଥିଲା । ସେହି ମୁହୂର୍ତ୍ତରୁ ସେମାନେ ଆଉ ମଣିଷ ପଦବାଚ୍ୟ ହେଉ ନଥିଲେ । ସେମାନେ ବିଦ୍ୟୁତ୍ ଚୁଲା ପାଇଁ ଖଣ୍ଡେ ଖଣ୍ଡେ ମାଂସ ଭାବେ ବିବେଚିତ ହେଉଥିଲେ । ଏକଥା ବିସ୍ମୟଜନକ ଯେ କର୍ମକର୍ତ୍ତାମାନେ ସେମାନଙ୍କୁ ମୃତ ବ୍ୟକ୍ତି ହିସାବରେ ଗଣତି କରିଥାନ୍ତି ।

ମୁଁ ସେହି ଦୃଶ୍ୟର ପ୍ରତ୍ୟକ୍ଷଦର୍ଶୀ । ଥରେ 'ଗ୍ୟାସ୍' ପାଇଁ ତାଲିକାଭୁକ୍ତ କେତେକ ଅତ୍ୟନ୍ତ ଦୁର୍ବଳ ଓ କଙ୍କାଳସାର ବନ୍ଦିନୀମାନଙ୍କର ଦାୟିତ୍ୱରେ ଥିଲେ ଜଣେ ସୁସ୍ଥ ସବଳ ପୃଥୁଳକାୟ କିରାଣୀ । ସେହି ହତଭାଗିନୀ ବନ୍ଦିନୀମାନଙ୍କ ସଂଖ୍ୟା ଥିଲା ତିରିଶ । କିରାଣୀ ସେମାନଙ୍କୁ ବ୍ଲକ୍ ଆଗ ଚଉତରା ଆଗରେ ଏକତ୍ରିତ କଲା । ସେମାନଙ୍କ ଶରୀରରେ ନମ୍ବର ସ୍ଲିପ୍ ଛଡ଼ା ଆଉ ପ୍ରାୟ କିଛି ନଥିଲା । ସେମାନଙ୍କୁ ମରଣ ଯନ୍ତାକୁ ଖାଲି ପାଦରେ ବରଫ ଉପରେ ଚଲେଇ ଚଲେଇ ନେଲା । ସେହି ନିର୍ମମ ଓ ଅମାନୁଷିକ ପନ୍ଥା ସମ୍ପର୍କରେ

ସେ କହିଥିଲା, ''ମୁଁ ଚାହେ ଯେ ମୋ କାମ ଟିକେ ହାଲୁକା ହେଉ । ସେମାନଙ୍କୁ ପୂରା ପୋଷାକ ପିନ୍ଧାଇ ୨୫ ନମ୍ବର ବ୍ଲକ୍‌କୁ ନେବା ଓ ସେଠାରେ ପୋଷାକ କାଢ଼ି ତାକୁ ଜମାଦେବାକୁ ଗୋଦାମ ଘରକୁ ଆସିବାରେ ସେମାନଙ୍କର ଲାଭ କ୍ଷତି କ'ଣ ? ସେମାନଙ୍କ ପକ୍ଷରେ ପୋଷାକ ପିନ୍ଧିବା କିମ୍ବା ନପିନ୍ଧିବାରେ ଫରକ କ'ଣ ?'' ପରସ୍ପରକୁ ଧରି ଓ ଖାଲିପାଦ ଯୋଗୁଁ ବରଫ ଉପରେ ରକ୍ତର ଗାର କାଟି କାଟି ଯାଉଥିବା ସେମାନଙ୍କର ସେହି ହୃଦୟ ବିଦାରକ ଶୋଭାଯାତ୍ରାର ଦୃଶ୍ୟ ଆଜି ମଧ୍ୟ ମୋ' ଆଖି ଆଗରେ ନାଚି ଯାଉଛି । ପଦଯାତ୍ରୀଙ୍କ କଡ଼େ କଡ଼େ ଚାଲିଥିଲା ନାଲି ଚେକ୍ ରଙ୍ଗର ସ୍ୱେଟର୍ ପିନ୍ଧା କିରାଣୀ; ହାତରେ ଧରିଥିଲା ସେହି ଅଭିଶପ୍ତା ମାନଙ୍କର ନମ୍ବର କାର୍ଡ ।

ସେମାନଙ୍କୁ ଯେ ସଙ୍ଗେ ସଙ୍ଗେ ଗ୍ୟାସ୍‌ରେ ମରାଯାଉଥିଲା ସେକଥା ନୁହେଁ; ଗ୍ୟାସ୍‌ରେ ହେଉଥିବା ଖର୍ଚ୍ଚକୁ କମାଇବା ପାଇଁ ଯଥେଷ୍ଟ ସଂଖ୍ୟକ ତାଲିକାଭୁକ୍ତ ବନ୍ଦୀ ନ ଆସିବା ପର୍ଯ୍ୟନ୍ତ ସେମାନଙ୍କୁ ଅପେକ୍ଷା କରିବାକୁ ପଡୁଥିଲା । ବେଳେବେଳେ କେତେ ଦିନ ପାଇଁ ତ ଆଉ କେତେବେଳେ ଦିନ ଦିନ ପାଇଁ 'ମୃତ୍ୟୁ' ଅପେକ୍ଷାରେ ରହିବାକୁ ପଡୁଥିଲା ।

ଅନ୍ୟମାନଙ୍କ ପାଇଁ ନିଷିଦ୍ଧ ୨୫ ନମ୍ବର ବ୍ଲକ୍‌ରେ ଶୀଲା ପାଇଁ ଏକ ସ୍ୱତନ୍ତ୍ର କୋଠରୀ ଥିଲା । ସେହିଠାରେ ଶୀଲା ତାହାର ପ୍ରେମିକ ବୋଲି କୁହାଯାଉଥିବା 'ଟାଉବେ'କୁ ସ୍ୱାଗତ କରୁଥିଲା ବୋଲି ପ୍ରବଳ ଜନରବ ହେଉଥିଲା ।

ଟାଉବେ ନିର୍ଦ୍ଦେଶ ଦେଇଥିଲା ଯେ କେହି ବେମାର ପଡ଼ିଲେ ତାକୁ ଖାଇବାକୁ ଦିଆଯିବ ନାହିଁ । ତାହାହେଲେ ସେହି ଖର୍ଚ୍ଚ କାଟରୁ ଗ୍ୟାସ୍ ଖର୍ଚ୍ଚ ଉଠାଯାଇ ପାରିବ । ଫଳ ସ୍ୱରୂପ ଶୀଲା ପାଖରେ ପ୍ରଚୁର ଖାଦ୍ୟ ଜମା ହେଉଥିଲା । କାରଣ ସେହି ବନ୍ଦିନୀମାନଙ୍କ ନାଁ ହସ୍‌ପିଟାଲ୍ ରେଜିଷ୍ଟରରୁ କଟି ନଥିବାରୁ ସେମାନଙ୍କ ଉଦ୍ଦେଶ୍ୟରେ ନିୟମାନୁସାରେ ଖାଦ୍ୟ ଦ୍ରବ୍ୟ ବ୍ଲକ୍‌କୁ ଆସିବା ବନ୍ଦ ହୋଇନଥିଲା । ତାହା ସବୁ ଶୀଲା ପାଖରେ ଜମା ହେଉଥିଲା । ବଡ଼ ବଡ଼ କୁଣ୍ଡରେ ସେମାନଙ୍କ ପାଇଁ ଯେଉଁ କଫି ଆସୁଥିଲା ଶୀଲା ତାକୁ ଗୋଇଠା ମାରି ଡ୍ରେନ୍‌ରେ ଢାଳି ଦେଉଥିଲା ଏବଂ ଚିତ୍କାର କରି କହୁଥିଲା, ''କଫି ନୁହେଁ, ପାଣି ଦିଅ'', ତା' ଗର୍ଜନରେ ୨୫ ନମ୍ବର ବ୍ଲକ୍ କମ୍ପି ଯାଉଥିଲା । ଜମା ହେଉଥିବା ଲହୁଣୀ, ମାଂସ କିମା ଏବଂ ରସୁଣ ଝୋଳ ବଦଳରେ ସେ ସିଗାରେଟ୍ ସଂଗ୍ରହ କରୁଥିଲା । ବାହାରେ କାର୍ଯ୍ୟ କରୁଥିବା ବନ୍ଦୀମାନଙ୍କ ଜରିଆରେ ସିଗାରେଟ୍ ବଦଳରେ ବିଭିନ୍ନ ବିଳାସ ସାମଗ୍ରୀ ଆଣୁଥିଲା ।

ଶୀଲା ଆମ ବ୍ଲକ୍‌କୁ ମଧ୍ୟ ବହୁ ସମୟରେ ଆସୁଥିଲା, ସେ ସବୁବେଳେ ଆତ୍ମସନ୍ତୋଷର ସହିତ ଖୁବ୍ ଖୁସିରେ ଥାଏ । ବେଳେବେଳେ ଆମ ପାଇଁ ଚକୋଲେଟ୍ ଆଣୁଥିଲା । ଥରେ ମୋ' ପାଇଁ ଗୋଟାଏ ଡ୍ରେସ୍ ମଧ୍ୟ ଆଣିଥିଲା । ତାହାର ସେହି ଆନ୍ତରିକତା ସତ୍ତ୍ୱେ ମୁଁ ତାକୁ

ଭୀଷଣ ଭୟ କରୁଥିଲି । ରୁକ୍ଷ ଭାଷାରେ କହିଲେ, ''ସେ ଗୋଟାଏ ରାକ୍ଷସୀ ଥିଲା ।'' ମୁଁ ତା' ସହ ଆଲୋଚନା କରିବାକୁ ସର୍ବଦା ଏଡ଼ାଇ ଯାଉଥିଲି । ଥରେ ମୋର କୌତୁହଳକୁ ଦମନ କରି ନପାରିଥିବା କଥା ମୋର ମନେ ଅଛି, ଏବଂ ବହୁଦିନ ଧରି ମୋ ମନରେ ଥିବା ପ୍ରଶ୍ନଟି ତାକୁ ପଚାରି ଦେଲି, ''ଶୀଲା, ତୁମେ ଏଭଳି କାର୍ଯ୍ୟ କିପରି କରିପାରୁଛ ? ଲୋକେ ତୁମକୁ ଯେ କଦାପି କ୍ଷମା କରିବେ ନାହିଁ, ସେକଥା କ'ଣ କେବେ ଭାବିପାରୁନ ?'' ସେତେବେଳେ ଅକ୍ଷମଶାଳାରେ ଆଉ କେହି ନ ଥିଲେ । ସେଭଳି ପ୍ରଶ୍ନ ତାକୁ ପଚାରିବା ସଙ୍ଗେ ସଙ୍ଗେ ମୁଁ ନିଜେ ମଧ୍ୟ ଆତଙ୍କିତ ହୋଇ ପଡ଼ିଥିଲି । କିନ୍ତୁ ଶୀଲା ଧୀର ସ୍ଥିର ଭାବେ ମୋତେ କହିଲା, ''ତୁମେ ବୋଧହୁଏ ଜାଣିଥିବ ଯେ ମୋତେ ନିଜେ ମୋର ମା'କୁ ଗାଡ଼ିରେ ବସାଇ ଗ୍ୟାସ୍‌କୁ ପଠାଇବାକୁ ପଡ଼ିଥିଲା । ଏହା ଅପେକ୍ଷା ଅଧିକ ଭୟାବହ କାର୍ଯ୍ୟ କିଛି ନାହିଁ, ଯାହା ମୁଁ କରି ନପାରିବି । ଏହା ତୁମେ ବୁଝିବା ଉଚିତ । ଏ ଦୁନିଆ ଏକ ଭୟଙ୍କର ସ୍ଥାନ । ମୁଁ ଏହିଭଳି ଭାବରେ ତାହାର ପ୍ରତିଶୋଧ ନିଏ ।''

ଆଉସ୍‌ଭିଟ୍‌ଜ୍‌ରେ ବଞ୍ଚିରହିଥିବା ବନ୍ଦିନୀମାନେ ଯେତେବେଳେ ମୁକ୍ତ ହେଲେ, ମୁଁ ଶୀଲାକୁ ସେତେବେଳେ ଦେଖିବାକୁ ପାଇ ନଥିଲି । ତା'ର କ'ଣ ହେଲା ମୁଁ ଜାଣେ ନାହିଁ । କିନ୍ତୁ ମୋ'ର ପୂର୍ଣ୍ଣ ହୃଦ୍‌ବୋଧ ହୋଇଥିଲା ଯେ ସେଭଳି ଅମଣିଷତାର ମଣିଷ ସମାଜରେ ଆଦୌ ସ୍ଥାନ ନାହିଁ ।

■■■

– ୧୪ –

# ମୁମୂର୍ଷୁମାନଙ୍କର ଅଭିବାଦନ

ଲିସେଟର୍ ମୁହଁଟି ବଡ଼ ବିଚିତ୍ର ଥିଲା । ଯେମିତିକି ସେଇଟି ଦୁଇଭାଗରେ ବିଭକ୍ତ ଏବଂ ଗୋଟିଏ ଭାଗର ଅନ୍ୟ ଭାଗ ସହ କୌଣସି ସାମଞ୍ଜସ୍ୟ ନଥିଲା । ଏକ ରୁକ୍ଷ ବ୍ୟକ୍ତିର ମୁହଁ ପରି ତାହାର ଚିବୁକ୍ ଓ ମାଢ଼ି ବେଶ୍ ତୀକ୍ଷ୍ଣ ଦିଶୁଥିଲା । ଗୋଲ୍ ଗୋଲ୍ ଲାଲ ଗାଲ ଦୁଇଟି, ଶୁଆ ନାକ ସାଙ୍ଗକୁ ଗୋଲାପୀ ଚକ୍ଷୁଯୁଗଳ ବେଶ୍ ମନେ ରଖିବା ଭଳି । ତା' ପାଟିର ଆକାର ମନେ ପଡୁ ନଥିଲେ ମଧ୍ୟ ତାହା ସର୍ବଦା ହସ ହସ ଦଶୁଥିଲା । ମୁଁ ମାନୁଛି ଯେ ସେ ହସ ବେଳେ ବେଳେ ବିରକ୍ତିଜନକ ମଧ୍ୟ ଥିଲା । ଆଉସ୍‌ଭିଟ୍‌ଜ୍‌ରେ ଅତ୍ୟନ୍ତ ଦୁର୍ଦ୍ଦିନରେ ୧୯୪୪ ମସିହାରେ ମୁଁ ତାକୁ ପ୍ରଥମେ ଦେଖିଥିଲି । ସେତେବେଳେ କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପର ଆକାଶ ସର୍ବଦା ଲୋହିତ ବର୍ଣ୍ଣ ଧାରଣ କରିଥିଲା ଏବଂ ପୋଡ଼ା ମାଂସର ଗନ୍ଧ ବାୟୁମଣ୍ଡଳକୁ ଭାରାକ୍ରାନ୍ତ କରି ରଖିଥିଲା ।

ସେ ଥିଲା ଏକ ବିକଟାଳ ଗ୍ରୀଷ୍ମ ଋତୁ । ତାହା ଏଭଳି ଏକ ଭୟାବହ ସମୟ ଥିଲା ଯେତେବେଳେ ମୁଁ ଭାବୁଥିଲି ଯେ ମୋର ଚାରିପଟରେ ଯାହା ସବୁ ଘଟି ଯାଉଛି ସେଗୁଡ଼ିକ ସବୁ ଅବାସ୍ତବ । ଯେପରିକି ଏକ ବିକୃତ କଳ୍ପନାର ପ୍ରତିବିମ୍ବ । ଦିନରାତି ସର୍ବଦା ପରିବହନ ଗାଡ଼ିଗୁଡ଼ିକ ପହଞ୍ଚି ଯାଉଥିଲା- କେତେକ ସିଧା ଗ୍ୟାସ୍ ଗୃହରେ । ସୁସ୍ଥ ସୁନ୍ଦରୀ ତରୁଣୀ ଗୁଡ଼ିକ ନିର୍ବିଚାରରେ ଗ୍ୟାସ୍ ତାଲିକାଭୁକ୍ତ ହେଉଥିଲେ । ସେମାନଙ୍କୁ ସମ୍ପୂର୍ଣ୍ଣ ଉଲଗ୍ନ କରି ତାରବାଡ଼ ପରିବେଷ୍ଟିତ ଘେରାଉ ଭିତରକୁ ଠେଲି ଦିଆଯାଉଥିଲା । ଜୁଲାଇର ସୂର୍ଯ୍ୟ-ତାପରେ ସେ ଭିତରେ ବିନା ଖାଦ୍ୟପେୟରେ ସେମାନଙ୍କୁ ଅପେକ୍ଷା କରିବାକୁ ପଡୁଥିଲା ।

ସର୍ବଦା ଅସ୍ୱାଭାବିକ କର୍ମଚଞ୍ଚଳ ଓ କୋଳାହଳମୟ ସମୟରେ ପରିବହନ ଗାଡ଼ି ପହଞ୍ଚୁଥିଲା ଏବଂ ଛାଡୁଥିଲା । କାର୍ଯ୍ୟକ୍ରମର ରୁଟିନ୍‌ରେ ସାମାନ୍ୟ ବ୍ୟତିକ୍ରମ ଘଟିଲେ କି 'ମରଣ ଧାଡ଼ି'ରେ ଅବିଚଳିତ ଛିଡ଼ା ହୋଇ ନ ରହିଲେ କି ନିଜର ବା ସର୍ବସ୍ୱ ଜିନିଷପତ୍ରରେ ହାତ ମାରିଲେ ଜର୍ମାନମାନେ ଗର୍ଜି ଉଠୁଥିଲେ । ସମସ୍ତ କାର୍ଯ୍ୟକଳାପ ଅତ୍ୟନ୍ତ ଦ୍ରୁତ ଗତିରେ ସମ୍ପନ୍ନ ହେଉଥିଲା ଯେପରି କୌଣସି ବନ୍ଦିନୀ ଗୋଟାଏ ମୁହୂର୍ତ୍ତ ବି ଭାବିବାକୁ ସମୟ ନ ପାଆନ୍ତି, କିମ୍ବା କର୍ମକର୍ତ୍ତାମାନଙ୍କୁ ବିରୋଧ କରିବାକୁ ଚିନ୍ତା ମଧ୍ୟ କରି ନ ପାରନ୍ତି । ଜର୍ମାନ୍‌ମାନଙ୍କ ଗର୍ଜନରେ ବ୍ଲକ୍ ଫେରନ୍ତା ମଣିଷଗୁଡ଼ିକ ବା ବନ୍ଧୁକ ଗୁଳିରୁ ବର୍ତ୍ତିଥିବା 'ଭାଗ୍ୟବାନ'ମାନେ ଛାନିଆ ହୋଇ ନାଦ୍‌ସୀ ଭଉଁରୀ ଜାଲରେ ଛନ୍ଦି ହୋଇ ଯାଉଥିଲେ । ଗାଧୁଆଘରର ଦ୍ୱାର ଦେଶରେ ଦଣ୍ଡାୟମାନ ହୋଇଥାନ୍ତି ନିଷ୍ଠୁରତା ଓ ଅମାନୁଷିକତାର ପ୍ରତୀକ ମୂର୍ତ୍ତିମନ୍ତ ଡାକ୍ତର ମେଙ୍ଗେଲ୍ । ସୁନ୍ଦର ସୁଠାମ ଚେହେରା ସାଙ୍ଗକୁ ପୈଶାଚିକ ସ୍ମିତହାସ୍ୟର ଜ୍ୱଳନ୍ତ ପ୍ରତୀକ । ତା'ର ଖିଆଲି ହାତ ଇଙ୍ଗିତରେ କେତେକ ତା'ର ଡାହାଣ ପଟେ ଓ କେତେକ ତା'ର ବାଁ ପଟେ ଛିଡ଼ା ହୋଇଯାଆନ୍ତି । ସସନ୍ତାନ ଜନନୀଗଣ, ବୃଦ୍ଧ, ସ୍ଥବିର ରୋଗୀମାନେ ଗୋଟିଏ ପଟେ ଏବଂ ଅନ୍ୟ ପଟେ ସୁନ୍ଦରୀ ତରୁଣୀଗଣ । ମେଙ୍ଗେଲ୍ ଆଖି ଆଗରେ ସମସ୍ତେ ଶାନ୍ତ ଓ ନିଶ୍ଚୁପ । ସେମାନଙ୍କ ପାଇଁ ଯେ ମୃତ୍ୟୁର ପରଓ୍ୱାନା ଜାରି ହୋଇ ସାରିଲାଣି ସେକଥା ଜାଣି ନପାରି ସେମାନେ ଚାବୁକ୍‌ର ଇଙ୍ଗିତରେ ପରିଚାଳିତ ହୁଅନ୍ତି । କୌଣସି ସୁସ୍ଥ ମଣିଷ ପକ୍ଷରେ ସେହି ନର୍କର ଦୃଶ୍ୟ ଅକଳ୍ପନୀୟ ।

ସେହି ଦୁଃସହ ପରିସ୍ଥିତିରେ ମିସେସ୍ ଲିସେଟ୍ ହସି ହସି ଚାଲିଯାଉଥିବାର ଦେଖିଲେ ମୋ ମୁଣ୍ଡ ଖରାପ ହୋଇଯାଉଥିଲା । ଫ୍ରାନ୍‌ସର ଯେଉଁ ଝିଅମାନେ ଲିସେଟ୍‌କୁ ଭଲ ଭାବରେ ଜାଣିଥିଲେ ମୁଁ ସେମାନଙ୍କ ସହ ତା ସମ୍ପର୍କରେ କଥାବାର୍ତ୍ତା ହେଲି । ମୁଁ ପଚାରିଲି ''ସେ କେମିତି ହସି ପାରୁଛି ? ତା' ହସ ଦେଖିଲେ ମୋ' ଦେହ ଶୀତେଇ ଉଠୁଛି !'' ମିସେସ୍ ମାସା ମୋତେ କହିଲେ, ''ସେ କେମିତି ହସି ପାରୁଛି ମୁଁ ତୁମକୁ କହିଦେବି । ସେ ଖୁସି' ହିଁ ଅଛି ।'' ''କ'ଣ ଗପୁଛ ତୁମେ ?'' ''ଖୁସି ହିଁ ଅଛି ? ସେ କାଲ ନା ଅନ୍ଧ ? ଏଠାରେ

କ'ଣ ହେଉଛି ସେ କିଛି ଦେଖିପାରୁ ନାହିଁ ନା ଶୁଣିପାରୁ ନାହିଁ ? ଖୁସି ହେଉଛି ?''

''ମୋ କଥାରେ ବାଧା ଦିଅନା, ଶୁଣ । ସେ ଖୁସି ହେବାର କାରଣ ତା'ର ସ୍ୱାମୀ ଏଠି ନାହାନ୍ତି । ଯେତେବେଳେ ଲିସେଟ୍‌କୁ ଗିରଫ୍ କଲେ, ତା'ର ସ୍ୱାମୀ କୌଣସି ପ୍ରକାରେ ସେଠୁ ଖସି ଯାଇଥିଲେ । ସେ ବର୍ତ୍ତମାନ ମୁକ୍ତ । ସେ ତାକୁ ଅତ୍ୟନ୍ତ ଭଲ ପାଏ । ସେ ଜଣେ ବିସ୍ମୟ ଯୁବକ । ଲିସେଟ୍ ତା'ର ଛୋଟ ଝିଅଟିକୁ ମଧ୍ୟ ସେହି ମୁକ୍ତ ଅବସ୍ଥାରେ ଛାଡ଼ି ଆସିଛି ।

''ଗୋଟିଏ ମାତ୍ର କଥା, ତା' ମନ ଭିତରେ ସର୍ବଦା ଖେଳି ବୁଲେ ଯେ ସେମାନଙ୍କର ସୌଭାଗ୍ୟ କାରଣ ସେମାନେ ଏହି ପ୍ରେତପୁରୀରେ ଏକତ୍ର ନାହାନ୍ତି, ବା ମେଙ୍ଗେଲ୍‌ର ଅଙ୍ଗୁଳି ନିର୍ଦ୍ଦେଶରେ ତାଙ୍କୁ ତା ବାମ ପଟକୁ ବା ଡାହାଣ ପଟକୁ ଯିବାକୁ ବା ଛିଡ଼ା ହେବାକୁ ପଡୁନି । ମେଙ୍ଗେଲ୍ ପାଖରୁ ସେମାନେ ବହୁତ ଦୂରରେ ଅଛନ୍ତି । ଏଇ କଥା ଯେତେବେଳେ ତାର ମନେପଡ଼େ ତା' ମୁହଁରେ ସ୍ମିତ ହାସ୍ୟରେଖାଟି ଖେଳିଯାଏ ।''

ମୁଁ ବୁଝିଗଲି, ସେହି ମୁହୂର୍ତ୍ତରୁ ଯେତେବେଳେ ଲିସେଟ୍‌କୁ ହସିବାର ଦେଖେ ମୁଁ ମଧ୍ୟ ମୁରୁକି ହସିଦିଏ, ଏତିକି ଜଣାଇ ଦେବାକୁ ଯେ ମୁଁ ତାର ସ୍ମିତହାସ୍ୟ ଅର୍ଥ ବୁଝିପାରୁଛି । ତା' ପରଠାରୁ ମୁଁ ମଧ୍ୟ ତା ହସର ଅଂଶୀଦାର ହୋଇଗଲି ।

୧୯୪୪ ମସିହାର ସେହି ଗ୍ରୀଷ୍ମ ମଧ୍ୟାହ୍ନ କଥା ମୋ'ର ସ୍ପଷ୍ଟ ମନେ ଅଛି । ଯେଉଁଦିନ ଲିସେଟ୍‌ର ହସ ହଠାତ୍ ବନ୍ଦ ହୋଇଗଲା । ଫ୍ରାନ୍‌ସର ଏକ ଗାଡ଼ି ସେଠାରେ ଆସି ପହଞ୍ଚିବା ସଙ୍ଗେ ସଙ୍ଗେ ଜଣାଗଲା ଯେ ସେହି ଗାଡ଼ିରେ ଲିସେଟ୍‌ର ସ୍ୱାମୀ ମଧ୍ୟ ଆସିଥିଲା । ପ୍ରଥମାବସ୍ଥାରେ ସେହି ସମ୍ବାଦଟି ଏକ ଜନରବ ଭାବେ ପ୍ରଚାରିତ ହୋଇଥିବାରୁ ଲିସେଟ୍ ସେହି ଜନରବକୁ ବିଶ୍ୱାସ କରୁ ନଥିଲା । କିନ୍ତୁ ସତ୍ୟ ଜଣା ପଡ଼ିବାକୁ ବିଳମ୍ବ ହେଲା ନାହିଁ ।

ଲଣ୍ଡ୍ରି (ପୋଷାକ ସଫା ହେବା ସ୍ଥାନ)ରେ କାର୍ଯ୍ୟ କରୁଥିବା ଜଣେ ବନ୍ଦିନୀ ଲିସେଟ୍‌କୁ ତା' ସ୍ୱାମୀଠାରୁ ଆଣିଥିବା ଚିଠି ଖଣ୍ଡେ ଦେଲା ।

ସ୍ୱାମୀ କାରୋଲ ଚିଠିରେ ଲେଖିଥିଲା, ''ମୁଁ ତୁମ ପାଖରେ ଅଛି । ମୋତେ 'କମାଣ୍ଡୋ' ଦାୟିତ୍ୱ ଦିଆଯାଇନଥିଲେ ମୁଁ ଖୁସି ହୋଇ ଥାନ୍ତି, (Sonder Kommando - ଗ୍ୟାସ୍ ଚ୍ୟାମ୍ବର ଓ ଶବଦାହ ଗୃହରେ କାର୍ଯ୍ୟ କରୁଥିବା କର୍ମୀ) ମୁଁ ଆସିବା ମୁହୂର୍ତ୍ତରୁ ମୋତେ ଶବଦାହ ଗୃହରେ ନିଯୁକ୍ତ କରାଯାଇଛି । ସେହି କାର୍ଯ୍ୟଟି ବାସ୍ତବରେ କ'ଣ ମୁଁ ଦେଖି ନାହିଁ । କିନ୍ତୁ ମୁଁ ଅଧିକ ଦିନ ସେହି କାର୍ଯ୍ୟ କରିପାରିବି ବୋଲି ବିଶ୍ୱାସ କରିପାରୁ ନାହିଁ ।''

ସେଦିନ ସନ୍ଧ୍ୟାରେ ଲିସେଟ୍ ସେହି ଚିଠିକୁ ଆମମାନଙ୍କୁ ପଢ଼ିବାକୁ ଦେଇଥିଲା । ସେ ହତାଶା ଓ ନୈରାଶ୍ୟରେ ପୂରା ଭାଙ୍ଗି ପଡ଼ିଥିଲା । ତାହାର ପ୍ରିୟତମ ବ୍ୟକ୍ତି ସେହି

ପ୍ରେତପୁରୀର ସବାତଳ ପାହାଚରେ ଥିଲା । କମାଣ୍ଡୋମାନଙ୍କୁ ସେଠାରେ ଅଧିକ ଦିନ ବଞ୍ଚି ରହିବାକୁ ଦିଆଯାଉ ନଥିଲା । ସମସ୍ତ 'କମାଣ୍ଡୋ'ଙ୍କୁ ଗ୍ୟାସ୍‌ରେ ମାରି ପୁନର୍ବାର ନୂତନ ବନ୍ଦିନୀମାନଙ୍କ ମଧ୍ୟରୁ ନୂଆ କମାଣ୍ଡୋ ଷ୍ଟାଫ୍ ନିଯୁକ୍ତ ହେଉଥିଲେ । ଆଉସ୍‌ଭିଚ୍‌ରେ ଦୈନିକ ନୂଆ ନୂଆ କର୍ମୀ ଓ ବନ୍ଦିନୀ ଆସୁଥିବାରୁ ନୂଆ କମାଣ୍ଡୋଙ୍କର ଅଭାବ ନ ଥିଲା । ସେମାନେ ଭାବୁଥିଲେ ଯେ ସେହି ଉପାୟରେ ନାତ୍‌ସୀମାନେ ଯେଉଁ ଅମାନୁଷିକ କାଣ୍ଡ କରୁଥିଲେ ତାହାର କୌଣସି ସାକ୍ଷୀ ପ୍ରମାଣ ଲୋପ ପାଇଯିବା ଆବଶ୍ୟକ ।

ସେହି ଦିନଠାରୁ ଗ୍ୟାସ୍ ଗୃହରୁ କାରୋଲ ନିକଟରୁ ନିୟମିତ ଭାବରେ ଚିଠି ଆସୁଥିଲା ଭିନ୍ନ ଭିନ୍ନ ପତ୍ରବାହକଙ୍କ ହାତରେ ।

ଗୋଟିଏ ଚିଠିରେ କାରୋଲ୍ ଲେଖିଥିଲେ,

''ଅତି ଭୟଙ୍କର ଏ ଦୃଶ୍ୟ । ଆମ କମାଣ୍ଡୋ ବାହିନୀର କେତେଟି ମଣିଷ ଖପୁରୀ ଓ ହାଡ଼ରେ ଚୁଲା ତିଆରି କରି ସେଥିରେ ତରକାରୀ ତିଆରି କଲେ । ସେହି ଦୃଶ୍ୟରେ ମୋ'ର ହୃତକମ୍ପ ହେଉଥିବାର ଦେଖି ସେମାନେ ହସି ହସରେ ହସରେ ଉଡ଼ାଇ ଦେଲେ ।

ପରଦିନ ପୁଣି ଏକ ଚିଠିରେ ଲେଖିଥିଲେ ''ପ୍ରିୟ ଲିସେଟ୍ । ଗ୍ୟାସ୍‌କୁ ଯାଉଥିବା ଲୋକଙ୍କ ପାଖରେ ଥିବା ସୁନାକୁ ଅପହରଣ କରି କମାଣ୍ଡୋମାନେ ମଦ ମାଂସ ଯୋଗାଡ଼ କରୁଛନ୍ତି । ଗ୍ୟାସିଂ ପରେ ଯେଉଁ ଅବସର ମିଳେ ତାହା ମଦ ମାଂସରେ ଭାସି ଯାଉଛି । ସେ ଦୃଶ୍ୟ ଦେଖିଲେ ମୋତେ ବାନ୍ତି ମାଡୁଛି । ସେମାନେ ମୋତେ ଦେଖି ହସୁଛନ୍ତି ଏବଂ ମୋତେ ଓଲଟି ବୁଝାଉଛନ୍ତି ''ଜୀବନ୍ତ ଶବମାନଙ୍କ ଭିତରେ ଭଲମନ୍ଦ କ'ଣ ?''ଏ ପରିସ୍ଥିତି ଆଉ ସମ୍ଭାଳି ପାରିବି ନାହିଁ । କୁହ, ମୁଁ କ'ଣ କରିବି ।''

ଆମେ ସେହି ଭୟଙ୍କର ଚିଠି ପଢ଼ିଲୁ କିନ୍ତୁ ଲିସେଟ୍ ମୁହଁକୁ ଅନେଇ ପାରିଲୁ ନାହିଁ । ସେ ଆମ ହାତ ଧରି କହିଲା, ''ଝିଅମାନେ ମୋତେ ପରାମର୍ଶ ଦିଅ । ନିଶ୍ଚୟ କିଛି କରିବାକୁ ପଡ଼ିବ । ସେ ମୋ'ର ସାହାଯ୍ୟ ମାଗିଛନ୍ତି । ମୁଁ ତାଙ୍କୁ ପ୍ରତ୍ୟାଖ୍ୟାନ କରିବି କେମିତି ? ସେ ତାହା ହେଲେ କ'ଣ କରିବାକୁ ଚାହାନ୍ତି । ସେ ଆଉ ଯେତେ ଦିନ ବଞ୍ଚିବେ, ସେଦିନ ଗୁଡ଼ିକରେ କ'ଣ କରିବେ ?''

ପରବର୍ତ୍ତୀ ଚିଠିରେ ସେ କ'ଣ କରିବେ ତାହାର ନିଷ୍ପତ୍ତି ଶୁଣାଇ ଦେଇଥିଲେ । ସେ 'ଆତ୍ମହତ୍ୟା' କରିବେ । ପ୍ରିୟତମା ଲିସେଟ୍, ମୋତେ କ୍ଷମାକର, ମୁଁ ଏହାଛଡ଼ା ଆଉ କିଛି କରିପାରିବି ନାହିଁ । ଗ୍ୟାସ୍‌ରେ ବିକୃତ ହୋଇଯାଇ ଥିବା ଶବଗୁଡ଼ିକୁ ବାହାର କଲା ବେଳେ  ମହିଳା ଓ ଶିଶୁମାନଙ୍କ ଦଗ୍ଧୀଭୂତ ଶବଗୁଡ଼ିକର ଦୃଶ୍ୟ ତୁମେ କଳ୍ପନା କରିପାରିବ ନାହିଁ । ମୁଁ ମରିବାକୁ ଚାହେ । ମନୁଷ୍ୟମାନଙ୍କର ଏହି ଚରମ ପୈଶାଚିକତା- ପୁତ୍ର ତାହାର ପିତାକୁ ଗ୍ୟାସ୍ ଭିତରକୁ ଠେଲିଦେବାର ଦୃଶ୍ୟ ଭଳି ଘଟଣାର ମୁଁ ଆଉ

ନୀରବ ସାକ୍ଷୀ ହୋଇ ରହିପାରିବି ନାହିଁ । ଏହାହିଁ ଆମ କମାଣ୍ଡୋମାନଙ୍କର କାର୍ଯ୍ୟ ।

ସେତେବେଳେ ଆଉସ୍‌ଭିଡ୍‌ଜ୍‌ରେ ସଙ୍ଗଠିତ "ଫାସିଷ୍ଟ ବିରୋଧୀ ସଙ୍ଗଠନ"ର ଜଣେ ସକ୍ରିୟ ସଭ୍ୟ ଭାବରେ ଲିସେଟ୍ ସେହି ସଙ୍ଗଠନର ପରାମର୍ଶ ଚାହିଲେ । ସେ ସମ୍ପର୍କରେ ସଙ୍ଗଠନ ଏକ ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତ ନେଲେ । ସେମାନେ କହିଲେ "କାରୋଲ୍ କମାଣ୍ଡୋମାନଙ୍କର ଏକ ଗ୍ରୁପ୍ (ଶବଦାହ ଗୃହ) ଗଠନ କରି ଯଦି ଶବଦାହ ଗୃହକୁ ଏକ ବିସ୍ଫୋରଣରେ ଉଡ଼େଇ ଦେବାକୁ ପ୍ରସ୍ତୁତ ହୁଅନ୍ତି ତେବେ ଆମେ ତାଙ୍କୁ ସାହାଯ୍ୟ କରିବୁ ।"

ତାହା ଥିଲା ହିଟଲର୍ ଶାସନର ଶେଷ ଶରତ ଋତୁ । ଅହୋରାତ୍ର ଧୂମ୍ର କୁଣ୍ଡଳୀ ନିର୍ଗତ ହେଉଥିବା ଚାରିଗୋଟି ଶବଦାହ ଚୁଲା ମଧ୍ୟରୁ ଯଦି ଗୋଟାକୁ ବି ବିସ୍ଫୋରଣରେ ଉଡ଼ାଇ ଦିଆଯାଇ ପାରିବ, ତାହା ଏକ ପ୍ରଚଣ୍ଡ ଶବ୍ଦ ନକରି ଛାଡ଼ିବ ନାହିଁ । ସେହି ଶବ୍ଦ ବନ୍ଦିନୀମାନଙ୍କ ମନରେ ସାହସ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ବାହାରେ ମଧ୍ୟ ସମସ୍ତେ ଜାଣିବେ ଯେ କ୍ୟାମ୍ପରେ ଆମର ହିଟଲର ବିରୋଧୀ ସଂଗ୍ରାମ ଚାଲୁ ରହିଛି ।

ଆମ୍ଭେମାନେ ତାହାହିଁ ବୁଝିଥିଲୁ । କିନ୍ତୁ ନିଜେ ଲିସେଟ୍ ସେ ବିଷୟରେ କ'ଣ ଭାବୁଥିଲା ? ସେ ଠିକ୍ ଜାଣିଥିଲା ଯେ 'କ୍ରିମାଟୋରିଅମ୍'ର ବିସ୍ଫୋରଣ ସହ ତାର ପ୍ରାଣପ୍ରିୟ କାରୋଲ୍‌ର ମଧ୍ୟ ଜୀବନାବସାନ ।

କିନ୍ତୁ ଲିସେଟ୍ ଶାନ୍ତ ଦିଶୁଥିଲେ । ତାଙ୍କର ମୁଖମଣ୍ଡଳ ପ୍ରସ୍ତର ଖଣ୍ଡ ଭଳି ନୀରବ ଓ ନିଶ୍ଚଳ । ସେ ଆମ ସହ ଆଉ ଆଲୋଚନା କରି ନଥିଲେ । ତାହାର କିଛିଦିନ ପରେ ଗୁପ୍ତ ସଙ୍ଗଠନର ଡାଇରେକ୍ଟରଙ୍କୁ କାରୋଲ୍ ଲେଖିଥିବା ଏକ ଚିଠି ଆମକୁ ଦେଖାଇଲେ । ସେଥିରେ କାରୋଲ୍ ଲେଖିଥିଲେ "ମୁଁ କାହିଁକି ବଞ୍ଚିଛି ସେତିକି ଜାଣିପାରି ମୁଁ ଉଲ୍ଲସିତ ।" ସେ ଚିଠିପଢ଼ି ମୁଁ ଭାବୁଥିଲି, ସେ ଲେଖିଥାନ୍ତେ, "ମୁଁ ବଞ୍ଚି ରହିବା ପଛରେ ଏକ ମହତ୍ ଉଦ୍ଦେଶ୍ୟ ରହିଛି ।"

ଯେଉଁଦିନ 'ଶବଚୁଲ୍ଲୀରେ ବିସ୍ଫୋରଣ ହେଲା, ସେଦିନ କଥା ମୋର ସ୍ପଷ୍ଟ ମନେ ଅଛି । ସନ୍ଧ୍ୟା ହାଜିରା ବେଳ ହୋଇ ଆସିଥିଲା । ହଠାତ୍ ପ୍ରଚଣ୍ଡ ଶବ୍ଦ ଆକାଶରେ ପ୍ରତିଧ୍ୱନିତ ହେଲା । ଅବଶ୍ୟ ସେହି ଶବ୍ଦର ଅର୍ଥ ମୁଁ ଜାଣିଥିଲି । ଜର୍ମାନୀ କର୍ମଚାରୀମାନେ ସଙ୍ଗେ ସଙ୍ଗେ ତାଲାବନ୍ଦ ଘୋଷଣା କଲେ । "କେହି ବାହାରକୁ ଯାଅ ନାହିଁ ।" ଆମେ ଅଧାଖୋଲା ଗେଟ୍ ପାଖରେ ଛିଡ଼ା ହୋଇ ସେ ଆଡ଼କୁ କାନ ଡେରିଲୁ । ଅନତି ଦୂରରେ କେତେକ ଜର୍ମାନମାନଙ୍କର ଆକୁଳ ଚିତ୍କାର ଏବଂ ଘନ ଘନ ଗୁଳି ଶବ୍ଦ ଶୁଣାଗଲା ଲୋକମାନଙ୍କର ଦୌଡ଼ା ଦୌଡ଼ି ଶବ୍ଦ ମଧ୍ୟ ଶୁଭୁଥିଲା । କିଛି ସମୟ ପରେ ପବନରେ ଯେମିତି ଭାସି ଆସିଲା ଆନ୍ତର୍ଜାତିକ ମୁକ୍ତି ସଙ୍ଗୀତ:- ଆମେ ବିଜୟୀ ହେବୁ, ଆମେ ବିଜୟୀ ହେବୁ ଆମେ ବିଜୟୀ ହେବୁ, ଦିନେନା ଦିନେ ।

ମନେ ହେଉଥିଲା ଯେମିତି ଭିନ୍ନ ଭିନ୍ନ ଭାଷାର ମିଶ୍ରିତ ସେହି ସଙ୍ଗୀତର ସ୍ୱର ଭାସି

ଆସୁଥିଲା ଅତି ସ୍ପଷ୍ଟ ଭାବରେ ଏବଂ ଉଚ୍ଚ କଣ୍ଠରେ । ମୁମୂର୍ଷୁମାନେ ସ୍ୱାଗତ କରୁଥିଲେ ଆସନ୍ନ ବିପ୍ଳବକୁ ଓ ଘୋଷଣା କରୁଥିଲେ, "ଫାସିବାଦ ମୁର୍ଦ୍ଦାବାଦ୍ ।" ପ୍ରାଚୀନ ରୋମୀୟ ସୈନ୍ୟମାନେ ସିଜରଙ୍କୁ ସ୍ୱାଗତ କଲାଭଳି ଶୁଭୁଥିଲା ସେହି ସ୍ଲୋଗାନ୍ । ହେ ସିଜର ! ମୁମୂର୍ଷୁମାନେ ତୁମକୁ ନମସ୍କାର କରୁଛନ୍ତି । (Caesari, morituri te salutant) ତା' ପରେ ଅଧିକ ଗୁଳିଶବ୍ଦ, କ୍ରନ୍ଦନ ରୋଳ ଓ ଶେଷରେ ସବୁ ଚୁପ୍ ।

ସନ୍ଧ୍ୟା ହାଜିରା ନିଆଗଲା । ସ୍ୱାଭାବିକ ଭାବେ ଅର୍କେଷ୍ଟ୍ରା ମଧ୍ୟ ବାଜିଲା । ସମସ୍ତ ବନ୍ଦିନୀ ମୁଣ୍ଡ ନୁଆଁଇ ସମ୍ମାନ ଜଣାଇଲେ ଯେପରିକି ସେମାନଙ୍କର ସ୍ମିତ ମୁଖ ମଣ୍ଡଳରେ ଜର୍ମାନ ପୋଲିସ୍‌ର ଦୃଷ୍ଟି ନପଡ଼େ । ଯେଉଁମାନେ ବୀର ଭାବରେ ମୃତ୍ୟୁ ବରଣ କଲେ ସେମାନଙ୍କ ପାଇଁ ଆମେ ଗର୍ବ ଅନୁଭବ କଲୁ । ବର୍ଷ ବର୍ଷ ଧରି ଆମେ ଯେଉଁ ମୃତ୍ୟୁ ଦେଖି ଆସିଥିଲୁ, ତାହା ଠାରୁ ଏ 'ମୃତ୍ୟୁ' କେତେ ତଫାତ୍ ସତେ !

ରାତ୍ରିର ଅନ୍ଧକାର ଭିତରେ ମାସ୍‌ଦା ଅକ୍ଷମଶାଳାକୁ ଦୌଡ଼ିଆସି ପାଟି କରି କହିଲା, "ଡାକ୍ତର, ଡାକ୍ତର ଲିସେଟ୍ ତା'ର ହାତର ଶୀରା କାଟି ଦେଇଛି । ଆମେ ସମସ୍ତେ ସେଠାକୁ ଦୌଡ଼ିଲୁ । ସେତେବେଳକୁ ତା' ହାତରେ ବ୍ୟାଣ୍ଡେଜ୍ ବନ୍ଧା ସରିଥିଲା । ସେ ବଙ୍କର ଭିତରେ ଶୋଇଥିଲା । ପୂରା ଶେତା ପଡ଼ିଯାଇଥିଲା ସେ । ତଥାପି ତା' ଓଠରେ ସେହି ସ୍ମିତ ହାସ । ସେ ଆଉ ଏ ପ୍ରେତପୁରୀରେ ନାହାନ୍ତି । ସେ ଚାଲି ଯାଇଛନ୍ତି । ବାରମ୍ବାର ସେ ସେହି କଥା ହିଁ କହୁଥିଲା ।

■■■

– ୧୬ –

# ମେରୀ ଏବଂ ଓଡେଟ୍

ଓଡେଟ୍ ଜଣେ ଫରାସୀ ବାଳିକା । ୧୯୪୪ ଜାନୁୟାରୀ ମାସରେ ତାକୁ ଆଉସ୍‌ଭିତ୍‌ଜକୁ ଅଣାଯାଇଥିଲା । ମୁଁ ସେତେବେଳେ ନୂତନ ଆଗନ୍ତୁକ ଜୁଙ୍ଗାଙ୍ଗୀ ବ୍ଲକ୍‌ରେ ରହୁଥିଲି । ତାହାର ବୟସ ଥିଲା ପନ୍ଦର ବର୍ଷ । ତା'ର ମା' ମେରୀ ବୟସ୍ ଖୁବ୍ ବେଶୀରେ ତିରିଶି ବର୍ଷ ହୋଇପାରିଥାଏ । ମା' ଝିଅ ଦୁଇଜଣଙ୍କ ଚେହେରା ପ୍ରାୟ ସମାନ । ସେମାନେ ଦୁଇ ଭଉଣୀ ପରି ଦିଶୁଥିଲେ । ଉଭୟ ସୁନ୍ଦରୀ- ପତଳା ବାଦାମୀ ରଙ୍ଗର ଚକ୍ଷୁ ଯୁଗଳ ଓ ଉଜ୍ଜ୍ୱଳ ମୁଖ ମଣ୍ଡଳ । ସେମାନେ କେବଳ ଫରାସୀ ଭାଷା ବୁଝୁ ଥିବାରୁ ସର୍ଦ୍ଦାରର ହୁକୁମ୍ ବୁଝିପାରୁ ନଥିଲେ । ତେଣୁ ଅକାରଣରେ ମାଡ଼ ଖାଉଥିଲେ । ଅନେକ ସମୟରେ ମୁଁ ସେମାନଙ୍କର ଦୋଭାଷୀ କାର୍ଯ୍ୟ କରୁଥିଲି । ବୋଧହୁଏ ସେଥିପାଇଁ ସେ ବି ଜଣ ମୋତେ ଟିକେ ବିଶ୍ୱାସ କରୁଥିଲେ ।

ଓଡେଟ୍‌ର ମା' ମେରୀ ଜଣେ ଦରଜୀ ଥିଲେ । ଓଡେଟ୍ କଲେଜ୍‌ରେ ପଢୁଥିଲେ । ସେମାନେ ପ୍ୟାରିସ୍ ସହରର ବାସିନ୍ଦା ଥିଲେ । ହିଟଲର୍ ପ୍ୟାରିସ୍ ଦଖଲ କରିବା ପରେ ନାତ୍‌ସୀମାନେ ସଙ୍ଗେ ସଙ୍ଗେ ମେରୀର ସ୍ୱାମୀକୁ ଗୁଳି କରି ଦେଇଥିଲେ । ମା' ଝିଅ କାହିଁକି ଗିରଫ ହୋଇଥିଲେ ମୁଁ ଅବଶ୍ୟ ସେମାନଙ୍କୁ ପଚାରି ନଥିଲି ।

ଦିନେ ସନ୍ଧ୍ୟାରେ ମେରୀ ନିକଟେ ଆସି ମୋତେ କହିଲେ, ''ତୁମେ ଭାବୁଥିବ ମୋ'ର କାର୍ଯ୍ୟକଳାପ ପାଇଁ ସେମାନେ ଆମ ଦୁହିଁଙ୍କୁ ଧରି ଆଣିଛନ୍ତି । ତୁମେ କ'ଣ ବିଶ୍ୱାସ କରିପାରିବ ଯେ ମୋର ଏଇ ଛୋଟ ଝିଅଟି ଜର୍ମାନମାନଙ୍କ ବିରୁଦ୍ଧରେ ଲଢୁଥିଲା ବୋଲି ? ସେମାନେ କେମିତି ତା'ର ପିଛା ଧରିଲେ ମୁଁ ଜାଣି ନଥିଲି । ସେମାନେ ତାକୁ ଗିରଫ କରିବାକୁ ଆସିଲା ବେଳେ ମୁଁ ସେମାନଙ୍କୁ ମୋତେ ଗିରଫ କରି ନେବାକୁ ଅନୁରୋଧ କଲି । କିନ୍ତୁ ସେମାନେ ଶୁଣିଲେନି, କାହାକୁ ଅପେକ୍ଷା କରି ରହିଲେ । ଓଡେଟ୍ ଘରକୁ ଫେରିବା ସଙ୍ଗେ ସଙ୍ଗେ ଆମ ଦୁହିଁଙ୍କୁ ଗିରଫ କରି ନେଇ ଆସିଲେ । ଆମ ଦୁଇ ଜଣ କିଏ କ'ଣ ତାହା ମଧ୍ୟ ଆଜି ପର୍ଯ୍ୟନ୍ତ ସେମାନେ ଜାଣି ନାହାନ୍ତି । ସେଥିପାଇଁ ଆମେ ଗୋଟାଏ ବଡ଼ ମାଡ଼ରୁ ରକ୍ଷା ପାଇଲୁ । ଆମେ ଆଜି ଆଉସ୍‌ଭିଡ୍‌ଜ୍‌ରେ । ଆମେ ଜାଣୁ ଯେ ଏଠାରେ ଅଧିକ ଦିନ ବଞ୍ଚିବୁ ନାହିଁ । ମୋର ହାର୍ଟ ଅତ୍ୟନ୍ତ ଦୁର୍ବଳ ଏବଂ ମୋର ଝିଅ ବଡ଼ ଦୁଃସାହସିନୀ ।

ସେମାନେ ଏକାଠି ରହୁଥିବାରୁ ମୋତେ କେତେ ଖୁସି ଲାଗୁଥିଲା ! ମା' ଝିଅ କୋଳାକୋଳି ହୋଇ ସେହି କଠିନ ଶଯ୍ୟା ଉପରେ ଶୋଇଥିବାର ଦେଖିଲେ ମନେ ହେଉଥିଲା ଯେପରିକି ସେମାନେ ନିଜ ଘରେ ଶୋଇଛନ୍ତି ବୋଲି ସ୍ୱପ୍ନ ଦେଖୁଥିବେ । ବୋଧହୁଏ ସେମାନେ ଗ୍ୟାସ୍ ପାଇଁ 'ବଛାବଛି' ରେ ପଡ଼ିଯାଇଥିଲେ । ମୁଁ ହସ୍‌ପିଟାଲ୍‌କୁ ଯିବା ପରେ ସେମାନଙ୍କୁ ଆଉ ଦେଖିବାକୁ ପାଇ ନଥିଲି ।

୧୯୪୪ର ବସନ୍ତ ଋତୁ ଖୁବ୍ ଥଣ୍ଡା ଓ ବଡ଼ କଦର୍ଯ୍ୟ ଥିଲା । ଆମେ ଉଷ୍ମ ପାଗକୁ ଖୁବ୍ ଉତ୍ସୁକତା ସହକାରେ ଅପେକ୍ଷା କରୁଥିଲୁ । ତାହା ଆମ ପାଇଁ ଯେତେ ଦରକାର ନଥିଲା, ଯେଉଁ ମହିଳାମାନେ ତୁଷାରାଘାତ ହେତୁ ଅଶେଷ ଯନ୍ତ୍ରଣା ଭୋଗୁଥିଲେ ସେମାନଙ୍କ ପାଇଁ ତାହା ଦରକାର ଥିଲା । ବହୁଲୋକ ନିମୋନିଆ ଭୋଗୁ ଥିଲେ । ତଥାପି କାମ ବନ୍ଦ କରୁ ନଥିଲେ କିମ୍ବା ହସ୍‌ପିଟାଲ୍‌କୁ ଯାଉ ନଥିଲେ କାରଣ ଅଧିକାଂଶ ସମୟରେ ହସପିଟାଲ୍‌ରେ 'ବଛାବଛି' ହେଉଥିଲା ।

ମୁଁ ଅକ୍ଷମଶାଳାରେ କାମ କରୁଥିଲି ସତ କିନ୍ତୁ ହସ୍‌ପିଟାଲ୍‌ରେ ଶୋଉଥିଲି କାରଣ ସେଠାରେ ମୁଁ ଜଣେ ରୋଗୀ ଭାବରେ ପଞ୍ଜିକୃତ ହୋଇଥିଲି । ମୁଁ ତ ପ୍ରାୟ ରାତ୍ରିଭୋଜନ ପରେ ହସ୍‌ପିଟାଲ୍‌କୁ ଯାଉଥିଲି । ଲାଇଟ୍ ମିଞ୍ଜି ମିଞ୍ଜି ହୋଇ ଜଳୁଥିଲା । କ୍ରନ୍ଦନ ଓ ରୋଗୀ

ଯନ୍ତ୍ରଣାରେ ବାୟୁ ମଣ୍ଡଳ ଭାରି ଭାରି ଲାଗୁଥିଲା । ସେଦିନ ମୁଁ ସଅଳ ସଅଳ ହସ୍‌ପିଟାଲ୍‌କୁ ଫେରିଥିଲି । ଏପରିକି ରାତ୍ରିଭୋଜନ ଆଗରୁ । ଓ୍ୱାର୍ଡେନ୍ ମୋତେ ତାହାର ସମାଲୋଚ ମନେ କରୁଥିଲା ଏବଂ ମୋତେ ଗେଟ୍ ପାଖରେ ଦେଖିଲା । ମୋ ହାତ ଧରି ମୋ ସାଙ୍ଗରେ ବ୍ଲକ୍‌କୁ ଆସିଲା ସେଟା ତା'ର ସନ୍ଧ୍ୟା 'ରାଉଣ୍ଡ' ବେଳ । ସେ ବ୍ଲକ୍ ଭିତରେ ବୁଲିଲା । ମୁଁ ମୋ ବେଡ୍ ପାଖରେ ଛିଡ଼ା ହୋଇଥିଲି ।

ହଠାତ୍ ଓ୍ୱାର୍ଡେନ୍‌ର ଗର୍ଜନ ମୋର କର୍ଣ୍ଣଗୋଚର ହେଲା । ଓଃ କି ଗର୍ଜନ ସେ । ଗର୍ଜନକୁ ନେତୃତ୍ୱର ଲକ୍ଷଣ ବୋଲି ଭାବନ୍ତି ସେମାନେ । ତେଣୁ ଉଚ୍ଚ କଣ୍ଠରେ ଗର୍ଜନ କରିବା ସେମାନଙ୍କର ପ୍ରକୃତି । ତା' ପରେ ମୋତେ ମାଡ଼ର ଶବ୍ଦ ଶୁଭିଲା, ଏବଂ ତା ସାଙ୍ଗକୁ କ୍ଷୀଣ ପ୍ରତିବାଦର ଧ୍ୱନି । ମୁଁ ସେହି ଆଡ଼କୁ ଚାଲିଲି । ସେଠାରେ ଦେଖିଲି ଓଡେଟ୍ ଛିଡ଼ା ହୋଇଛି ଓ୍ୱାର୍ଡେନ୍ ସାମନାରେ । କିନ୍ତୁ ମୁହଁ ତାର ଲାଲ୍ ପଡ଼ିଥିଲା । ତା ମା ପାଖ ଶଯ୍ୟାରେ ପଡ଼ି ରହିଥିଲା ।

ଦୁଃଖରେ ସେ କହୁଥିଲା, ''ସେମାନଙ୍କୁ କହିଦିଅ ଏ ହେଉଛି ମୋ ' ମା । କିନ୍ତୁ ସେ କଥା ସେମାନେ ବିଶ୍ୱାସ କରିବାକୁ ରାଜି ନୁହନ୍ତି । ସେ ମୋ' ମା, ମୋ' ମା ।''

ନୂତନ ଆଗନ୍ତୁକମାନଙ୍କୁ ବି ଫିଲ୍‌ଡକୁ ନିଆଯାଉଥିଲା । ସେଠାରୁ ସେମାନଙ୍କୁ ଶିଳ୍ପାଞ୍ଚଳରେ ଥିବା ଅସ୍ତ୍ରଶସ୍ତ୍ର କାରଖାନାକୁ କମାଣ୍ଡୋମାନେ ନେଇଯାଇ ସେଠାରେ କାମ କରାଉଥିଲେ । କିନ୍ତୁ ସେହି କାର୍ଯ୍ୟ ବହୁତ କଷ୍ଟଦାୟକ ହୋଇଥିବାରୁ ସେଠାରେ କାମ କରି କରି ତା'ର ମା' ବେମାର ପଡ଼ିଥିଲା ।

ଓଡେଟ୍ କାନ୍ଦି କାନ୍ଦି କହୁଥିଲା, ''ତା'ର ହାର୍ଟ ଦୁର୍ବଳ ।'' ସପ୍ତାହେ ହେବ ମା' ତା'ର ବିଛଣାରେ ପଡ଼ିଥିଲା ଏବଂ ଦିନକୁ ଦିନ ତା'ର ସ୍ୱାସ୍ଥ୍ୟର ଅବସ୍ଥା ଖରାପ ଆଡ଼କୁ ଯାଉଥିଲା ।

ଓଡେଟ୍ ମୋ'ର ଦୁଇ ହାତକୁ ଧରି ଓ ମୋର ମୁହଁକୁ ଅନେଇ କହିଲା, ''ମୁଁ କ'ଣ କରିବି ମୋତେ କହନ୍ତୁ । ମା' କେମିତି ରକ୍ଷା ହେବ ?''

ମୁଁ ବା କି ଉତ୍ତର ଦେବି ତାକୁ ? ମୁଁ ଦୈନିକ ସନ୍ଧ୍ୟାରେ ତା'ର ମା'କୁ ଦେଖିବା ଛଡ଼ା ଅଧିକ ବା କ'ଣ କରିପାରିଥାନ୍ତି ? ସେମାନେ ଯେତେବେଳେ ପରସ୍ପରକୁ ଭେଟୁଥିଲେ ଦୁଇପଦ ଅନ୍ତରଙ୍ଗ ଆଳାପ ହେଉଥିଲା ସେମାନଙ୍କ ମଧ୍ୟରେ । ତାହା ଛଡ଼ା ଆଉ କ'ଣ ବା ହୁଅନ୍ତା ? ଓଡେଟ୍ ତା' ମା'କୁ କଣ ବା ଦେଇପାରିଥାନ୍ତା ? ଡାକ୍ତର ମାନ୍‌ସୀ ମେରୀକୁ ଭଲ ଭାବରେ ପରୀକ୍ଷା କରି ମୋତେ ଦୃଢ଼ତା ସହକାରେ କହିଲେ ସେ ଆଉସ୍‌ଭିଚ୍‌ଜ୍‌ରେ ଅଧିକ ଦିନ ବଞ୍ଚିପାରିବ ନାହିଁ । ଦୈନିକ ସକାଳେ କମାଣ୍ଡୋ ଓଡେଟ୍‌କୁ କାମକୁ ନେଲାବେଳେ ସେ ହସ୍‌ପିଟାଲ୍ ବେଡ୍‌ରେ ମା'କୁ ଟିକିଏ ଦେଖିଯିବାକୁ

ଦୌଡ଼ିଆସେ । ତାକୁ ଗୁଡ଼ମର୍ଣ୍ଣି କରିଦେଇ ମଥାରେ ଗୋଟିଏ ଚୁମାଦିଏ ଓ ଟିକେ ଗେହ୍ଲେଇ ହୋଇପଡ଼ି କାମକୁ ପଳାଇଯାଏ ।

ମେରୀର ମୃତ୍ୟୁ ଦିନର ଘଟଣାଗୁଡ଼ିକ ମୋ'ର ସ୍ପଷ୍ଟ ମନେ ଅଛି । ସବୁଦିନ ଭଳି ସେଦିନ ମଧ୍ୟ ଓଡେଟ୍ ତାର ମା'କୁ ଦେଖି ଯାଇଥିଲା । କିନ୍ତୁ ଯିବା ପଛେ ପଛେ ମେରୀର ଦେହ ଅଧିକ ଖରାପ ହୋଇଗଲା । ଅଳ୍ପ କେଇ ମିନିଟ୍ ପରେ ସେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲା । ସକାଳୁ ସର୍ଦ୍ଦାର ବ୍ଲକ୍‌ରେ ଚାରିଆଡ଼େ ବୁଲିଗଲା ଏବଂ ମୃତ ଲୋକଙ୍କ ଶବକୁ ଘୋଷାଡ଼ି ନେଲା । ସେମାନଙ୍କର ପୋଷାକ ପତ୍ର କାଢ଼ିଦେଇ ସମ୍ପୂର୍ଣ୍ଣ ଉଲଗ୍ନ କରିଦେଲା ଏବଂ ଶବ ଗୁଡ଼ିକୁ ବ୍ଲକ୍ ଆଗରେ ଗଦା କରିଦେଲା । କିଛି ସମୟ ପରେ ଶବବାହକ ଶବ ଗୁଡ଼ିକୁ ଏକତ୍ର କରି ଅକ୍ଷମଶାଳା ସମ୍ମୁଖରେ ଗଦା କରିଦେବା ନିୟମ ।

ସେଦିନ ପ୍ରବଳ ବର୍ଷା ଓ ତୁଷାର ପାତ । ମେରୀର ଶବ ସେହି ବର୍ଷା ଭିତରେ ସେମିତି ପଡ଼ିଥିଲା । ଯଦିଓ ବଞ୍ଚିଥିବା ବେଳେ ସେ କଙ୍କାଳସାର ହୋଇ ଯାଇଥିଲା, କିନ୍ତୁ ମୃତ୍ୟୁପରେ ସେଭଳି ବିକୃତ ଦଶୁ ନଥିଲା । ସେଦିନ ତାର ଝିଅ ସବୁଦିନ ଭଳି ମା'କୁ ଦେଖିବାକୁ ଆସିବା ପୂର୍ବରୁ ମୁଁ ମେରୀର ଶବକୁ ଅନ୍ୟ କେଉଁଠାରେ ରଖିଦେବାକୁ ଚାହୁଁଥିଲି । କିନ୍ତୁ ସେଠାରେ ଅନ୍ୟ ସ୍ଥାନ ନଥିଲା । ମୁଁ ତାକୁ ନେଇ ପୁଣି ତା'ର ବେଡ୍‌ରେ ପକାଇ ଦେବାକୁ ଚାହୁଁଥିଲି କିନ୍ତୁ ସେତେବେଳକୁ ଆଉ ଜଣେ ରୋଗୀ ସେ ବେଡ୍‌ରେ ଶୋଇଯାଇଥିଲା । ଅଧିକନ୍ତୁ ଗୋଟାଏ ଶବକୁ ଜୀବନ୍ତ ଲୋକଙ୍କ ଗହଳରେ ରଖିବା ସହଜ କଥା ନଥିଲା । ଶେଷରେ ମୁଁ ତାକୁ ଚଉତରା ଉପରକୁ ନେବାକୁ ଚେଷ୍ଟା କଲି କିନ୍ତୁ ସର୍ଦ୍ଦାର ମୋତେ ପିଟିବା ପାଇଁ ଦୌଡ଼ି ଆସିଲା । ମେରୀର ଶବ ବ୍ଲକ୍ ଆଗରେ ସେମିତି ପଡ଼ି ରହିଲା । ଓଡେଟ୍ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ମୋ'ର ଆଉ ମାନସିକ ଶକ୍ତି ନଥିଲା । କାଦୁଅ ଓ ବରଫରେ ଗୋଳେଇ ହୋଇ ପଡ଼ିରହିଥିବା ମେରୀର ଉଲଗ୍ନ ଶବକୁ ଓଡେଟ୍ ଦେଖିବା ପର୍ଯ୍ୟନ୍ତ ମୁଁ ସେଠାରେ ରହିବାକୁ ଚାହିଁଲି ନାହିଁ ।

ମୁଁ ଅକ୍ଷମଶାଳାକୁ ପଳେଇ ଗଲି । କାହିଁକି କେଜାଣି, ମୁଁ ଭାବିଲି ଓଡେଟ୍ ଆଜି ବୋଧେ ଆସିବ ନାହିଁ । ସନ୍ଧ୍ୟା ଭିତରେ ମେରୀର ଶବ ମଧ୍ୟ ସେଠାରେ ନଥିବ । ଦୂରରେ ଛିଡ଼ା ହୋଇ ମୁଁ ଗୋଟିଏ ଆଡ଼କୁ ଅନେଇ ରହିଲି । ଗେଟ୍ ଖୋଲିବାର ଶବ୍ଦ ହେଲା । ଓଡେଟ୍ ପାରୁ ପର୍ଯ୍ୟନ୍ତ ଦୌଡ଼ିଗଲା ମା' ଉଦ୍ଦେଶ୍ୟରେ । ମା' ମରିଥିବା ଖବର କେହି ତାକୁ କହିଦେଲା କି କ'ଣ, ମିନିଟିଏ ଭିତରେ ସେ ସେଠାରୁ ପଳେଇଗଲା, ବ୍ଲକ୍ ସାମ୍ନାରେ ଛିଡ଼ା ହୋଇ କିଛି ସମୟ ସେହି ଶବଗଦାକୁ ନିରୀକ୍ଷଣ କଲା, ''ହେଇ ମୋ' ମା' କହି ଏକ କରୁଣ ଚିତ୍କାର କରି ସେ ବରଫ ଗଦା ଉପରକୁ ଚଢ଼ିଗଲା । ମା'ର ଶବ ନିକଟରେ ନୀରବରେ ବସି ମା' ମା' କହି ଶବକୁ ଟିକେ ଆଲିଙ୍ଗନ କଲା । ତା'ପରେ

ସେ ଉଠିପଡ଼ି ଦୌଡ଼ିଲା ଏବଂ କମାଣ୍ଡୋ ସହ ତା'ର କର୍ମସ୍ଥଳକୁ ପଳାଇଲା । ଆଜି ମଧ୍ୟ ମୋ' କାନରେ ପ୍ରତିଧ୍ୱନିତ ହେଉଛି ସେ କରୁଣ ବିଳାପ ଧ୍ୱନି । ବିଚରା ଓଡେଟ୍ । ଏହି ଭୟଙ୍କର ପୃଥିବୀରେ ସେ ସମ୍ପୂର୍ଣ୍ଣ ଏକା ।

ଓଡେଟ୍ ଆଉ ସେ 'ଏରିଆ'କୁ ଆସିଲା ନାହିଁ ସେ ଅନ୍ୟ 'ଏରିଆ'ରେ ରହୁଥିଲା । ତା'ର କ'ଣ ହେଲା ମୁଁ ଜାଣି ନଥିଲି । ସେ ଯଦି ସେଠାରେ ନଥାଏ, ତା' ଅର୍ଥ ଏହା ହୋଇପାରେ ଯେ ସେ ବେଶ୍ ସ୍ୱାସ୍ଥ୍ୟବତୀ ଥିବାରୁ କମାଣ୍ଡୋମାନଙ୍କ ମଧ୍ୟରୁ କାହା ସହ ବନ୍ଧୁତା କରି ସେ ସେଠାରେ ରହି କାର୍ଯ୍ୟ କରିପାରୁଥାଏ ।

୧୯୪୪ ମସିହା ଅକ୍ଟୋବର ମାସ ଶେଷ ହୋଇଗଲା । ବିପ୍ଳବୀ ବୀର କମାଣ୍ଡୋମାନେ ଗୋଟିଏ ଶବପୋଡ଼ା ଚୁଲ୍ଲୀକୁ ବିସ୍ଫୋରଣରେ ଉଡ଼ାଇ ଦେଇଥିବାରୁ ଆମେମାନେ ମନ ଭିତରେ ବେଶ ଉତ୍ସାହବୋଧ କରୁଥିଲୁ । ସଂଧ୍ୟାରେ ପ୍ରାୟ ସେହି ଗୋଟିଏ ବିଷୟ ହିଁ ଆଲୋଚନା ହେଉଥିଲା । ବିସ୍ଫୋରଣରେ ସମସ୍ତେ ମରିଯାଇଥିଲେ କିମ୍ବା କେତେକ ରକ୍ଷା ପାଇଥିଲେ ସେକଥା ଆମେମାନେ ଜାଣିପାରୁ ନଥିଲୁ । ଅକ୍ଟୋବରର ଦୀର୍ଘ ରାତ୍ରିରେ ବାରମ୍ବାର କୁକୁରମାନେ ଭୁକୁଥିଲେ । ମନେ ହେଉଥିଲା ନାତ୍ସୀ ଆତଙ୍କବାଦୀମାନେ ସେତେବେଳେ ନିଶ୍ଚୟ କାହାକୁ ଖୋଜୁଥିଲେ ।

ତା'ର କିଛିଦିନ ପରେ ଆମେ ଏକ ଭୟଙ୍କର ସମ୍ବାଦ ଜାଣିବାକୁ ପାଇଲୁ ଯେ ବିସ୍ଫୋରଣ ପାଇଁ ବିସ୍ଫୋରକ ଯୋଗାଉଥିବା ଅଭିଯୋଗରେ ଶିଳ୍ପାଞ୍ଚଳରେ କାର୍ଯ୍ୟ କରୁଥିବା ଚାରିଜଣ ତରୁଣୀ ଧରା ହୋଇଥିଲେ । ସେମାନଙ୍କ ମଧ୍ୟରୁ ଅନ୍ୟତମ ତରୁଣୀ ଥିଲା ଓଡେଟ୍ । ଗୋଟେ ବଙ୍କରରେ ରଖି ସେମାନଙ୍କୁ ଅକଥନୀୟ ନିର୍ଯ୍ୟାତନା ଦେଲେ । କିନ୍ତୁ ସମସ୍ତ ନିର୍ଯ୍ୟାତନା ସତ୍ତ୍ୱେ ଆତଙ୍କବାଦୀମାନେ ଆଉ କାହାରି ନାମ ଆଦାୟ କରିପାରି ନଥିଲେ । ସେମାନେ ନିଶ୍ଚୟ ମରିବେ ବୋଲି କାହାରି ସନ୍ଦେହ ନଥିଲା । କିନ୍ତୁ ସେମାନଙ୍କୁ କି ପ୍ରକାରର ମୃତ୍ୟୁ ଦେବା ପାଇଁ ଜର୍ମାନ୍‌ମାନେ ଚିନ୍ତା କରୁଥିଲେ ସେକଥା ଜାଣିବା ପାଇଁ ସମସ୍ତେ ଅପେକ୍ଷା କରିଥିଲେ ।

ଏକ ବର୍ଷଣ ମୁଖର ସନ୍ଧ୍ୟାରେ କମାଣ୍ଡୋମାନେ କାର୍ଯ୍ୟକ୍ଷେତ୍ରରୁ ଫେରିବା ବେଳେ ସେହି ବୀରାଙ୍ଗନା ଝିଅ ଚାରିଜଣକୁ ହତ୍ୟାକରି ଗେଟ୍ ଉପରେ ଟଙ୍ଗାଇ ଦିଆ ଯାଇଥିଲା । ଏବଂ ତା' ତଳେ ସେହି ପ୍ରତାରଣାପୂର୍ଣ୍ଣ ସାଇନ୍ ବୋର୍ଡ଼ 'କର୍ମ ହିଁ ମୁକ୍ତି ଦିଏ' (Arbeit macht frei) ଟଙ୍ଗା ଯାଇଥିଲା ।

ମେରୀ ତାଙ୍କ ଝିଅ ସମ୍ପର୍କରେ ଅଭ୍ରାନ୍ତ ଭବିଷ୍ୟତ ବାଣୀ କରିଥିଲେ ଯେ ''ସେ ଏତେ ଦୁଃସାହସିନୀ ଯେ ଆଉସ୍‌ଭିଜ୍‌ରେ ସେ ତିଷ୍ଠି ପାରିବ ନାହିଁ । 'ବାସ୍ତବରେ ଓଡେଟ୍ କେବଳ ଦୁଃସାହସିନୀ ନଥିଲା ସେ ଥିଲା ଶିଶୁ ଭଳି ସରଳ ଓ ନିଷ୍କପଟ । ■■■

- ୧୭ -

# ପ୍ରଥମ ସନ୍ତାନର ଭାଗ୍ୟ

୧୯୪୪ ମସିହାର ଏପ୍ରିଲ୍ ମାସ ଅସ୍ୱାଭାବିକ ଭାବେ ଖରାଟିଆ ଥିଲା । ପବନରେ ଥିଲା ବସନ୍ତର ଉଷ୍ମତା । ସେ ବର୍ଷ ରେଳରାସ୍ତା ପାଖଦେଇ ସିଧା ଶବପୋଡ଼ା ଚୁଲ୍ଲୀପାଖକୁ ଯାଉଥିବା ରାସ୍ତା ପାଖରେ ମହିଳାମାନେ ମାଟି ଖୋଳା ଓ ତାଳପତ୍ର ସଜାଇବାରେ ବ୍ୟାପୃତ ଥିଲେ । ମାଟିରେ ସ୍ୱାଧୀନତାର ବାସ୍ନା ଥିଲା ଏବଂ ଆମମାନଙ୍କ ମନରେ ମୁକ୍ତିର ଆଶା ସଞ୍ଚାର କରୁଥିଲା । କଣ୍ଟା-ତାର ବାଡ଼ ବାହାରେ ମାଟିକୁଦରେ ଏକ ବଡ଼ ଚଉତରା ତିଆରି ହୋଇଥିଲା, ଯେଉଁଠାରେ ଆର୍କେଷ୍ଟ୍ରା ଓ ଏକକ ସଙ୍ଗୀତ ପରିବେଷିତ ହେଉଥିଲା । ସପ୍ତାହରେ ଦିନେ ମଧ୍ୟାହ୍ନ ଭୋଜନ ପରେ ସେହି ସଙ୍ଗୀତ ଆସର ବସୁଥିଲା । ଯେ କେହି ସମର୍ଥ ବ୍ୟକ୍ତି ସେଠାକୁ ଯିବାର ଅନୁମତି ଥିଲା । ବ୍ୟାରାକ୍ ବେଞ୍ଚ ଗୁଡ଼ାକ ବୁହାହୋଇ ସେଠାକୁ ଯାଉଥିଲା । ସୁସ୍ଥ ସବଳ ବ୍ୟକ୍ତିମାନେ ସେଠାରେ ଛିଡ଼ା ହୋଇ ବା ବସି ଅର୍କେଷ୍ଟ୍ରା ଦେଖି ପାରୁଥିଲେ । ଏବଂ ଆଉସ୍‌ଭିତ୍‌ଜ୍‌ର ଜଘନ୍ୟ ଜୀବନକୁ କ୍ଷଣ କାଳ ପାଇଁ ବିସ୍ମୃତ ହେଉଥିଲେ ।

ଅର୍କେଷ୍ଟ୍ରାରେ ହରେକ୍ କିସମର ବାଦ୍ୟଯନ୍ତ୍ର ଥିଲା । ପରିଚାଳନାରେ ଥା'ନ୍ତି ଜଣେ ରଷିୟାନ୍ ଏବଂ ଅନ୍ୟ ଜଣେ ହଙ୍ଗେରୀୟ ମହିଳା । ଆଉ ଜଣେ ହଙ୍ଗେରୀୟ ସୁନ୍ଦରୀ ଏକକ ସଙ୍ଗୀତ ପରିବେଷଣ କରୁଥିଲେ । ଅର୍କେଷ୍ଟ୍ରାର ସମସ୍ତ ବାଦକ ଏକା ପ୍ରକାର ପୋଷାକ ପିନ୍ଧୁଥିଲେ । ଜଣେ ତଳକଟା ଲାଲ୍ ରଙ୍ଗର ଗାଉନ୍‌ଟାଏ ପିନ୍ଧି ସେଠାରେ ସଙ୍ଗୀତ ପରିବେଷଣ କରିବାକୁ ଅନିଚ୍ଛା ପ୍ରକାଶ କରିବା ବିଷୟ ମୋର ବେଶ୍ ମନେ ଅଛି । ରଷିୟାନ୍ ତରୁଣୀ ଜଣକ ବେଶ୍ ଶାନ୍ତ ଓ ଧୀର ସ୍ଥିର ପ୍ରକୃତିର ମନେ ହେଉଥିଲା । ସେ ବ୍ୟାଟନ୍‌କୁ (Baton- ସଙ୍ଗୀତ ନିର୍ଦ୍ଦେଶକ ଧରିଥିବା କ୍ଷୁଦ୍ର ଯଷ୍ଟି) ଧରିବା ସଙ୍ଗେ ସଙ୍ଗେ ସଙ୍ଗୀତର ଝଙ୍କାର ସଞ୍ଚରି ଯାଉଥିଲା ସର୍ବତ୍ର । ସମସ୍ତ ପରିବେଶ କେତେ ନିରୀହ ଓ ସରଳ । କିନ୍ତୁ ଆମେ ଯେଉଁମାନେ ଜାଣିଥିଲୁ ଯେ ସେହି ଆପାତଃ ନିରୀହତା ବନ୍ଦିନୀମାନେ ଭୋଗୁଥିବା କେତେ ଅମାନୁଷିକତା, ଦୁଃଖ, ଯନ୍ତ୍ରଣା ଓ ଦୀର୍ଘଶ୍ୱାସକୁ ଘୋଡ଼େଇ ରଖିବା ପାଇଁ ଉଦ୍ଦିଷ୍ଟ ସେତେବେଳେ ଆମେ ନିଜେ ଚମକି ପଡୁ । ଅର୍କେଷ୍ଟ୍ରାର ୨ୟ ପରିଚାଳିକା ଜଣକର ଚେହେରା କୃଷ୍ଣବର୍ଣ୍ଣ ଏବଂ ଭୀତିପ୍ରଦ । ସେ ବେହେଲା ବଜାଉଥିଲେ ଏବଂ ବଜାଇବା ସହ ଚାରିପଟେ ବୁଲି ଯାଉଥିଲେ । ତାଳମାନଙ୍କୁ ମିଳେଇ ମିଳେଇ ଜୀପ୍‌ସି ମେଲୋଡ଼ି ସ୍ୱର ଶୁଣାଇ ଦେଉଥିଲେ ।

ପଶ୍ଚିମ ୟୁରୋପରୁ ଇହୁଦୀମାନଙ୍କୁ ନେଇ ଆସୁଥିବା ପୁଲ୍‌ମାନ୍ ଗାଡ଼ିଗୁଡ଼ିକ ମଧ୍ୟ ସେହି ତାର ବାଡ଼ ପାଖଦେଇ ଚାଲି ଯାଉଥିଲା ବେଳେ ଯାତ୍ରୀମାନେ ଝରକା ବାଟେ ହାତ ହଲେଇ ଅଭିନନ୍ଦନ ଜଣାଉଥିଲେ ଓ ସୁନ୍ଦର ସୁନ୍ଦର ଫଟୋ ମଧ୍ୟ ଉଠାଇ ନେଉଥିଲେ । ତାହା ସେମାନଙ୍କୁ ଭାରି ଖୁସି କରି ଦେଉଥିଲା ଏବଂ ସେମାନେ ବିଶ୍ୱାସ କରୁଥିଲେ ଯେ ସେମାନଙ୍କୁ ବାସ୍ତବରେ କାମ କରିବାକୁ ନିଆଯାଉଥିଲା ଏବଂ ସେହି କାମ ଫାଙ୍କରେ ମଧ୍ୟ ମନୋରଞ୍ଜନ କରିବାକୁ ଯଥେଷ୍ଟ ସମୟ ଦିଆଯାଉଥିଲା । ମୁଁ ସେହି ଆତ୍ମପ୍ରତାରଣାରେ ଭାଗ ନେବାକୁ ଘୃଣା କରୁଥିବାରୁ ମୁଣ୍ଡ ନୁଆଁଇ ଦେଉଥିଲି । କାରଣ ନାତ୍‌ସୀମାନେ ମନୋରଞ୍ଜନର ସେହି ଛଳନାକୁ ବାସ୍ତବ ସତ୍ୟ ବୋଲି ପ୍ରତିପାଦିତ କରି ଲକ୍ଷ ଲକ୍ଷ ଇହୁଦୀଙ୍କର ନିଷ୍ଠୁର ବିଧାନ ପାଇଁ ପଥ ପରିଷ୍କାର କରୁଥିଲେ ।

ଏପ୍ରିଲ୍ ମାସରେ ଇଷ୍ଟର ନାମ୍ନୀ ଜଣେ ମହିଳା ଅକ୍ଷମଶାଳାକୁ ଆସିଲା । ମୋ ପାଖରେ ପହଞ୍ଚି ମୋତେ କହିଲା, "ତୁମ ସହ ମୋ'ର କେତେକ ଗୁରୁତ୍ୱପୂର୍ଣ୍ଣ କଥାବାର୍ତ୍ତା ଅଛି । ଗୋପନରେ କଥା ହେବା ପାଇଁ ମୋତେ ଟିକେ ସମୟ ଦେବ କି ? ମୁଁ ବିୟଲଷ୍ଟୋକ୍ ବନ୍ଦୀ ବସ୍ତିରୁ ତାକୁ ଜାଣିଥିଲି । ୧୯୪୩ ଅଗଷ୍ଟ ୧୪ ତାରିଖରେ ନାତ୍‌ସୀମାନେ ସେହି ବସ୍ତିକୁ ଭାଙ୍ଗି ଦେଇଥିଲେ । ସେହି ସମୟରେ ପ୍ରାୟ ତିନିମାସ ପାଇଁ ସେ ତାର ସ୍ୱାମୀ, ମା ଓ ଗୋଟିଏ ଝିଅାରି ସହ ମୋ ସହ ମୋ' ବଙ୍କରରେ ରହୁଥିଲା । ବୟସ ଖୁବ୍ ବେଶୀରେ କୋଡ଼ିଏ ବର୍ଷ ହୋଇପାରେ । ବଙ୍କର ଜୀବନରେ ସେ ଆମର ସମସ୍ୟା ହୋଇଯାଇଥିଲା । କାରଣ ସେ ଅତ୍ୟନ୍ତ ନିର୍ବୋଧ ଥିଲା ଏବଂ ତାହାଠାରୁ କୌଣସି ସାହାଯ୍ୟ ପାଇବା ସମ୍ଭବ ନଥିଲା । ଜର୍ମାନମାନେ ଯେତେବେଳେ ଗୁପ୍ତ ବଙ୍କର ଆବିଷ୍କାର କଲେ ସଙ୍ଗେ ସଙ୍ଗେ ତା'ର ସ୍ୱାମୀକୁ ଗୁଳି କରିଦେଲେ । ଅନ୍ୟମାନେ ଆଉସ୍‌ଭିତ୍‌ଜ୍‌ରେ ପହଞ୍ଚିବା ପରେ ସେମାନଙ୍କର ସ୍ନେହ ପାଗଳି ଝିଅଟିକୁ ନେଇଗଲେ । କିଛି ଦିନ ପରେ ଇଷ୍ଟରର ମାଆକୁ ମଧ୍ୟ ନେଇଗଲେ । ଆଉସ୍‌ଭିତ୍‌ଜ୍‌ରେ ଇଷ୍ଟର ସମ୍ପୂର୍ଣ୍ଣ ଏକା ହୋଇଗଲା ।

ସେ ମୋ ଆଗରେ ଛିଡ଼ା ହୋଇଯିବା ପରେ ତାହାର ଦେହଟା ଭାରି ଭାରି ମନେହେଲା । ସମ୍ଭବତଃ ସେ ଗର୍ଭବତୀ ଥିଲା ।

ବିଳମ୍ବ ନ କରି ସେ ମଧ୍ୟ ପ୍ରକାଶ କରିଦେଲା, "ତୁମେ ଜାଣି ପାରୁଥିବ ଖୁବ୍ ଶୀଘ୍ର ମୁଁ ଗୋଟିଏ ସନ୍ତାନର ମା' ହେବାକୁ ଯାଉଛି । ଏ ପର୍ଯ୍ୟନ୍ତ ମୁଁ କାମ କରି ଆସୁଥିଲି । ବର୍ତ୍ତମାନ କିନ୍ତୁ ମୁଁ ହସପିଟାଲ୍‌କୁ ଯିବାକୁ ଚାହେ । ଏହା ମୋ'ର ପ୍ରଥମ ସନ୍ତାନ । ସେ ମୋ' ପେଟ ଭିତରେ ବୁଲୁଛି ମୋତେ ଗୋଇଠା ମାରୁଛି । ସମ୍ଭବତଃ ଏହା ଗୋଟିଏ ପୁଅ । ସ୍ୱାମୀ ତ ସଂସାରରେ ନାହାନ୍ତି । ଏ ତାଙ୍କରି ସନ୍ତାନ । ମୋତେ ଟିକେ ସାହାଯ୍ୟ କର ।"

ମୁଁ ତା' କଥା ଶୁଣି ପଥର ପାଲଟି ଗଲି । ସନ୍ତାନ ନେଇ ଆସୁଥିବା ମା' ମାନଙ୍କ

ସହ ଡାକ୍ତର ମେଙ୍ଗେଲ୍ ଯେଉଳି ବ୍ୟବହାର କରେ ତାହା ଇସ୍ପର ଜାଣି ନଥିଲା । ମୁଁ ତା'ର ଉଲ୍ଲସିତ ଚକ୍ଷୁ ଯୁଗଳ ଓ ପ୍ରଫୁଲ୍ଲିତ ଶରୀର ଆଡ଼କୁ ଚାହିଁଲି । ସେହି ମୁହୂର୍ତ୍ତରେ ମୁଁ ତାକୁ କି ଉତ୍ତର ଦେବି ତାହା ଭାବି ପାରୁ ନଥିଲି । ମୁଁ ତାହାର ଆନନ୍ଦୋଜ୍ଜ୍ୱଳ ପ୍ରଫୁଲ୍ଲତାକୁ କେମିତି ବା ଲିଭାଇ ଦେଇ ପାରିବି ? ମୁଁ ତାକୁ କିଛି ନ କହି ଚୁପ୍ ରହିବି ନା ତା'ର ସନ୍ତାନ ପାଇଁ ସ୍ନେହ ମମତା ଭିତରେ ରହିବା ପାଇଁ ତାକୁ ଛାଡ଼ିଦେବି ? ପରେ ଯେତେ ଦୁଃଖ ଆସିବ ଆସୁଥାଉ ।

ଡାକ୍ତର ମେଙ୍ଗେଲ୍ ଇହୁଦୀ ମା' ଓ ଶିଶୁ ମାନଙ୍କ ସହ କିପରି ବ୍ୟବହାର କରେ ସେକଥା ଓର୍ଲି ମୋତେ ଥରେ କହୁଥିଲା । ମେଙ୍ଗେଲ୍ କହେ, ''ଯେତେବେଳେ ବନ୍ଦୀ ଶିବିରରେ ଗୋଟାଏ ପିଲା ଜନ୍ମ ହୁଏ କିମ୍ବା କୌଣସି ଇହୁଦୀ ମହିଳା ତାହାର ସନ୍ତାନ ସହ ଆସେ, ମୁଁ ସେ ପିଲାକୁ ନେଇ କ'ଣ କରିବି, ହଠାତ୍ କିଛି ସ୍ଥିର କରିପାରେ ନାହିଁ । ଏଠାରେ କୌଣସି ଇହୁଦୀ ସ୍ୱାଧୀନତା ଉପଭୋଗ କରୁ ନଥିବାରୁ ମୁଁ କୌଣସି ଇହୁଦୀ ଶିଶୁକୁ ମଧ୍ୟ ସ୍ୱାଧୀନତା ଦେଇପାରିବି ନାହିଁ । ଶିବିରରେ ଶିଶୁପାଳନର କୌଣସି ବନ୍ଦୋବସ୍ତ ନଥିବାରୁ ଏଠାରେ କୌଣସି ଶିଶୁ ସ୍ୱାଭାବିକ ଭାବରେ 'ମଣିଷ' ହୋଇପାରିବ ନାହିଁ । ଶିଶୁର 'ମୃତ୍ୟୁ'କୁ ତା' ମା' ଦେଖିବା ପାଇଁ ଅନୁମତି ନ ଦେଇ ଏକା ଶିଶୁଟିକୁ ଗ୍ୟାସ୍‌କୁ ପଠାଇ ଦେବା 'ମାନବିକତା' ବିରୋଧୀ କାର୍ଯ୍ୟ । ସେଥିପାଇଁ ମୁଁ ମା' ଓ ଶିଶୁକୁ ଏକ ସଙ୍ଗେ ଗ୍ୟାସ୍‌କୁ ପଠାଇ ଦିଏ ।

କଳ୍ପନା କର, 'ମାନବିକତା' ନାମରେ ଜଣେ ମାନବ ବିଦ୍ୱେଷୀ ନିର୍ଦ୍ଦୟ ଅପରାଧୀ ତାହାର ଜଘନ୍ୟ ଅପରାଧକୁ କିଭଳି ନିଃସଙ୍କୋଚରେ କରି ପାରୁଛି । ଗୋଟିଏ ଜନନୀର ତା' ଶିଶୁ ସନ୍ତାନ ପ୍ରତି ଥିବା ଅକୃତ୍ରିମ ବାତ୍ସଲ୍ୟ ମମତାକୁ ଏହା ଅପେକ୍ଷା ଅଧିକ ନିଷ୍ଠୁର ଉପହାସ ଆଉ କ'ଣ ହୋଇପାରେ ?

ଇହୁଦୀ ମହିଳାମାନେ ଶିବିର ଭିତରେ କିପରି ସନ୍ତାନ ପ୍ରସବ କରନ୍ତି ତାହାର ଦୃଶ୍ୟ ମୁଁ ସ୍ୱଚକ୍ଷୁରେ ଦେଖିଅଛି । ଅକ୍ଷମଶାଳାକୁ ଆସନ୍ନ ପ୍ରସବା ମହିଳମାନଙ୍କୁ ନିଆଯାଏନା । ମହିଳାଟି ରହୁଥିବା ବ୍ଲକ୍‌ରେ ହିଁ ମହିଳାଟିର ପ୍ରସବ କାର୍ଯ୍ୟ ସମ୍ପନ୍ନ ହୁଏ । ଅକ୍ଷମଶାଳାର ମହିଳା ଡାକ୍ତର ମାନ୍‌ସୀ ଗୋଟିଏ ସନ୍ତାନ ପ୍ରସବ ଘଟଣାକୁ ଦେଖାଇବାକୁ ମୋତେ ଥରେ ସଙ୍ଗରେ ନେଇଥିଲେ ।

'ବି' ଫିଲ୍ଡରେ ଥିବା ଏକ ବ୍ଲକ୍‌କୁ ଯିବା ବାଟରେ ମାନ୍‌ସୀ ମୋତେ କହିଲେ, ''ଦେଖ, ପ୍ରସବ କାର୍ଯ୍ୟଟି ଅତ୍ୟନ୍ତ ଗୋପନରେ କରାଯାଏ, ଯେପରି ଅନ୍ୟ କେହି ତା' ନ ଜାଣେ । ହସ୍‌ପିଟାଲ୍‌ରେ ସେହି ଗୋପନୀୟତା ରକ୍ଷା କରାଯାଇ ପାରିବ ନାହିଁ । କାରଣ ସେଠାରେ ଜର୍ମାନବାଲା ତାହା ସହଜରେ ଜାଣିପାରିବେ । ଆମର ନିୟମ ହେଉଛି ପିଲାଟି

ଜନ୍ମ ହେବା ସଙ୍ଗେ ସଙ୍ଗେ ତାହାର ମା'ର ଅଜ୍ଞାତରେ ତାକୁ ମାରିଦେବାକୁ ପଡ଼ିବ ।''

''କ'ଣ ? ସେ ପିଲାକୁ ତୁମେ ମାରିଦିଅ ।'' ବାଟ ମଝିରେ ଅଟକିଯାଇ ମୁଁ ତାକୁ ପଚାରିଲି ।

ମାନ୍‌ସୀ ଉତ୍ତର ଦେଲେ, ''ଅତି ସହଜରେ ପିଲାଟି ଜନ୍ମ ହେବା ସଙ୍ଗେ ସଙ୍ଗେ ଆମେ ତାକୁ ଇନ୍‌ଜେକ୍‌ସନ୍‌ଟି ଦେଇଦେଉ । ସେ ମରିଯାଏ । ମା'କୁ କହିଦିଆଯାଏ ''ମଲା ପିଲା ଜନ୍ମ ହୋଇଛି'' । ଅନ୍ଧାର ହେଲେ ଆମେ ସେହି ମଲାପିଲାକୁ ଶବ ଗଦାରେ ଫୋପାଡ଼ି ଦେଉ । ସବୁବେଳେ ତାହୁ ମଲା ପିଲା ଜନ୍ମ ହୁଅନ୍ତୁ । କିନ୍ତୁ ତା ସତ୍ତ୍ୱେ ଯେମିତି ବାଦ କରି ସୁସ୍ଥ ସବଳ ପିଲା ହିଁ ଜନ୍ମ ହୁଅନ୍ତି । ମୁଁ କିଛି ବୁଝି ପାରେନା । ଗର୍ଭବତୀ ମହିଳାମାନେ ଶେଷ ପର୍ଯ୍ୟନ୍ତ କଠିନ ପରିଶ୍ରମ କରନ୍ତି । ଖାଦ୍ୟ ଥିବା ନଥିବା ସମାନ । ତା' ସତ୍ତ୍ୱେ ସୁସ୍ଥ ପିଲା ଜନ୍ମ ହୁଅନ୍ତି । ମୋର ବର୍ତ୍ତମାନ ପ୍ରଧାନ ଚିନ୍ତା ଯେ ମୋ ପାଖରୁ ସେହି ଇଞ୍ଜେକ୍‌ସନ୍ ଶେଷ ହୋଇଯାଇଛି ।'' ଆମେ ବ୍ଲକ୍‌ରେ ପହଞ୍ଚିବା ବେଳକୁ ଅନ୍ଧାର ହୋଇ ଯାଇଥିଲା । ପ୍ରସବ ବେଦନା ଭୋଗୁଥିବା ମହିଳା ପାଖକୁ ଆମକୁ ନେଇ ନିଆଗଲା । ମାନ୍‌ସୀ ମହିଳାଟିକୁ ଖଟ ତଳେ ଶୋଇବାକୁ କହିଲେ । ସେ ନିଜେ ମଧ୍ୟ ଖଟତଳେ ଲୁଚି କରି ବସିଲେ । ମାନ୍‌ସୀ ମହିଳାଟିକୁ କହିଲେ, ''ତୁମକୁ ପାଟି କରିବାକୁ ମନା । ସମ୍ପୂର୍ଣ୍ଣ ନୀରବତା ଭିତରେ ସମସ୍ତ କାର୍ଯ୍ୟ ସମ୍ପନ୍ନ କରିବାକୁ ହେବ । ତୁମେ ପିଲା ଜନ୍ମ କରୁଛ ବୋଲି କେହି ଯେପରି ନ ଜାଣନ୍ତି ।'' ବାଲଟିଏ ଥଣ୍ଡା ପାଣି ଆଣିବାକୁ ମୋତେ ମାନ୍‌ସୀ କହିଲେ ଏବଂ ପାଣି ବାଲ୍‌ଟି ସେହି ଆସନ୍ନ ପ୍ରସବା ମହିଳାଙ୍କ ନିକଟରେ ରଖିଲେ ।

ମୋତେ କୁହାଗଲା, ''ତୁମେ ମୋ ପାଖାପାଖି ବସ । ତୁମେ ଆଜି ମୋର ସହାୟିକା ।''

ପ୍ରସବ ବେଦନା ଆରମ୍ଭ ହୋଇଗଲା । ରକ୍ତସ୍ରାବ ହେବା ପର୍ଯ୍ୟନ୍ତ ମହିଳାଟି ନିଃଶବ୍ଦରେ ଦାନ୍ତଚିପି ବସିଥାଏ । ସେତେବେଳେ ସେ ମୋତେ ଏତେ ଜୋର୍‌ରେ ଚିପି ଧରିଥାଏ ଯେ ମୋ ଦେହରେ କଳାନୀଳ ଦାଗ ମଧ୍ୟ ପଡ଼ିଗଲା । ଶେଷରେ ପିଲାଟି ଜନ୍ମ ହେଲା । ମାନ୍‌ସୀ ପିଲାର ପାଟିକୁ ଚିପି ଧରିଲା ଯେପରି ସେ ନ କାନ୍ଦେ । ତା ପରେ ତାର ମୁଣ୍ଡକୁ ଆଖି ଫିଟି ନଥିବା ଗୋଟେ କୁକୁଡ଼ା ଛୁଆ ପରି ପାଣି ବାଲଟିରେ କିଛି ସମୟ ବୁଡ଼ାଇ ଧରିଲା, ସେ ଦୃଶ୍ୟ ଦେଖି ମୁଁ ପ୍ରାୟ ସଜ୍ଞାହୀନ ହୋଇଗଲି । ସେ ଖଟତଳୁ କିପରି ପଳାଇ ଆସିବି ମୋତେ ବୁଦ୍ଧି ବାଟ ଦିଶିଲା ନାହିଁ ।

ମାନ୍‌ସୀ ଶିଶୁର ମା'କୁ କହିଲା, 'ମଲାପିଲା' । କିଛି ସମୟ ପରେ ଖଣ୍ଡେ କନାରେ ଛୁଆଟିକୁ ଗୁଡ଼େଇ ନେଇ ଅନ୍ୟ ଏକ ବନ୍ଦିନୀ ହାତରେ ପଠାଇ ଦେଲା । ସେ ତାକୁ ସିଧା

ନେଇ ବ୍ଲକ୍ ସାମ୍ନାରେ ଥିବା ଶବଗଦା ଉପରକୁ ଫୋପାଡ଼ି ଦେଲା । ମା'ଟି ବଞ୍ଚିଗଲା ।

ଇସ୍ଥର ମୋ' ସାମ୍‌ନାରେ ଛିଡ଼ା ହୋଇଥିଲା । ସେ ଚାହୁଁଥିଲା ପୃଥିବୀର ଲକ୍ଷ ଲକ୍ଷ ମା' ଯେପରି ହସ୍‌ପିଟାଲ ଭିତରେ ସନ୍ତାନ ପ୍ରସବ କରନ୍ତି, ସେ ମଧ୍ୟ ସେହିଭଳି ତାର ସନ୍ତାନକୁ ପ୍ରସବ କରିବ । ସେ ତାର ଗର୍ଭସ୍ଥ ସନ୍ତାନର ଶବ୍ଦ ଶୁଣି ପାରୁଥିଲା ଏବଂ ସେଥିପାଇଁ ସେ ଖୁବ୍ ଖୁସି ଥିଲା । ସେ ଜାଣି ନଥିଲା ଯେ କୌଣସି ଜର୍ମାନ୍ ଡାକ୍ତର ଯଦି ତାକୁ ଦେଖେ ତେବେ ତାକୁ ଛୁଆ ସହ ଗ୍ୟାସ୍‌କୁ ପଠାଇଦେବ । ମୁଁ ତାକୁ ସବୁକଥା ପରିଷ୍କାର କରି କହିଦେବାକୁ ସ୍ଥିର କଲି ।

''ଦେଖ, ଇସ୍ଥର, ତୁମେ ଏଠାରେ ଜୀବନ୍ତ ପିଲା ଜନ୍ମ କରିପାରିବ ନାହିଁ । ତୁମେ ତାକୁ ଦେଖିବା ପୂର୍ବରୁ ସେ ମରି ସାରିଥିବ । ନଚେତ୍ ତା' ସହ ତୁମକୁ ମଧ୍ୟ ମରିବାକୁ ପଡ଼ିବ ।''

''ଅସମ୍ଭବ, ମଲାପିଲା ଜନ୍ମ ହେବ ? କଦାପି ନୁହେଁ ମୁଁ ଏକ ଜୀବନ୍ତ ପିଲା ଚାହେ । ଡାକ୍ତର ମେଙ୍ଗେଲ୍ ଯଦି ମୋ ପିଲାକୁ ଦେଖିବ, ସେ କହିବ, ତୋ' ପୁଅକୁ ଉପରକୁ ଟେକି ସମସ୍ତଙ୍କୁ ଦେଖାଅ । ମୋ ଛୁଆଟା ଭାରି ସୁନ୍ଦର ରୂପବାନ, ସୁଶ୍ରୀ ସେ । ମୁଁ ଏହିଠାରେ, ଏହି ଅକ୍ଷମଶାଳାରେ ହିଁ ତାକୁ ଜନ୍ମ ଦେବାକୁ ଚାହେ ।

ଡାକ୍ତର ମାନ୍‌ସୀ ଓ ନର୍ସ ମାରସୁଲା ତାକୁ ବହୁତ ବୁଝାଉଥିଲେ । ସେ କିଛି ଶୁଣିଲା ନାହିଁ । ସେହି ରାତିରେ ସେହି ଠାରେ ଅତି ସୁନ୍ଦର ପୁଅଟି ଜନ୍ମ ହେଲା ।

ସେ ଛୁଆସହ ଖଟରେ ଶୋଇଥାଏ, ତା'ର ଆନନ୍ଦ କହିଲେ ନସରେ । ଛୁଆକୁ କ୍ଷୀର ନ ଖୁଆଇବାକୁ ଜଣେ ସହକାରୀ ତାକୁ ବହୁତ ବୁଝାଇଲା ଯେପରିକି ଅନାହାରରେ ସେ ମରିଯାଏ । ସେ କିଛି ଶୁଣିଲା ନାହିଁ । ସେ ତାକୁ ସ୍ତନ୍ୟପାନ ଦେଲା ଏବଂ ଛୁଆଟି କେଡ଼େ ସୁନ୍ଦର ଭାବରେ ତା'ଠାରୁ କ୍ଷୀର ଖାଉଛି ବୋଲି ମଧ୍ୟ ତୁହାଇ ତୁହାଇ କହିବାକୁ ଲାଗିଲା । ପ୍ରତ୍ୟେକ ନବଜନ୍ମ ସମ୍ପର୍କରେ ଅଫିସ୍‌କୁ ସଙ୍ଗେ ସଙ୍ଗେ ଜଣାଇବାକୁ ଯେଉଁ ସୁପର ଭାଇଜର ଦାୟିତ୍ୱ, ବୋଧ ହୁଏ ମା'ଛୁଆଙ୍କ ପ୍ରତି ଟିକେ ଦରଦ ପ୍ରକାଶ କରି ଅଫିସ୍‌କୁ ରିପୋର୍ଟ ଦେବାରେ ବିଳମ୍ବ କଲା ।

ପିଲା ଜନ୍ମର ୩ୟ ଦିବସରେ ଏକ ଇହୁଦୀ ପର୍ବ (Pass over holiday) ପହଞ୍ଚି ଯିବାରୁ ଗ୍ୟାସ୍ ପାଇଁ 'ବଛାବଛି' ଆରମ୍ଭ ହୋଇଗଲା ହସ୍‌ପିଟାଲ୍‌ରେ । ସେଥିପାଇଁ ଡାକ୍ତର ମେଙ୍ଗେଲ୍ ଓ ନାଦ୍‌ସୀ ଆତଙ୍କବାଦୀ ବାହିନୀ ହସ୍‌ପିଟାଲ୍‌ରେ ପହଞ୍ଚିଗଲେ । ମୁଁ ସେତେବେଳେ ସେଠାରେ ଉପସ୍ଥିତ ଥିଲି । ଷ୍ଟୋଭ୍ ପାଖରେ ସେମାନେ ଛିଡ଼ା ହୋଇଗଲେ । ହସ୍‌ପିଟାଲ୍‌ର ଭିତର ପଟରୁ ତାଲା ପଡ଼ିଗଲା । ସବୁ ରୋଗୀ ମହିଳା ଉଲଗ୍ନ ହୋଇ ଲାଇନ୍‌ରେ ଛିଡ଼ା ହୋଇଗଲେ । ମେଙ୍ଗେଲ୍‌ର ହାତ ମୁଠାରେ ଥିବା

ପେନ୍‌ସିଲ୍‌ର କେବଳ ମୁନଟା ପଦାକୁ ଦିଶୁଥିଲା । ଆତଙ୍କବାଦୀମାନେ ଗୋଟି ଗୋଟି କରି ନାଁ ଡାକିବା ସେମାନଙ୍କୁ ତାଲିକାଭୁକ୍ତ କରୁଥିଲେ ଏବଂ ମେଞ୍ଚେଲ୍ ନିଠେଇ ନିଠେଇ ତା' ବୁଢ଼ା ଆଙ୍ଗୁଳିରେ ପେନ୍‌ସିଲ୍‌କୁ ଟିକେ ଟିକେ ଠେଲୁଥିଲା । ତାହାର ଅର୍ଥ ହେଲା- 'ମୃତ୍ୟୁ' । ନାଲି ଟୋପିଆ ଆତଙ୍କବାଦୀ ସେହି ନାଁ ପାଖରେ ଛକି ଚିହ୍ନ ଦେଉଥିଲା ।

ଶେଷରେ ପଡ଼ିଲା ଇଷ୍ଟରର ପାଳି । ସେ ତା'ର ଛୁଆକୁ କୋଳରେ ଧରି ସମ୍ପୂର୍ଣ୍ଣ ଉଲଗ୍ନ ହୋଇ ବାହାରି ପଡ଼ିଲା । ପୁଅଟା ତା'ର କେଡ଼େ ସୁନ୍ଦର, ସେକଥା ସମସ୍ତଙ୍କୁ ଦେଖାଇବା ପାଇଁ ସେ ଦୁଇ ହାତରେ ଛୁଆଟିକୁ ଟେକି ଧରି ସମସ୍ତଙ୍କୁ ଦେଖାଇବାକୁ ଲାଗିଲା । ମେଞ୍ଚେଲ୍ ଧୀରେ ଧୀରେ ତା'ର ପେନ୍‌ସିଲ୍ ମୁନକୁ ମୁଠା ଭିତରକୁ ଠେଲି ଦେଲା ।

■■■

– ୧୮ –

# ପୁରୁଣା ଶବ୍ଦର ନୂଆ ଅର୍ଥ

କେତେକ ଲୋକଙ୍କ ପକ୍ଷରେ 'ଆଉସ୍‌ଭିଟ୍‌ଜ୍' ଏକ ମାମୁଲି ଶବ୍ଦ ଭାବରେ ବିବେଚିତ ହେଉଥିଲା । କିନ୍ତୁ ଆଜି ତାହା ସମ୍ପୂର୍ଣ୍ଣ ଏକ ନୂତନ ଅର୍ଥରେ ପରିଚିତ ହୋଇଅଛି । ବିଭିନ୍ନ ଶବ୍ଦର ଅର୍ଥ କିପରି ତାହାର ଗତାନୁଗତିକ ପାରମ୍ପରିକ ସୀମାକୁ ଅତିକ୍ରମ କରୁଅଛି; ତାହା ଯଦି କେହି ଦେଖାଇ ଦେଇ ପାରନ୍ତା ତେବେ ତାହା ଏକ ସ୍ୱାଭାବିକ ଓ ଚିତ୍ତାକର୍ଷକ ମନଃସ୍ତାତ୍ତ୍ୱିକ ଅଧ୍ୟୟନରେ ପରିଣତ ହୁଅନ୍ତା । ମନଃସ୍ତାତ୍ତ୍ୱିକ ଅଧ୍ୟୟନ କାହିଁକି ? କାରଣ ନୂତନ ଅର୍ଥରେ ଶବ୍ଦଟି ପ୍ରତ୍ୟେକ ମଣିଷର ମନ ଭିତରେ ଧ୍ୱଂସ ଓ ବିପର୍ଯ୍ୟୟର ସ୍ମୃତି ଜାଗ୍ରତ କରୁଥିବାରୁ ତାହାର ମନଃସ୍ତାତ୍ତ୍ୱିକ ଅଧ୍ୟୟନ ଆବଶ୍ୟକ । କନ୍‌ସେନ୍ ଟ୍ରେସନ୍ କ୍ୟାମ୍ପରେ ଦୈନନ୍ଦିନ ଜୀବନରେ ଘଟୁଥିବା ଅପରାଧ ମୂଳକ ଅର୍ଥନୈତିକ କାର୍ଯ୍ୟକଳାପଗୁଡ଼ିକୁ କେହି ସମ୍ପୂର୍ଣ୍ଣ ରୂପେ ପ୍ରତିରୋଧ କରିପାରି ନଥିଲେ । ଆମେ ସମସ୍ତେ ଅଦ୍ଭୁତ ଭାବେ ରୂପାନ୍ତରିତ ବାସ୍ତବତା ଭିତରକୁ କେତେକାଂଶରେ ଟାଣି ହୋଇ ଯାଇଥିଲୁ । ''ଗ୍ୟାସ୍'' ବା ''ବଛାବଛି'' ଭଳି ମାମୁଲି ଶବ୍ଦଗୁଡ଼ିକ ସେଠାରେ କେଉଁ ଅର୍ଥରେ ବ୍ୟବହୃତ ହେଉଥିଲା, ତାହା ଆମେ ଜାଣିଥିଲୁ ତଥାପି ଆମେ ସେହି ଶବ୍ଦଗୁଡ଼ିକୁ ମାମୁଲି ଶବ୍ଦ ଭାବରେ ବ୍ୟବହାର କରୁଥିଲୁ । ଯେପରିକି ସେଗୁଡ଼ିକର କୌଣସି ଗୂଢ଼ ଅର୍ଥ ନଥିଲା ।

ସଙ୍ଗଠନ ବା Organise ଶବ୍ଦଟିକୁ ନିଅନ୍ତୁ । 'ସଙ୍ଗଠନ' ଶବ୍ଦଟି ସାଧାରଣତଃ ରାଜନୈତିକ ସାଂସ୍କୃତିକ ବା ସାମାଜିକ ମୂଲ୍ୟବୋଧଭିତ୍ତିକ ସକାରାତ୍ମକ ଅର୍ଥରେ ବ୍ୟବହୃତ

ହୋଇଥାଏ । ଆମେ ଯେତେବେଳେ କାହାକୁ ଭଲ ସଙ୍ଗଠକ ଭାବରେ ନାମିତ କରୁ, ତାଦ୍ୱାରା ସମଗ୍ର ସମାଜ ପାଇଁ ଶାନ୍ତି ଓ ସଦ୍‌ଭାବନା ସୃଷ୍ଟି କରୁଥିବା ଜଣେ ଗଠନମୂଳକ କର୍ମୀକୁ ହିଁ ବୁଝୁ । କିନ୍ତୁ ଆଉସ୍‌ଭିତ୍‌ଜ୍‌ରେ 'ସଙ୍ଗଠନ' କରିବାର ଅର୍ଥ ଥିଲା, ଅନ୍ୟର ଅଜ୍ଞତା ଓ ଅନଭିଜ୍ଞତାର ସୁଯୋଗ ନେଇ ତା' ପାଇଁ ଉଦ୍ଦିଷ୍ଟ ସୁବିଧାର ବିନିମୟରେ ନିଜ ଅବସ୍ଥାରେ ଉନ୍ନତି କରିବା । ଯେଉଁ ବ୍ୟକ୍ତିଟି ଭଲ 'ସଙ୍ଗଠନ' କରେ ବା 'ଯୋଗାଡ଼' କରି ଜାଣେ ସେ ଆରାମ୍ ଦାୟକ ସିଲ୍କ ଗଦିରେ ଶୁଏ ।

ମୁଁ ଫେଲାର ଦୈନନ୍ଦିନ ଜୀବନରେ ବିପୁଳ ଉନ୍ନତି ଲକ୍ଷ୍ୟ କଲି, କି ଉପାୟରେ ତାହା ସମ୍ଭବ ହେଉଥିଲା, ତାହାର କାରଣ ଅନୁସନ୍ଧାନ କଲି । ସେ ସିଲ୍‌କ ପୋଷାକ ପିନ୍ଧେ ଏବଂ କେବଳ ଯଥେଷ୍ଟ ରୁଟି ବା ଝୋଳ ନୁହେଁ ପ୍ରଚୁର ମାଂସ ଝୋଳ ମଧ୍ୟ ଖାଏ । ସେ ତାହା କେଉଁଠୁ ପାଏ ? ମୋର ମନେ ଅଛି, ଯେତେବେଳେ ତାକୁ ପ୍ରଥମେ ଦେଖିଥିଲି ତାହାର ପରିଧାନ ଥିଲା ଚିରାଛିଣ୍ଡା ପୋଷାକ । କିଛି ଦିନ ପରେ ସବୁ ବଦଳି ଗଲା । ପରିଧାନ ଉତ୍ତମ ବୁଟ୍ ଜୋତା ଓ ଏକ ଚମତ୍କାର ଉଲ୍ ସ୍ୱେଟର୍ । ସେ ସମ୍ପର୍କରେ ଅନ୍ୟ ବନ୍ଦିନୀମାନଙ୍କୁ ପଚାରିଲେ ସେମାନେ ମଧ୍ୟ ସମାନ ଉତ୍ତର ଦେଉଥିଲେ । କ୍ରାକୋ ନାମକ ସ୍ଥାନରୁ ଆସିଥିବା ଫେଲା ନାମ୍ନୀ ସେହି ମହିଳାଠାରେ ତଥାକଥିତ 'ସଙ୍ଗଠନ' ଗୁଣକୁ ମୁଁ ଲକ୍ଷ୍ୟ କରିବାକୁ ସମର୍ଥ ହୋଇଥିଲି ।

ତାକୁ ଯେତେବେଳେ ଅଠର ବର୍ଷ ସେତେବେଳେ ସେ ବିୟଲଷ୍ଟୋକ୍‌ରେ ରହୁଥିବା ତା' ପରିବାର ପାଇଁ ଚୋରା ଖାଦ୍ୟ ନେଉଥିବା ବେଳେ ଧରାପଡ଼ି ଆଉସ୍‌ଭିତ୍‌ଜ୍‌କୁ ଚାଲାଣ ହୋଇଥିଲା । ୧୯୪୪ ମସିହା ଜାନୁଆରୀ ମାସରେ ଫେଲା ଏବଂ ମୁଁ ଜୁଙ୍ଗାଙ୍ଗୀ ବ୍ଲକ୍‌ରେ ଏକତ୍ର ରହୁଥିଲୁ । ଫେଲା ବେଶ୍ ଡେଙ୍ଗା, ପତଳା ଓ ତା'ର ମଥାରେ ହାଲୁକା ରଙ୍ଗର କେଶ ଥିଲା । ସେ ବିଶେଷ ସୁନ୍ଦରୀ ନଥିଲା କିନ୍ତୁ ତା'ର ଏପରି କେତେକ ଗୁଣ ଅତି ଗଭୀରରେ ଥିଲା ସେକଥା ସହଜେ ବର୍ଣ୍ଣନା କରିହେବ ନାହିଁ । ଏମିତି ଥିଲା ଯେ ଚାଲିଗଲା ବେଳେ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରୁଥିଲା । ଫେଲା ଏକାକିନୀ ରହୁଥିଲା । ତା'ର କେହି ବନ୍ଧୁବାନ୍ଧବ ନଥିଲେ । କିନ୍ତୁ ତା' କଥାବାର୍ତ୍ତାରୁ କେବେହେଲେ ଜଣାପଡୁ ନଥିଲା ଯେ ସେ ଅସହାୟା । ସେ ଚାରିଆଡ଼କୁ ଖୁବ୍ ନିର୍ନିମେଷ ନୟନରେ ଚାହୁଁଥିଲା ଏବଂ କେଉଁଠ ତା'ର ଅନୁଭୂତି ଓ ବୁଦ୍ଧିମତ୍ତାକୁ କାମରେ ଲଗାଇହେବ ସେଥିପାଇଁ ବିଶେଷ ଉତ୍ସୁକ ରହୁଥିଲା । ସେ କାନ୍ଦିବାର କେହି କେବେ ଦେଖି ନଥିଲେ କିମ୍ବା ଆଉସ୍‌ଭିତ୍‌ଜ୍‌ରେ ଯେଉଁସବୁ ଭୟାବହ କାଣ୍ଡ ଘଟୁଥିଲା ସେଥିରେ ସେ କେବେ ବିଚଳିତ ହେଉ ନଥିଲା । ସେ ସବୁ ପରିସ୍ଥିତିକୁ ବିଶ୍ଳେଷଣ କରୁଥିଲା । ଯେପରିକି ସେହି ପରିସ୍ଥିତିର ସୁଯୋଗ ନେଇ ନିଜକୁ କିପରି ଏକ ସୁବିଧାଜନକ ସ୍ଥାନରେ ଅବସ୍ଥାପିତ କରିପାରିବ । ଦୃଢ଼ତା ଓ ଆତ୍ମ ବିଶ୍ୱାସ ତାହାର ଚରିତ୍ରର ଏକ ବିଶେଷତ୍ୱ ଥିଲା ।

ସେହି ଦୃଢ଼ ମନୋବଳ ହିଁ ତାକୁ ନିର୍ଭୀକ ଭାବେ ଚାଲିବାର ସାହସ ଦେଉଥିଲା ଓ ତା'ର ଶୈଳୀ ବା ଷ୍ଟାଇଲ୍‌ରେ କୌଣସି ଆଞ୍ଚ ଆଣୁ ନଥିଲା ।

ଫେଲା ଏକା ଥାଏ । କାହା ସହ ବିଶେଷ କଥାବାର୍ତ୍ତା ମଧ୍ୟ କରେନା । ସେ ଝିଅଟା ମୋ' ମନରେ ଆଗ୍ରହ ସୃଷ୍ଟି କରିଥିଲା । ମୁଁ ତା' ସହ ଟିକେ ନିବିଡ଼ ହେବାକୁ ଚେଷ୍ଟା କଲେ ମଧ୍ୟ ସେ ମୋ ପାଇଁ କେବେ ଅଟକୁ ନଥିଲା । ଥରେ 'ଗ୍ୟାସ୍' ପାଇଁ ବଛାବଛି ବେଳେ ମୋ'ର କେହି ରକ୍ଷାକର୍ତ୍ତା ଥିବାର ବୋଧହୁଏ ସେ ଅନୁଭବ କଲା ଏବଂ ଭାବିଲା ଯେ ମୋ ସହ ସମ୍ପର୍କ ରଖିଲେ ହୁଏତ କିଛି କାମରେ ଆସିବ । ଦିନେ ସନ୍ଧ୍ୟାରେ ମୋ ପାଖକୁ ଆସି କଥା ଆରମ୍ଭ କଲା ।

ସେ କହିଲା "ସବୁଆଡୁ ବିଚାର କରି ମୁଁ ଦେଖୁଛି ଯେ ଆଉସ୍‌ଭିଟ୍‌ଜ୍‌ରେ କ'ଣ ବାସ୍ତବରେ ସମସ୍ତଙ୍କ ଅବସ୍ଥା ଖରାପ ?" ଓ୍ୱାଡେନ୍ ସର୍ଦ୍ଦାର ଏବଂ ଅନ୍ୟ ବହୁ ଆଶ୍ରିତ ବ୍ୟକ୍ତି ତ ବେଶ୍ ଭଲରେ ଚଳୁଛନ୍ତି । ମୋର ଦୃଢ଼ ବିଶ୍ୱାସ ଯେ ସେମାନେ ଆଉସ୍‌ଭିଟ୍‌ଜ୍‌ରେ ନିଶ୍ଚୟ ତିଷ୍ଠି ଯିବେ । ମୁଁ କେଉଁ ଉପାୟରେ ସେହି ଗୋଷ୍ଠୀରେ ସାମିଲ ହୋଇ ପାରିବି ତାହା ଚିନ୍ତା କରୁଛି । ସମସ୍ତଙ୍କ ମାଡ଼, ସବୁଦିନିଆ ଅନାହାର ଓ ସବୁ ଅବଜ୍ଞାର ଶିକାର ହେବାକୁ ରକ୍ଷାପାଇବାର ବାଟ ମୁଁ ଖୋଜୁଛି । ମୁଁ ସେ ବାଟ ପାଇବି ବୋଲି ନିଶ୍ଚିତ ।

ଝିଅଟିର କଥା ମୋତେ ବିସ୍ମିତ କରିଦେଲା । ଶିବିରରେ ଥିବା ଦୁର୍ବଳ, ଦଣ୍ଡିତା ଓ କ୍ଷୁଧାତୁରା ମହିଳାମାନଙ୍କ ପ୍ରତି ତାହାର ଘୃଣା ବ୍ୟଞ୍ଜକ ଇଙ୍ଗିତରେ ମୁଁ ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଉଥିଲି । ମାତ୍ର ଅଠର ବର୍ଷ ବୟସର ଗୋଟିଏ ଝିଅର ସେହି ବିବେକ ଶୂନ୍ୟ କଥାବାର୍ତ୍ତା ମୋତେ ବଡ଼ ଅସ୍ୱାଭାବିକ ବୋଧ ହେଉଥିଲା ।

"ମୋତେ କିଛି 'ସଙ୍ଗଠନ' କରିବାକୁ ପଡ଼ିବ । ମୁଁ ଦେଖିବି ।"

ଆଉସ୍‌ଭିଟ୍‌ଜ୍ ପରିପ୍ରେକ୍ଷୀରେ ବ୍ୟବହୃତ "Organise" ବା ସଙ୍ଗଠନ ଶବ୍ଦଟି ମୁଁ ସେହି ପ୍ରଥମଥର ଶୁଣିବାକୁ ପାଇଥିଲି । ତା'ପରେ ବହୁଦିନ ପର୍ଯ୍ୟନ୍ତ ମୁଁ ଫେଲାକୁ ଆଉ ଦେଖିବାକୁ ପାଇଲି ନାହିଁ । ଆମେ ଭିନ୍ନ ଭିନ୍ନ ଏରିଆରେ କାମ କରୁଥିବାରୁ ଆମ ଭିତରେ ଦେଖା ସାକ୍ଷାତ୍ ସମ୍ଭବ ନଥିଲା । ଦିନେ ଦୈବାତ୍ ତା ସହ ଭେଟ ହେଲା ହସ୍‌ପିଟାଲ୍ ବ୍ଲକ୍‌ରେ । ସେତେବେଳକୁ ମୁଁ ତାକୁ ପ୍ରାୟ ଭୁଲି ଯାଇଥିଲି । ସେଦିନ ସେ ଗୋଟାଏ ଅଖାଭର୍ତ୍ତି ରୁଟି ନେଇ କରି ଯାଉଥିଲା । ମୋତେ ଦେଖି ସେ ଅବାକ୍ ହୋଇଗଲା । କିନ୍ତୁ ତାହା ମିନିଟିଏ ପାଇଁ । ମୁଁ ତାକୁ ପଚାରିଲି, "ଏ କ'ଣ କରୁଛ ଓ ଏଇ ତାହା ହେଲେ ତୋର 'ସଙ୍ଗଠନ' ନା ? ରୋଗୀଙ୍କ ଖାଦ୍ୟକୁ ଚୋରି କରି ନେବା ତୁମ 'ସଙ୍ଗଠନ' କାମର ଅଂଶ ? ଶୀଘ୍ର ଏଠୁ ପଳା, ନଚେତ୍ ମୁଁ ସର୍ଦ୍ଦାରକୁ ଡାକିବି ।"

କିନ୍ତୁ ଫେଲା ପଳେଇ ଗଲା ନାହିଁ, ମୋ' କ୍ରୋଧ ପ୍ରଶମିତ ହେବା ପର୍ଯ୍ୟନ୍ତ ସେ

ଅପେକ୍ଷା କଲା । ତା ପରେ କହିଲା, ''ମୁଁ କେଉଁଠାରୁ ଏତେ ରୁଟି ଆଣିଲି ତାହା କହୁଛି ଶୁଣ । ଅବଶ୍ୟ ତାହା ଏକ ଲମ୍ବା କାହାଣୀ ।'' ତୁମେ କହିଲ, ''ମୁଁ ରୁଟି ଚୋରି କରିଛି, କିନ୍ତୁ ମୁଁ ଏହା ଚୋରି କରିନାହିଁ । ମୁଁ ଏହାକୁ ଅର୍ଜନ କରିଛି ।''

ମୁଁ ଚୁପ୍ ରହିଲି, ଭାବିଲି, ''ସେ କ'ଣ କହୁଛି କହୁ ।''

ସେ କହି ଚାଲିଲା, ''ଏହି ବ୍ଲକ୍‌ରେ ଅସୁସ୍ଥ ହୋଇ ଆମ ଦଳର ଜଣେ କମାଣ୍ଡୋ ରହୁଥିଲେ । ଦିନେ ସନ୍ଧ୍ୟାରେ ମୁଁ ତାଙ୍କ ପାଇଁ ଆଳୁ ପିଆଜର ଝୋଳ ଟିକେ ଆଣିଥିଲି । ସେ ଝୋଳକୁ ସେ କେମିତି ଚାଟି ଚାଟି ଖାଇଗଲେ ଏବଂ ଝୋଳର ବାସ୍ନାରେ ପାଖ ଶଯ୍ୟା ରୋଗୀମାନେ ଝୋଳପାଇଁ କିପରି ହାଇଁ ପାଇଁ ହେଉଥିଲେ ତାହା ତୁମେ ଦେଖିଥିଲେ ଜାଣିଥା'ନ୍ତ । ସେଦିନ ଅନ୍ୟ ମହିଳାମାନେ ମଧ୍ୟ ସେମାନଙ୍କ ପାଇଁ ଆଳୁ ପିଆଜ ଝୋଳ ଆଣିବା ପାଇଁ ମୋତେ ଅନୁରୋଧ କଲେ । ତା' ପରଦିନ ମୋ ଭାଗ ରୁଟିକୁ ନେଇ ରୋଷେଇ ଘର ପଛପଟକୁ ଗଲି । ଆଳୁ ପିଆଜ ଦାୟିତ୍ୱରେ ଥିବା ମହିଳାକୁ ମୋ' ରୁଟି ବଦଳରେ ଆଳୁ ପିଆଜ ଦେବାକୁ ଅନୁରୋଧ କରି ସେଠାରେ ଅପେକ୍ଷା କଲି । ସେ ମୋ' ରୁଟି ବଦଳରେ ସାତଗୋଟି ସୁକୁଟା ଆଳୁ ଏବଂ ଗୋଟିଏ ପିଆଜ ଦେଲା । ମୁଁ ସେ ପିଆଜ ଓ ଆଳୁକୁ ମୋ ଭାଗ ଲହୁଣୀରେ ଭାଜି ଝୋଳ ତିଆରି କଲି । ଝୋଳରୁ ବଢ଼ିଆ ବାସ୍ନା ବାହାରୁଥିଲା । ମୁଁ ସେ ଟଟକା ଓ ଗରମ ଗରମ ଝୋଳ ନେଇ ହସ୍‌ପିଟାଲ୍‌କୁ ଗଲି । କପେ ଝୋଳ ପାଇଁ ଗୋଟାଏ ପୂରା ରୁଟି ପାଇଲି । ସେମାନେ ସେ ଶୁଖିଲା ରୁଟି ଖାଇ ପାରୁନଥିଲେ । ତକିଆ ତଳେ ରଖିଲେ ବି ତାହା ମୂଷାମାନଙ୍କ ଆକ୍ରମଣରୁ ରକ୍ଷା ପାଉନଥିଲା । ସେହି ପ୍ରଥମ ଦିନ ମୁଁ ୫ଟି ପୂରା ରୁଟି ପାଇଲି । ତା ପରଦିନ ୪ ଗୋଟି ଏବଂ ଆଜି ୧୪ ଗୋଟି ରୁଟି ପାଇଛି । ଆଳୁ ପିଆଜ ଝୋଳ ବିକ୍ରିକରି ମୁଁ ଏସବୁ ରୁଟି ପାଇଛି । ଚୋରି କରି ନାହିଁ ।''

ମୁଁ ତା କଥା ଶୁଣି ତାଟଙ୍କା ହୋଇ ଛିଡ଼ା ହୋଇଗଲି । ତାକୁ ମୁଁ କି ଜବାବ ଦେବି ବା ତା କଥାର କିଭଳି ପ୍ରତିକ୍ରିୟା ପ୍ରକାଶ କରିବି, କିଛି ସ୍ଥିର କରିପାରୁ ନଥିଲି । ହତଭାଗ୍ୟ ଓ ରୋଗ ଗ୍ରସ୍ତ ବନ୍ଦିନୀମାନଙ୍କ ମୁହଁରୁ ଛଡ଼ାଇ ନେଇ ଅର୍ଜନ କରିବା ଏକ ଅତିଶୟ କଦର୍ଯ୍ୟ କାର୍ଯ୍ୟ । କିନ୍ତୁ ସେହି ବନ୍ଦିନୀମାନେ ହିଁ ତାହା ଚାହୁଥିଲେ । ଶୁଖିଲା ରୁଟି ବଦଳରେ ଘର ରନ୍ଧାର ବାସ୍ନାଥିବା ପାଣିଚିଆ ଆଳୁ ପିଆଜ ଝୋଳ ଟିକକକୁ ସେମାନେ ଅଧିକ ପସନ୍ଦ କରୁଥିଲେ । ହସ୍‌ପିଟାଲ୍‌ରୁ ବାହାର କରିଦେଲେ ସେମାନେ ସେହି ବାସ୍ନା ଥିବା ଝୋଳରୁ ବଞ୍ଚିତ ହେବେ, ଯାହାପାଇଁ ସେମାନେ ସାରାଦିନ ଅନେଇ ବସୁଥିଲେ ।''

ଫେଲା ମୋ ମନକଥା ବୁଝିପାରିବା ଭଳି ମୋତେ କହିଲା, ''ତୁମେ ସେମାନଙ୍କୁ ପଚାର, ସେମାନେ ସେ ଝୋଳ ଚାହୁଛନ୍ତି କି ନା !''

ମୁଁ ଜାଣି ସାରିଥିଲି ଯେ ମୁଁ କଦାପି ଫେଲା ବିଷୟରେ ସର୍ଦ୍ଦାରକୁ କହିପାରିବି ନାହିଁ ଏବଂ ସେ ତାହାର ଖୋଳ ବେପାର ସେହିଭଳି କରି ଚାଲିବ ।

ତଥାପି ମୁଁ ତାକୁ ପଚାରିଲି, ''ଆଚ୍ଛା ଏତେ ଗୁଡ଼ା ରୁଟି ନେଇ ତୁ କରିବୁ କ'ଣ ? ଏକଥା ତ କଦାପି କହିପାରିବୁ ନାହିଁ ଯେ ଏଗୁଡ଼ା ସବୁ ତୁ ଖାଉଛୁ ।''

''ନା ନା ମୁଁ ସବୁ ରୁଟି ଖାଏନା । ମୁଁ କିଛି ରୁଟି ବଦଳରେ ସିଗାରେଟ୍ ଆଣିବି । ମୋ ସାଙ୍ଗରେ ଜଣେ କାମ କରେ ଯିଏକି ରୁଟି ବଦଳରେ ସିଗାରେଟ୍ ଦିଏ । ତୁମେ ବୋଧହୁଏ ଜାଣିଥିବ ଯେ କ୍ୟାମ୍ପରେ ସିଗାରେଟ୍ ବଦଳରେ ସବୁକିଛି ମିଳେ, — ଭଲ ପୋଷାକ, ଭଲ ଖାଦ୍ୟ, ଏପରିକି ଭଲ କାର୍ଯ୍ୟ ମଧ୍ୟ । କିଛି ସିଗାରେଟ୍ ଓ୍ୱାର୍ଡେନ୍‌କୁ ଓ କିଛି ସିଗାରେଟ୍ ସର୍ଦ୍ଦାରକୁ ଦେବି ଯେପରିକି ସେମାନେ ମୋ କାମରେ ପ୍ରତିବନ୍ଧକ ନ ହୁଅନ୍ତି । ତଥାପି କେତେ ସିଗାରେଟ୍ ବଳିବ । ତା' ବଦଳରେ ଆହୁରି ଭଲ ପୋଷାକ ଓ ଖାଦ୍ୟ ମିଳିବ । ଏପରିକି ତୁମ ପାଇଁ ମଧ୍ୟ ମୁଁ କିଛି ଭଲ ଜିନିଷ ଆଣିପାରିବି । ମୁଁ ବର୍ତ୍ତମାନ ସିଗାରେଟ୍ ସଂଗ୍ରହ କରୁଛି, ମୋ ପାଇଁ ଗୋଟେ ଭଲକାମ ଯୋଗାଡ଼ କରିବାକୁ । ଗୋଟିଏ ନିର୍ଦ୍ଦିଷ୍ଟ କାର୍ଯ୍ୟ ମୋ' ମନ ଭିତରେ ଅଛି ।''

ଫେଲା ଚାଲିଗଲା । ଆମ ଭିତରେ ହୋଇଥିବା କଥାବାର୍ତ୍ତା ଓ ମୋ' ସାମନାରେ ରଖିଦେଇ ଯାଇଥିବା ନୈତିକତାର ପ୍ରଶ୍ନ ଉପରେ ସେହି ରାତ୍ରିରେ ମୁଁ ଗଭୀର ଭାବରେ ଚିନ୍ତା କଲି । ମୁଁ ଫେଲାର ଚରିତ୍ର ଓ ଆଚରଣର କିପରି ମୂଲ୍ୟାୟନ କରିବି ? ଆଉସ୍‌ଭିଟ୍‌ଜ୍‌ରେ ମୂଲ୍ୟବୋଧ ଅନୁସାରେ ତ ସେ ଏ ପ୍ଲସ୍ ନମ୍ବର ପାଇବ । କିନ୍ତୁ ବୃହତ୍ତର ଦୃଷ୍ଟିକୋଣରୁ ବିଚାର କଲେ ଫେଲା ପାଶ୍ କରିପାରିବ କି ?

ତା' ପରେ ବହୁ ସପ୍ତାହ ବିତିଗଲା । ସେଦିନ ମଧ୍ୟାହ୍ନ ଭୋଜନ ସମୟ । ପ୍ରଧାନ ରାସ୍ତା ଆଡୁ ଭାସି ଆସିଲା ବୁଟ୍ ଶବ୍ଦ ତାଳେ ତାଳେ ଜର୍ମାନ ସଙ୍ଗୀତର ଝଙ୍କାର । ମୁଁ ଅକ୍ଷମ ଶାଳାର ଗେଟ୍ ବାହାରକୁ ଚାଲିଗଲି । ମାଲଖାନା ଘରେ କାର୍ଯ୍ୟ କରୁଥିବା କର୍ମୀ ବାହିନୀ 'କମାଣ୍ଡୋ'ମାନଙ୍କର ତାହାଥିଲା ମାର୍ଚ୍ଚିଂ ସଙ୍ଗୀତ ।

ସାରା ୟୁରୋପରୁ ଧରାହୋଇ ଆସିଥିବା ଇହୁଦୀମାନଙ୍କୁ କୁହାଯାଇଥିଲା ଯେ ସେମାନଙ୍କୁ ଆଉସ୍‌ଭିଟ୍‌ଜ୍‌ରେ ବିଭିନ୍ନ କାର୍ଯ୍ୟରେ ନିଯୁକ୍ତି ଦିଆଯିବ । ସେହି ଛଳନାକୁ ବିଶ୍ୱାସ କରି ସେମାନଙ୍କର ଥିବା ଯଥା ସର୍ବସ୍ୱ ଜିନିଷପତ୍ର, ଟଙ୍କା ପଇସା, ମୂଲ୍ୟବାନ ସୁନା ପ୍ରଭୃତି ଜିନିଷ ବଡ଼ ବଡ଼ ବ୍ୟାଗ୍ ଓ ଝୁଲାରେ ସଙ୍ଗରେ ନେଇ ଆସୁଥିଲେ । କିନ୍ତୁ ସେମାନେ ଆଉସ୍‌ଭିଟ୍‌ଜ୍‌ରେ ପହଞ୍ଚିବା ପରେ ମାଲିକମାନଙ୍କୁ ଅଲଗା ଗାଡ଼ିରେ ଓ ମାଲପତ୍ର ମାଲଖାନାକୁ ପଠାଇ ଦିଆଯାଉଥିଲା । ଅବଶ୍ୟ ମାଲିକମାନଙ୍କୁ ଯେ କୌଣସି ଗୋଟିଏ ଲେଖାଏଁ ପୁଟୁଳି ବା ବ୍ୟାଗ୍ ସାଙ୍ଗରେ ରଖିବାକୁ ଦିଆଯାଉଥିଲା । ସେ ବ୍ୟାଗ୍

ଓ ଜିନିଷପତ୍ର ଗୁଡ଼ିକୁ ଖୋଲିବା ଦାୟିତ୍ୱ ଥିଲା କେତେକ ଇହୁଦୀ ତରୁଣୀମାନଙ୍କ ଉପରେ । ସେମାନେ ସେଥିରୁ ବାଛି ବାଛି ଭଲ ଜିନିଷଗୁଡ଼ିକୁ ଜର୍ମାନୀକୁ ଜାହାଜରେ ପଠାଇ ଦେଉଥିଲେ । ସେମାନେ ମୁଣ୍ଡରେ ନାଲି ରୁମାଲ୍ ଓ ଅଣ୍ଟାରେ ସୁନ୍ଦର ସୁନ୍ଦର ବେଲ୍ଟ ଭିଡ଼ୁଥିଲେ । ସେହିମାନଙ୍କ ହାତବାଟେ ଭାଗ୍ୟଦେବୀ ଯାତାୟତ କରୁଥିଲେ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନଥିଲା ଯେ ସେହି ତରୁଣୀମାନେ ବେଶ୍ ବିଳାସ ଭିତରେ ଜୀବନଯାପନ କରୁଥିଲେ ।

ସେଦିନ ସେହିମାନେ ହିଁ ମଧ୍ୟାହ୍ନ ଭୋଜନ ପାଇଁ ଚାରିଜଣିଆ ଧାଡ଼ି କରି ପ୍ୟାରେଡ୍‌ରେ ଯାଉଥିଲେ । ପ୍ରତି ପଦକ୍ଷେପରେ ବାଜୁଥିଲା ଜର୍ମାନୀ ମାର୍ଚ୍ଚିଂ ସଙ୍ଗୀତ । ସେମାନଙ୍କୁ ଦେଖି ମୁଁ ଭାବୁଥିଲି ଯଦି ସେହି ପ୍ୟାରେଡ୍ ଫଟୋଗୁଡ଼ିକ ସମ୍ବାଦପତ୍ରରେ ବାହାରୁଥାଆନ୍ତା ଏବଂ ମୁଁ ଯଦି ଅନ୍ୟତ୍ର ସେହି ସମ୍ବାଦପତ୍ର ଦେଖିଥାନ୍ତି; ମୁଁ ବା ଅନ୍ୟ କେହି କ'ଣ ବିଶ୍ୱାସ କରିଥାନ୍ତା ଯେ ସେହି ଫଟୋ ଆଉସ୍‌ଭିଜ୍ ମୃତ୍ୟୁଯନ୍ତାର ବନ୍ଦିନୀମାନଙ୍କର ଛବି ! ଅଥଚ ସେମାନେ ବାସ୍ତବରେ ଥିଲେ ସେହି ମୃତ୍ୟୁ କାରଖାନାର ଅଂଶ ବିଶେଷ ।

ମାର୍ଚ୍ଚିଂରେ ଯାଉଥିବା ଗୋଟିଏ ଝିଅର ନଜର ମୋ ଉପରେ ପଡ଼ିଗଲା । ସେ ଥିଲା ଫେଲା । ସେ ଦୂରରୁ ମୋତେ ଦେଖିଲା ଓ ମୁଣ୍ଡରୁ ରୁମାଲଟା ଖସେଇ ଦେଇ ମୋ ଉଦ୍ଦେଶ୍ୟରେ ହାତ ହଲାଇଲା । ହସ୍‌ପିଟାଲ୍‌ରେ ରୁଟି ବଦଳରେ ଝୋଳ ବିକ୍ରି କରି ଓ ମୁମୂର୍ଷୁ ବନ୍ଦିନୀମାନଙ୍କୁ ଘର ରାନ୍ଧଣାର ବାସ୍ନା ସୁଙ୍ଘାଇ ସେ ତାହା ହେଲେ ଏହି ଭଲକାର୍ଯ୍ୟଟିର ସ୍ୱପ୍ନ ଦେଖିଥିଲା । ତାକୁ ଆଉ ହସ୍‌ପିଟାଲରେ ଝୋଳ ବିକ୍ରି କରିବାକୁ ପଡୁ ନାହିଁ । ସେ ଦାମିକା ବ୍ୟବସାୟରେ ନିଯୁକ୍ତ ।

ଆଉ କେତେ ସପ୍ତାହ ମଧ୍ୟ ବିତିଗଲା । ଦିନେ ସନ୍ଧ୍ୟାରେ ଫେଲା ଅକ୍ଷମଶାଳାରେ ପହଞ୍ଚିଲା । ସେ ଖୁବ୍ ଧୀର ସ୍ଥିର ହୋଇ ଆସିଲା । ତା' ଭିତରେ ପୂର୍ବର ଆତ୍ମବିଶ୍ୱାସ ଥିବା ଭଳି ଜଣା ଯାଉ ନଥିଲା । ଭାବିଲି ସେ କ'ଣ ଆଉ ମାଲଖାନାରେ କାମ କରୁ ନାହିଁ । ମୋ ପାଇଁ ସେ ଗୋଟେ ନାଇଟ୍ ଗାଉନ୍ ଆଣିଥିଲା । ସେ ମୋତେ କିଛି କହିବାକୁ ଚାହୁଁଥିଲା । କିନ୍ତୁ କେଉଁଠୁ ଆରମ୍ଭ କରିବ ବୋଲି ବୋଧେ ଠିକ୍ କରିପାରୁ ନଥିଲା ।

ମୁଁ ମୋ' ଆଡୁ ତାକୁ ପ୍ରଶ୍ନ କରିଦେଲି ''ତୁ କ'ଣ ଆଉ ମାଲ୍‌ଖାନାରେ କାମ କରୁନୁ ?''

ହଁ, ସେ ସେଠାରେ କାମ କରୁଥିଲା କିନ୍ତୁ ସେଠାରେ ଭୟାବହ କାଣ୍ଡମାନ ଘଟୁଥିଲା । ଏପରିକି ଫେଲା ପକ୍ଷରେ ମଧ୍ୟ ତାହାଥିଲା ଭୟାବହ ।

ଫେଲା କହିଲା, ''କଳ୍ପନା କର ମୁଁ ବ୍ୟାଗ୍ ଖୋଲିଲି । ପାଇଲି ଗୋଟାଏ ମୃତ ଶିଶୁ କନ୍ୟା ! ଗୋଟିଏ ଶିଶୁ କନ୍ୟା ବୟସ ଦୁଇ ବର୍ଷ ଭିତରେ । ମୁଁ ଅତ୍ୟନ୍ତ ବିଚଳିତ ହୋଇପଡ଼ିଲି । ଅନ୍ୟ ଝିଅମାନେ ମଧ୍ୟ କହନ୍ତି ଯେ ସେମାନେ ମଧ୍ୟ ବ୍ୟାଗ୍ ଭିତରୁ ମୃତ ଶିଶୁ ପାଉଛନ୍ତି ।'' ଏସବୁ କିପରି ହେଉଥିଲା, ସେ କଥା ମଧ୍ୟ କହିଲା, ''ହୁଏତ ମା' ମାନେ ଛୁଆମାନଙ୍କୁ ବ୍ୟାଗ୍ ଭିତରେ ଲୁଚାଇ ଦେଇଥାନ୍ତି ଏଇ ଆଶାରେ ଯେ ସେମାନେ କ୍ୟାମ୍ପରେ ପହଞ୍ଚିଲେ ମା ଛୁଆ ଏକତ୍ର ରହିପାରିବେ । କିନ୍ତୁ ସେମାନଙ୍କ ବ୍ୟାଗ୍ ପତ୍ର ମାଲଖାନାକୁ ଚାଲିଆସେ । ଛୁଆମାନେ ସେହି ବ୍ୟାଗ୍ ଭିତରେ ମରିଯାଆନ୍ତି । ସେ ଦୃଶ୍ୟ ମୁଁ ଆଦୌ ଭୁଲି ପାରୁ ନାହିଁ । ସେହି ସୁନ୍ଦର ସୁନ୍ଦର ପୋଷାକ ଗୁଡ଼ିକ ଯେ ସେହିମାନଙ୍କର ଯେଉଁମାନେ କି ଆଉ ଏ ସଂସାରରେ ନଥିଲେ । ସେ କଥା ଭାବିବା ବେଳକୁ ମନ ଦୁଃଖରେ ମ୍ରିୟମାଣ ହୋଇଯାଉଛି । ଅନ୍ୟ ଝିଅମାନେ ମୋତେ କହୁଛନ୍ତି, ''କ୍ରମେ ଅଭ୍ୟାସ ହୋଇଗଲେ ମନରୁ ସେ ଦୁର୍ବଳତା ଦୂର ହୋଇଯିବ । କିନ୍ତୁ ମୁଁ କେତେଦିନ ଏଭଳି ପରିସ୍ଥିତିରେ ସେଠାରେ ତିଷ୍ଠିବି, ସେକଥା ଭାବି ପାରୁନାହିଁ । ଝୋଳ ବେପାର ଅପେକ୍ଷା ଏହା ଆହୁରି ଭୟଙ୍କର ।''

ତା ପରେ ପୁଣି କିଛିଦିନ ଚାଲିଗଲା । ଥଣ୍ଡା ପଡ଼ିଲା । ବରଫ ବର୍ଷା ହେଉଥିଲା । ରାସ୍ତାଘାଟ ଏତେ କାଦୁଆ ହୋଇଗଲା ଯେ ଗୋଟେ ବ୍ଲକ୍‌ରୁ ଅନ୍ୟ ବ୍ଲକ୍‌କୁ ଯିବା କଷ୍ଟକର ହୋଇଗଲା । ଦିନେ ସନ୍ଧ୍ୟାରେ ନର୍ସ ମାରୁସିଆର ବାନ୍ଧବୀ କ୍ରିଟା ଆସିଥିଲା । ଗ୍ୟାସ୍ ଚୁଲ୍ଲାରେ ମରୁଥିବା ମହିଳାମାନଙ୍କୁ ସମାଧି ଦେବା କାର୍ଯ୍ୟଥିଲା ତାର । (Leichenkamando) ଶବ ବାହକ ଗାଡ଼ିକୁ ସେ ଅପେକ୍ଷା କରିଥିଲା । ବ୍ଲକ୍ ଆଗରେ ଗଦା ହୋଇଥିବା ଶବଗୁଡ଼ିକୁ ଉଠାଇ ନେବାକୁ ସେ ଗାଡ଼ି ଆସିବାର ଥିଲା । ଗାଡ଼ି ଆସିବାର ଶବ୍ଦ ଶୁଣିବା ସଙ୍ଗେ ସଙ୍ଗେ କ୍ରିଟା କୁଦାଟା ମାରିଦେଇ ଶବଗଦା ପାଖକୁ ଦୌଡ଼ିଲା । ସବୁ କମାଣ୍ଡୋମାନେ ଶବଗୁଡ଼ିକ ଗାଡ଼ିରେ ବୋଝେଇ କରିବା କଥା । କିନ୍ତୁ ସେ ଗେଟ୍ ପାଖରେ ପହଞ୍ଚିବା ପୂର୍ବରୁ ଗେଟ୍ ଖୋଲା ହୋଇଗଲା ଏବଂ କଳା ପାଉଁଶ ବୋଲି ହୋଇଥିବା ଗୋଟିଏ ବିଚିତ୍ର ମଣିଷ କମ୍ବଳ ଘୋଡ଼େଇ ହୋଇ ଝୁଲି ଝୁଲି ସେଠାରେ ପ୍ରବେଶ କଲା । ତା ପଛେ ପଛେ ଜଣେ ନାତ୍‌ସୀ ଆତଙ୍କବାଦୀ କ୍ରିଟା ମୋ' କାନ ପାଖରେ କହିଲା, ''ଏ ହେଉଛି ଶବ ଗାଡ଼ିର ଡ୍ରାଇଭର୍'' । ଡ୍ରାଇଭର୍ କହିଲା, ''ଏ ଲୋକଟି ପାଇଁ କ'ଣ କର । ତା' ଠାରୁ ସବୁକଥା ଶୁଣିବ ।''

ବିଚିତ୍ର ମଣିଷଟି ଚଟାଣରେ ବସିଗଲା । ଲୋକଟି ଫେଲା ଛଡ଼ା ଅନ୍ୟ କେହି ନୁହେଁ । କମ୍ବଳ ଛଡ଼ା ତା ଦେହରେ ଆଉ କିଛି ନଥିଲା । ସେ ସମ୍ପୂର୍ଣ୍ଣ ଉଲଗ୍ନ ଥିଲା ଏବଂ ଦେହସାରା ପାଉଁଶ ବୋଳି ହୋଇଥିଲା । ମାନ୍‌ସୀ ଓ ମାରୁସିଆ ତାକୁ ସାଷ୍ଟାମ କଲେ । ପରେ ଆମେ

ତାକୁ ଧୁଆ ଧୋଇ କରି ପୋଷାକ ପିନ୍ଧାଇଲୁ ଏବଂ ଖାଇବାକୁ ଦେଲୁ । ଫେଲା ତା'ର ସେହି ଅଦ୍ଭୁତ କାହାଣୀ ଶୁଣାଇବାକୁ ଲାଗିଲା ।

''ଦୁଇ ସପ୍ତାହ ତଳେ ମୁଁ ନିମୋନିଆଁରେ ପୀଡ଼ିତା ହେଲି । ଯାହା ହେଉ ହସ୍‌ପିଟାଲ୍‌ରେ ଆରୋଗ୍ୟ ଲାଭ କରୁଥିଲି । ଦିନକ ପରେ ମୁଁ ମାଲଖାନାରେ କାମରେ ଯୋଗ ଦେଇଥାନ୍ତି । କିନ୍ତୁ ଡାକ୍ତର ମେଙ୍ଗେଲ୍ ମୋତେ 'ଗ୍ୟାସ୍' ପାଇଁ ବାଛି ଦେଲା । ମୋତେ ମରଣ ୱାର୍ଡ୍‌ରେ ପହଞ୍ଚାଇ ଦିଆଗଲା । ଆମମାନଙ୍କୁ ଗ୍ୟାସ୍ ଚୁଲ୍ଲୀକୁ ନେବା ପାଇଁ ଗତକାଲି ଗାଡ଼ି ଆସି ପହଞ୍ଚିଲା । ମୁଁ ମରିବାକୁ ଚାହୁଁ ନଥିଲି ଏବଂ ପଳାୟନର ବାଟ ଖୋଜୁଥିଲି । ହଠାତ୍ ଦେଖିଲି ଚିମିନି ଭଳିଆ ଗୋଟାଏ କ'ଣ ସେ କାର ଭିତରେ ଥୁଆ ହୋଇଛି ଓ ତାର ମୁହଁ ବାହାରିଛି ପଦାକୁ । ତା ଭିତରକୁ ପଶିଗଲି, ଭାବିଲି, ''ମୋତେ ସେମାନେ ଦେଖିପାରିବେ ନାହିଁ । ପରେ ମୁଁ ଜାଣିପାରିଲି ଯେ ସେହି କାର୍ କେବଳ ତେଲରେ ନୁହେଁ କାଠ ଜାଳରେ ମଧ୍ୟ ଚାଲେ ।''

''ଗାଡ଼ି 'ଗ୍ୟାସ୍ ଚୁଲା' ପାଖକୁ ଗଲା । ଅନ୍ୟାନ୍ୟ ମହିଳାମାନଙ୍କୁ ଗୋଡ଼େଇ ଗୋଡ଼େଇ 'ଗ୍ୟାସ୍'ରେ ପୂରାଇ ଦେଲେ । ମୁଁ ଚିମିନି ଭିତରେ ରହିଗଲି, ମୋତେ କେହି ଦେଖିପାରି ନଥିଲେ । ଗାଡ଼ି ଗ୍ୟାରେଜକୁ ଫେରିଲା । ମୁଁ ଗ୍ୟାରେଜ୍‌ରେ ଏକା ରହିଗଲି । ମୁଁ ଚିମିନି ଭିତରୁ ବାହାରିଲା ବେଳକୁ ଚିମିନି କଳା ମୋର ସର୍ବାଙ୍ଗରେ ବୋଳି ହୋଇଯାଇଥିଲା । ମୋ ଦେହରେ କୌଣସି ପୋଷାକ ନଥିଲା କାରଣ ଗ୍ୟାସ୍‌କୁ ନେବା ପୂର୍ବରୁ ସମସ୍ତଙ୍କର ପୋଷାକ କାଢ଼ି ନିଆଯାଇଥିଲା । ମୁଁ କାର ବାହାରକୁ ଚାଲି ଆସିଲି । ରାତିଟା ସେମିତି କଟିଗଲା, ଗାଡ଼ି ଡ୍ରାଇଭର ସକାଳୁ ଫେରିଲେ ତାକୁ କ'ଣ କହିବି କିଛି ଭାବି ପାରୁ ନଥିଲି । ସକାଳେ ସେ ଫେରିଲା । ମୋତେ ଦେଖି ପୂରା ଡରିଗଲା । ସେ ବୋଧ ହୁଏ ଭୂତପ୍ରେତ ଶୟତାନରେ ବିଶ୍ୱାସ କରୁଥିଲା । ତେଣୁ ଭାବିଥିବ ମୁଁ କୌଣସି ପାର୍ଥିବ ଜୀବ ନୁହେଁ । ମୁଁ ତାକୁ ସବୁକଥା କହିଦେଲି । ସେ ମୋତେ ଗୋଟେ କମ୍ବଳ ଓ କିଛି ଖାଦ୍ୟ ଦେଇଥିଲା । ସନ୍ଧ୍ୟା ପର୍ଯ୍ୟନ୍ତ ସେଠାରେ ମୋତେ ରହିବାକୁ କହି ସେ ଶବ ଆଣିବା ପାଇଁ ଚାଲିଗଲା । ସେଠାରୁ ଫେରି ମୋତେ ଆଣିଛି ।''

ଆମ ବ୍ଲକ୍‌ରେ ସେହିଦିନ ଜଣେ ମହିଳା ମରିଯାଇଥିଲା । ଆମେ ତା'ର ଶବକୁ ବାହାର କରିଦେଲୁ ଏବଂ ତା'ର ମୃତ୍ୟୁ ଖବର ଅଫିସ୍‌କୁ ଜଣାଇ ନଥିଲୁ । ସେହି ଶଯ୍ୟାରେ ଫେଲା ରହିଗଲା । ପରବର୍ତ୍ତୀ ପରିବହନ ଗାଡ଼ିରେ ସେ ଆଉସ୍‌ଭିଜ୍ ପରିତ୍ୟାଗ କରିଥିଲା । ସେ ଆଉ ''ସଙ୍ଗଠନ'' କଲା କି ନା ମୁଁ ଜାଣି ନଥିଲି । ତା' ପରେ ମୁଁ ଆଉ ଫେଲାକୁ ଦେଖି ନାହିଁ ।

■■■

- ୧୯ -

# ଶିଶୁମାନଙ୍କ କଥା

୧୯୪୪ ମସିହା । ଅତ୍ୟନ୍ତ ଦୁଃସମୟ ଥିଲା । ଆଉସ୍‌ଭିଦ୍‌ଜ୍‌ରେ ମୃତ୍ୟୁ କାରଖାନା ଅବିଶ୍ରାନ୍ତ ଗତିରେ ଚାଲୁଥିଲା । ଦିନରାତି ମଣିଷ ବୋଝେଇ ରେଳଗାଡ଼ି ସେଠାରେ ପହଞ୍ଚୁଥିଲା ଏବଂ ସଙ୍ଗେ ସଙ୍ଗେ ଖଲାସ୍ ହୋଇଯାଉଥିଲା । ଅଧିକାଂଶ ଲୋକଙ୍କୁ ସିଧା ଗ୍ୟାସ୍ ଚେମ୍ବରକୁ ପଠାଇ ଦିଆଯାଉଥିଲା । ଗଡ଼ାଣି ପାଖରେ ଅବସ୍ଥିତ ଥିଲା ଅକ୍ଷମଶାଳା । କିନ୍ତୁ ବ୍ଲକ୍ ବାହାରକୁ ଯିବା ପାଇଁ ଆମକୁ ଅନୁମତି ନଥିଲା । ତଥାପି ଗେଟ୍ ଫାଙ୍କରେ ବାହାରର ଦୃଶ୍ୟ ଆମେ ସ୍ପଷ୍ଟ ଦେଖିପାରୁଥିଲୁ । ଥରେ ଆମେ ଦେଖିଲୁ, ତାଲା ବନ୍ଦ ଡବା ଭର୍ତ୍ତି ଗୋଟାଏ ମାଲଗାଡ଼ି ପହଞ୍ଚିଲା । ଟ୍ରେନ୍ ବନ୍ଦ ହେବା ସଙ୍ଗେ ସଙ୍ଗେ ବିକଟ ଶବ୍ଦ କରି ଡବାର ଦରଜା ଗୁଡ଼ିକ ଖୋଲିଗଲା ଏବଂ ସେଥିରୁ କ୍ଲାନ୍ତ ଶ୍ରାନ୍ତ ଅସଂଖ୍ୟ ଯାତ୍ରୀ ସେମାନଙ୍କ ଜିନିଷ ପତ୍ର ସହ ଓହ୍ଲେଇ ପଡ଼ିଲେ । ରଙ୍ଗ ବେରଙ୍ଗର ବ୍ୟାଗ୍, ଝୁଲା ଓ ବାକ୍ସପତ୍ର ଜମା ହୋଇଗଲା । କମାଣ୍ଡୋମାନଙ୍କ କାର୍ଯ୍ୟ ମଧ୍ୟ ଆରମ୍ଭ ହୋଇଗଲା । ସେମାନେ ବ୍ୟାଗ୍ ଓ ବାକ୍ସ ପ୍ରଭୃତିକୁ ଉଠେଇବା ସହ ଯାତ୍ରୀମାନଙ୍କ ହାତମୁଠାରୁ ମଧ୍ୟ ଜିନିଷ ଛଡ଼େଇ ନେବା ବେଳେ ସେମାନଙ୍କୁ ଧକାଏ ଧକାଏ ମାରି ଗୋଟାଏ ପଟକୁ ଫୋପାଡ଼ି ଦେଉଥିଲେ । କେତେକ ସେମାନଙ୍କ ଜିନିଷପତ୍ରକୁ ରକ୍ଷା କରିବା ପାଇଁ ପ୍ରାଣ ପଣେ ଚେଷ୍ଟା ମଧ୍ୟ କରୁଥିଲେ । ସେମାନେ ନାତ୍‌ସୀ ଆତଙ୍କବାଦୀମାନଙ୍କୁ ବୁଝାଉଥିଲେ । ''ଏଗୁଡ଼ା ଆମର ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ । ସେ ଗୁଡ଼ିକ ନହେଲେ ଆମେ ଚଳିବୁ କେମିତି ?'' ଆତଙ୍କବାଦୀ ଜଣକ ଫରକଟା ଗୋଡ଼ରେ ଛିଡ଼ା ହୋଇ ସବୁ ଶୁଣୁଥିଲା । ତା'ପରେ ଖୁବ୍ ଜୋର୍‌ରେ ଏକ ଧମକ ଦେଇ ଓ ହାତରେ ଥିବା ଚାବୁକ୍‌ରେ ପାହାରେ ମାରି ଦେଇ ଯାତ୍ରୀମାନଙ୍କୁ ସେଠାକାର କଠୋର ବାସ୍ତବତାକୁ ଜଣାଇ ଦେଉଥିଲା । ସେତିକିରେ ଯାତ୍ରୀମାନଙ୍କର ମୁହଁ ଶେତା ପଡ଼ିଗଲା । ସେମାନଙ୍କ କାନ୍ଧ ଯେମିତି କୁଜା ହୋଇଗଲା ଏବଂ ସେମାନେ ଅନୁଗତଙ୍କ ଭଳି ମରଣଧାଡ଼ିରେ ଛିଡ଼ା ହୋଇଗଲେ ।

ଗୁଡ଼ିଏ ମହିଳା ଓ ଶିଶୁ ମଧ୍ୟ ଟ୍ରେନ୍‌ରୁ ଓହ୍ଲାଇ ପଡ଼ିଲେ । ଛୋଟ ଝିଅଗୁଡ଼ିକ ସୁନ୍ଦର ସୁନ୍ଦର କଣ୍ଢେଇ କାଖରେ ଜାକିଥିଲେ । ଛୋଟ ପ୍ୟାଣ୍ଟ ପିନ୍ଧା ପୁଅଗୁଡ଼ିକଙ୍କର ଆନନ୍ଦର ସୀମା ନଥିଲା । ବୟସ୍କମାନଙ୍କ ଭଳି ସେମାନଙ୍କର ଆଦୌ କ୍ଳାନ୍ତି ନଥିଲା । ସେମାନେ ସେହି ଅନ୍ଧକାର ୱାଗନ୍‌ରୁ ମୁକ୍ତ ହୋଇଯିବାରୁ ସେମାନଙ୍କର ଆନନ୍ଦର ସୀମା ନଥିଲା ।

ଡାକ୍ତର ମେଙ୍ଗେଲ୍ ତା'ର ଶ୍ୟେନ ଦୃଷ୍ଟିରେ ନିରୀକ୍ଷଣ କରିବା ପାଇଁ ମା' ଓ ଛୁଆମାନେ ଗୋଟିଏ ଲାଇନ୍‌ରେ ଛିଡ଼ା ହୋଇଗଲେ । ମା' ଓ ଶିଶୁମାନଙ୍କୁ ନିର୍ମମ ଭାବରେ ହତ୍ୟା କରିବାକୁ ବହୁ ଦୂରରୁ ଅଣାଯାଇଥିବା ଦୃଶ୍ୟ ଦେଖି ହେନ୍ରିକ୍ ସେଙ୍କି ଉଇକ୍‌ଙ୍କ ରଚିତ 'ଦି ଡେଜାର୍ଟ ଏଣ୍ଡ ଦି ଓ୍ୱାଇଲଡରନେଶ୍'ରେ ବର୍ଣ୍ଣିତ ରାଜ୍ୟର କଲୋନି କଥା ମୋର ବାରମ୍ବାର ମନେ ପଡୁଥିଲା । ''ଯେପରିକି ଦୁଇଟି ଆଫ୍ରିକୀୟ ଆଦିବାସୀ ଗୋଷ୍ଠୀ ପରସ୍ପର ମଧ୍ୟରେ ଜୀବନ ମରଣ ଯୁଦ୍ଧରେ ବ୍ୟାପୃତ ହେଉଥିଲା ବେଳେ ମହିଳା ଓ ଶିଶୁମାନଙ୍କୁ ନିରାପଦ କଲୋନୀରେ ରଖାଯାଉଥିଲା ଏବଂ ଯୁଦ୍ଧରତ ସମ୍ପ୍ରଦାୟ ତା' ଭିତରକୁ ପ୍ରବେଶ କରିବା ନିଷିଦ୍ଧ ଥିଲା । ସେମାନଙ୍କୁ ପରସ୍ପର ପ୍ରତି ଘୃଣା ଓ ଅବଜ୍ଞାରୁ ସମ୍ପୂର୍ଣ୍ଣ ମୁକ୍ତ ରଖାଯାଉଥିଲା ।'' କିନ୍ତୁ ଆଉସ୍‌ଭିଡ୍‌ଜ୍‌ରେ ଜର୍ମାନ୍ ଦସ୍ୟୁମାନେ ଶିଶୁ ଓ ମହିଳାମାନଙ୍କୁ ସର୍ବ ପ୍ରଥମେ ହତ୍ୟା କରୁଥିଲେ । ନିର୍ଦ୍ଦୋଷ ବ୍ୟକ୍ତିମାନଙ୍କର ସେହି ନିର୍ମମ ହତ୍ୟା ଜନିତ ଅପରାଧ ପାଇଁ ଫାସିଷ୍ଟ ଦସ୍ୟୁମାନଙ୍କର କିଭଳି ପ୍ରାୟଶ୍ଚିତ ପ୍ରାପ୍ୟ ? ସେହି ଫାସିଷ୍ଟ୍‌ମାନଙ୍କୁ ଯଦି ସଭ୍ୟମାନବ ଏହି ପ୍ରଶ୍ନ କରେ ସେମାନେ ତାହାର କି ଉତ୍ତର ଦେବେ ? ହଙ୍ଗେରୀରୁ ଆଣିଥିବା ସେହି ନିର୍ଦ୍ଦୋଷ ଜୀବନ୍ତ ଶିଶୁମାନଙ୍କୁ ସେମାନେ କାହିଁକି ଜ୍ୱଳନ୍ତ ଅଗ୍ନିକୁଣ୍ଡକୁ ନିକ୍ଷେପ କରିଥିଲେ ? ଅକ୍ଟୋବରର ସେହି ଗୋଟିଏ ରାତ୍ରିରେ ସମସ୍ତ ଜିପ୍‌ସୀ ଶିଶୁଗୁଡ଼ିକୁ ଗ୍ୟାସ୍ ଚୁଲ୍ଲୀ ଭିତରକୁ କିପରି ଫୋପାଡ଼ି ପାରିଲେ ? ପୋଲାଣ୍ଡର ସେହି ନିରୀହ ଶିଶୁମାନଙ୍କୁ କିପରି ବରଫ ଗଦାରେ ପୋତି ପକାଇ ହତ୍ୟା କଲେ ?

■■■

– ୨୦ –

## ଜୀବନ୍ତ ମଶାଲ

ହିଟଲର ଶାସନର ସେହି ଶେଷ ଗ୍ରୀଷ୍ମରେ ଆଉସ୍‌ଭିଡ୍‌ଜ୍‌ରେ ଦୈନିକ କୋଡ଼ିଏ ହଜାର ଲୋକଙ୍କୁ ହତ୍ୟା କରାଯାଉଥିଲା । ଗ୍ୟାସ୍‌ଚୁଲ୍ଲୀ ଗୁଡ଼ିକ ମଧ୍ୟ ଲୋକମାନଙ୍କୁ ସମ୍ପୂର୍ଣ୍ଣ ପୋଡ଼ି ପାରୁ ନଥିଲା । ଚୁଲ୍ଲୀ ପାଖାପାଖି ବଡ଼ ବଡ଼ ଖାଲ ମଧ୍ୟ ଖୋଳାଗଲା ଏବଂ ସେଠାରେ ଶବଗୁଡ଼ିକ ଜମା କରାଯାଇ ସେଥିରେ ବେନେଜାଇନ୍ (ପେଟ୍ରୋଲ୍ ଜାତୀୟ ତରଳ ପଦାର୍ଥ) ଢାଳି ଜଳାଇ ଦିଆଯାଉଥିଲା । ଅଗ୍ନିର ଲେଲିହାନ୍ ଊର୍ଦ୍ଧ୍ୱଗାମୀ ଶିଖାରେ ଆକାଶଟା ଲାଲ ହୋଇଯାଉଥିଲା । ରାତ୍ରିର ସେହି ଦୃଶ୍ୟ ଅତ୍ୟନ୍ତ ହୃଦୟ ବିଦାରକ ଓ ଭୟଙ୍କର ହେଉଥିଲା । ଅଗ୍ନିର ଲୋହିତ ପିଙ୍ଗଳ ବର୍ଣ୍ଣ ଅପେକ୍ଷା ମନୁଷ୍ୟ ରକ୍ତର ସମୁଦ୍ର ଆମକୁ ଅଧିକ ବିଚଳିତ କରୁଥିଲା । ଜ୍ୱଳନ୍ତ ମନୁଷ୍ୟ ମାଂସ ଓ ସେଥିରୁ ନିର୍ଗତ ଧୂମରାଶିର

ଶ୍ୱାସରୋଧକାରୀ ଗନ୍ଧ ଆମକୁ ସଞ୍ଜ୍ଞାହୀନ କରି ଦେଉଥିଲା । ସେହି ଗ୍ରୀଷ୍ମରେ ଉପରୁ ଗ୍ୟାସ୍ ଚୁଲ୍ଲୀର ଚିମିନି ଧୂଆଁ ଏବଂ ଗଣ ସମାଧିର ତଳୁ ଆସୁଥିବା ଶବପୋଡ଼ା ଗନ୍ଧରେ ଆମ୍ଭେମାନେ ଅତିଷ୍ଠ ହୋଇଯାଉଥିଲୁ । ସେ ବର୍ଷର ଜୁଲାଇ ଅଗଷ୍ଟର ପ୍ରବଳ ଗରମ ଅତ୍ୟନ୍ତ କଷ୍ଟ ଦାୟକ ଥିଲା । ଏକ ଭୟଙ୍କର ଗ୍ରୀଷ୍ମ ସେ । ଆଜି ସେଦିନର ଘଟଣାଗୁଡ଼ିକ ପ୍ରତି ପଶ୍ଚାତ୍ ଦୃଷ୍ଟି ପକାଇଲେ ସେତେବେଳେ ସର୍ବତ୍ର ପ୍ରତି ମୁହୂର୍ତ୍ତରେ ମୂଲ୍ୟବାନ ମନୁଷ୍ୟ ଜୀବନକୁ ଯେପରି ଅବଲୀଳା କ୍ରମେ ନିଃଶେଷ କରି ଦିଆଯାଉଥିଲା ଓ ସେ ଅବସ୍ଥାରେ ଆମେ କିପରି ଜୀବନ ଧରି ରହିଥିଲୁ ସେକଥା ଆଦୌ ଭାବି ପାରୁ ନାହିଁ । ଆମେ କେମିତି ପାଗଳ ହୋଇ ଗଲୁ ନାହିଁ ? ସେହି ଅସହନୀୟ ପରିସ୍ଥିତିରେ ଧୈର୍ଯ୍ୟ ଅତୁଟ ରଖି ଆମେ କିପରି ବଞ୍ଚି ରହିଲୁ । ଅବଶ୍ୟ ଏମିତି ବେଳ ବି ଆସୁଥିଲା ଯେତେବେଳେ ଆମ ଇଚ୍ଛା ବିରୁଦ୍ଧରେ ତଣ୍ଟିଫଟା କରୁଣ ଚିତ୍କାର ମାନ ପ୍ରତଧ୍ୱନିତ ହେଉଥିଲା ।

ଦିନେ ଆମେ ବ୍ଲକ୍ ସାମନାରେ ଛିଡ଼ା ହୋଇ ବାହାରକୁ ଚାହିଁ ରହିଥିଲୁ । ଆକାଶ କ୍ରମେ ଗାଢ଼ ଲାଲ ବର୍ଣ୍ଣ ଧାରଣ କରୁଥିଲା । ସେଦିନ ଅଧିକ ଗାଡ଼ି ଆସୁ ନଥିବାରୁ ରାତ୍ରି ନିସ୍ତବ୍ଧ ଥିଲା । ଅସଂଖ୍ୟ ଶବ ପୋଡ଼ା ନହୋଇ ଜମା ହୋଇଥିଲା । ପୁରୁଣା ''ମାଲ୍'' ଖଲାସ୍ ନ ହେବା ପର୍ଯ୍ୟନ୍ତ ଅଧିକ ''କଞ୍ଚାମାଲ୍'' ଆଣିବାକୁ କର୍ତ୍ତୃପକ୍ଷ ପ୍ରସ୍ତୁତ ନଥିଲେ । ସେହି ଅସ୍ୱସ୍ତିକର ନିସ୍ତବ୍ଧତାକୁ ଭଙ୍ଗ କରି ଜଳି ଜଳି ଯାଉଥିବା ହଜାର ହଜାର ଶିଶୁଙ୍କ କଣ୍ଠକୁ ଭେଦ କରି ହଠାତ୍ ଶୁଭିଲା କରୁଣ କ୍ରନ୍ଦନ ଧ୍ୱନି - ଭୟ ଓ ଯନ୍ତ୍ରଣା ସୃଷ୍ଟ ସେହି ଚିତ୍କାର - ମା ମା - ମା ଆ ଆ ମା ଆ ଆ । କ୍ରମେ ବଢୁଥିଲା ସେ ଶବ୍ଦ ଏବଂ ତାହା ସମଗ୍ର ବ୍ଲକ୍‌ର ଅନ୍ତେବାସୀ ମହିଳାମାନଙ୍କ କଣ୍ଠରେ ଯେମିତି ପ୍ରତିଧ୍ୱନିତ ହେଉଥିଲା ।

ନିଜର ସ୍ଥିତିରୁ ବିସ୍ମୃତ ହୋଇ ଆମ ପାଟି ମଧ୍ୟ ଖୋଲିଗଲା । ସମସ୍ତଙ୍କ କଣ୍ଠରେ ନିନାଦିତ ହେଲା ହାୟ ହାୟ । ହତାଶା ଓ ବିଳାପର ଧ୍ୱନି । କ୍ରମେ ତାହା ଉଚ୍ଚସ୍ୱରରେ ପ୍ରକମ୍ପିତ ହୋଇଗଲା । ମାତୃ ସୁଲଭ ସ୍ନେହସିକ୍ତ ହାହାକାର । ୱାର୍ଡେନ୍ ଓ ସର୍ଦ୍ଦାର ମାନେ ଆମ୍ଭମାନଙ୍କୁ ଗୋଡ଼େଇ ଗୋଡ଼େଇ ବ୍ଲକ୍ ଭିତରେ ପୂରାଇ ଦେଲେ ଏବଂ ସେହି ଶବ୍ଦ ଯେପରି ପ୍ରକାଶିତ ନ ହୁଏ, ଆମମାନଙ୍କୁ କମ୍ବଳ ଘୋଡ଼ାଇ ପକାଇଲେ । କାଳେ ସେହି ଶବ୍ଦ ମୁମୂର୍ଷୁ ରୋଗୀଙ୍କ କର୍ଣ୍ଣଗହ୍ୱରରେ ପ୍ରବେଶ କରିବ - ୱାର୍ଡେନ୍ ଓ ସର୍ଦ୍ଦାରଙ୍କୁ ତାହା ହିଁ ଆତଙ୍କିତ କରୁଥିଲା ।

ଶେଷରେ ସେହି ଶବ୍ଦ ସ୍ତବ୍ଧ ହୋଇଗଲା । କିନ୍ତୁ ନିର୍ମମଭାବେ ହତ୍ୟା କରା ଯାଉଥିବା ସେହି ଶିଶୁମାନଙ୍କର କ୍ରନ୍ଦନ ଧ୍ୱନି କାନରେ ବାରମ୍ବାର ପ୍ରତିଧ୍ୱନିତ ହେଉଥିଲା । କ୍ରମେ ସବୁକିଛି ମିଳେଇ ଗଲା ମୃତ୍ୟୁ ଜନିତ ନିସ୍ତବ୍ଧତା ଭିତରେ । ପରଦିନ ସକାଳୁ ଶୁଣିଲୁ ନାତ୍‌ସୀ ଆତଙ୍କବାଦୀମାନେ ମୃତ ଓ ଅର୍ଦ୍ଧମୃତ ଶିଶୁମାନଙ୍କୁ ଠେଲାଗାଡ଼ିରେ ବୋହି ନେଇ ସେହି ବିଶାଳ ଜ୍ୱଳନ୍ତ ଅଗ୍ନିକୁଣ୍ଡରେ ନିକ୍ଷେପ କରିଦେଲେ ।

ସେମାନେ ଜଳିବାକୁ ଲାଗିଲେ ଜୀବନ୍ତ ମଶାଲ ଭଳି । କି ଅପରାଧରେ ସେହି ନିର୍ଦ୍ଦୋଷ ଶିଶୁମାନଙ୍କର ସେ ଗଣ ସଂହାର । ହତ୍ୟାକାରୀମାନଙ୍କର ସେହି ଜଘନ୍ୟ ଅପରାଧ ପାଇଁ କେଉଁ ଦଣ୍ଡ ବା ପର୍ଯ୍ୟାପ୍ତ ହେବ ?

■■■

– ୨୧ –

## ଜୀପ୍‌ସୀ ସଂହାର

ଜର୍ମାନ ଡାକ୍ତରମାନେ ସାଧାରଣତଃ ମଧ୍ୟାହ୍ନରେ ହସପିଟାଲ୍‌ରେ ପହଞ୍ଚୁଥିଲେ । ସେଦିନ ସକାଳେ ହସ୍‌ପିଟାଲ୍‌କୁ ଆସିଥିବା ରୋଗୀମାନଙ୍କୁ ଦେଖୁଥିଲେ । ତା' ପରେ ଦିନକ ପାଇଁ ହସ୍‌ପିଟାଲ୍‌ରେ ରହିବାକୁ ଅନୁମତି ଦେଉଥିଲେ । ସେମାନେ ଯିବାପରେ ଆମେ ଟିକେ ଆଶ୍ୱସ୍ତ ହେଉଥିଲୁ । କମାଣ୍ଡୋମାନେ କାମରୁ ଫେରିବା ପରେ ଆମେ କ୍ଲିନିଂ ଓ ଡ୍ରେସିଂ ଆରମ୍ଭ କରୁଥିଲୁ । ସେହି ସମୟରେ ଆମ ମନରେ ଉଦ୍‌ବେଗ ଟିକେ କମ୍ ଥାଏ ।

ଆମେ ଅସ୍ତ୍ରମଶାଳାରେ ବସିଥିବାବେଳେ ନର୍ସ ମାରସୁଲା ଆଦେଶ ଦେଲା, "ହାଜର" । କୁଦାଏ ଲେଖା ମାରି ଆମେ ହାଜର ହୋଇଗଲୁ ଏବଂ ପୂରା ଆଟେନ୍‌ସନ୍ ମୁଦ୍ରାରେ ଛିଡ଼ା ହୋଇଥିବା ବେଳେ ଗୋଟିଏ ଚାରିବର୍ଷ ବୟସର ଶିଶୁଟିକୁ ଧରି ଡାକ୍ତର ମେଙ୍ଗେଲ୍ ପ୍ରବେଶ କଲା । ପିଲାଟି ଅତି ସୁନ୍ଦର ଦିଶୁଥିଲା । ସେ ଇସ୍ତ୍ରୀ କରା ଲମ୍ବା ପ୍ୟାଣ୍ଟ, ସୁନା ବୋତାମ ଦିଆ ଜାକେଟ୍, ସାର୍ଟ ଓ ଟାଇ ସହ ଧପ୍ ଧପ୍ ଧଳା ସିଲ୍‌କ ପୋଷାକ ପିନ୍ଧିଥିଲା । ଆମେମାନେ ସମ୍ମୋହିତ ଦୃଷ୍ଟିରେ ପିଲାଟିକୁ ଚାହିଁ ରହିଲୁ । ଆମେମାନେ ଶିଶୁଟିକୁ ଦେଖି ମୁଗ୍ଧ ହେବାକୁ ମେଙ୍ଗେଲ୍ ଚାହୁଁଥିଲା ବୋଧେ । ଅସ୍ତ୍ରମଶାଳାର ମଧ୍ୟଭାଗରେ ଏକ ଚେୟାର ପକେଇ ଦେଇ ମେଙ୍ଗେଲ୍ ସେଥିରେ ବସିଗଲା । କୋଳରେ ଜୀପ୍‌ସୀ ଛୁଆଟି । ସେ ଜର୍ମାନ୍ ଭାଷା ବୁଝୁଥିଲା ।

"ସମସ୍ତଙ୍କୁ ଟିକେ କୋଜାକ୍ ନାଚ ଦେଖେଇଦେ ।" ପିଲାଟି କୋଜାକ୍ ନାଚିଲା । ମେଙ୍ଗେଲ୍ ତାଳିମାରି ତା' ନାଚରେ ତାଳ ଦେଲା । ନିରୀହ ଶିଶୁଟି ମଧ୍ୟ ମେଙ୍ଗେଲ୍ କୋଳରେ ଠିକ୍ ଭାବେ ବସିବା ପାଇଁ ତାକୁ ଗୋଇଠା ମାରୁଥିଲା । ବିସ୍ମୟ ବାଳକ ! "ଗୀତଟିଏ ଗାଇଦେ ।" ମେଙ୍ଗେଲ୍‌ର ବରାଦ । ଚମତ୍କାର ଜୀପ୍‌ସୀ ମେଲୋଡ଼ିଟିଏ ଗାଇଲା ଛୁଆଟି ।

ଆମେମାନେ ସେମିତି ଛିଡ଼ା ହୋଇ ରହିଥାଉ ଶିଶୁଟି ତାର ନାଚ ଗୀତ ପ୍ରଦର୍ଶନ

କରୁଥିଲା । ମନେ ହେଉଥିଲା ଯେପରିକି ମେଙ୍ଗେଲ୍ ଛୁଆଟିକୁ ଖୁବ୍ ଭଲ ପାଉଥିଲା । ସେ ତାକୁ କୁଣ୍ଢାଇ ପକାଉଥିଲା ଓ ଚୁମା ଦେଉଥିଲା, ''ତୁ ଚମତ୍କାର ନାଚ ଦେଖେଇଲୁ । ସେଥିପାଇଁ ପୁରସ୍କାର ପାଇବୁ ।'' ଏହା କହି ଚକୋଲେଟ୍ ବାକ୍ସଟିଏ ପକେଟ୍ରୁ କାଢ଼ି ଧରାଇ ଦେଲା । ତା'ପରେ ସେମାନେ ଚାଲିଗଲେ । ମେଙ୍ଗେଲ୍ କାହିଁକି ସେ ପିଲାଟିର ବାହାଦୂରୀ ଆମକୁ ଦେଖାଇବାକୁ ଆଣିଥିଲା, ଆମେ କିଛି ବୁଝି ପାରୁ ନଥିଲୁ ।

''ମେଙ୍ଗେଲ୍ ଯେ ଶିଶୁଟିକୁ ଖୁବ୍ ଶୀଘ୍ର ହତ୍ୟାକରିବ ଏଥିରେ କୌଣସି ସନ୍ଦେହ ନାହିଁ ।'' ମାରୁସିଆ କହିଲା, ସେ କଥା ଶୁଣି ଆମ ଦେହ ଶୀତେଇ ଉଠିଲା । ସେବର୍ଷ ସାରା ଖରାଦିନଟା ମେଙ୍ଗେଲ୍ ଜୀପ୍‌ସୀ ଶିଶୁଟିକୁ ସବୁ ବ୍ଳକ୍‌ରେ ବୁଲାଇ ବୁଲାଇ ଦେଖାଉଥିଲା । ଶିଶୁଟି ସର୍ବଦା ଧଳାପୋଷାକ ପିନ୍ଧୁଥିଲା । ଏପରିକି ଗ୍ୟାସ୍ ପାଇଁ ବଛାବଛି ଦିନ ମଧ୍ୟ ଧଳା ପୋଷାକ ପରିହିତ ସେହି ସୁନ୍ଦର ଶିଶୁ ତା' ପାଖରେ ଛିଡ଼ା ହୋଇ ରହୁଥିଲା ।

ଥରେ ''ସି'' ଫିଲ୍ଡରେ ମେଙ୍ଗେଲ୍ ଆଉସ୍‌ଭିଟ୍‌ଜ୍‌ରେ ଥିବା ଜୀପ୍‌ସୀମାନଙ୍କର ଏକ ଅଭିନବ ପାରିବାରିକ ମିଳନର ମଧ୍ୟ ଆୟୋଜନ କରିଥିଲା । ସେତେବେଳକୁ ପ୍ରାୟ ୨୫ ହଜାର ଜୀପ୍‌ସୀ ୟୁରୋପର ବିଭିନ୍ନ ରାଜ୍ୟରୁ ଧରାହୋଇ ଆଉସ୍‌ଭିଟ୍‌ଜ୍‌ରେ ରହିଥିଲେ । ଶିଶୁମାନେ ମଧ୍ୟ ବାପ ମା'ଙ୍କ ସାଙ୍ଗରେ ରହୁଥିଲେ । ପରିବାରରେ ରହିବା ପାଇଁ ସେମାନଙ୍କୁ କାହିଁକି ଅନୁମତି ଦିଆଯାଇଥିଲା ଏବଂ ଯୁଦ୍ଧ ଶେଷ ପର୍ଯ୍ୟନ୍ତ ସେମାନେ ନିଶ୍ଚୟ ରହିବେ ବୋଲି ବିଶ୍ୱାସ କରିବାକୁ କାହିଁକି ଯେ ସେମାନଙ୍କୁ କୁହାଯାଇଥିଲା, ତାହା ମୋର ବୋଧଗମ୍ୟ ହେଉ ନଥିଲା ।

୧୯୪୪ର ଶୀତଋତୁ ପହଞ୍ଚିବା ସଙ୍ଗେ ସଙ୍ଗେ ସବୁ ଜୀପ୍‌ସୀ ଶିବିରର ମଧ୍ୟ ଇତି ହୋଇଯାଇଥିଲା । ଠିକ୍ ତାରିଖଟା ମୋର ମନେ ନାହିଁ । କିନ୍ତୁ ଏତିକି ମନେ ଅଛି ଯେ ଅକ୍ଟୋବରର ଗୋଟିଏ ରାତିରେ ସମସ୍ତ ଜୀପ୍‌ସୀଙ୍କର ଜୀବନଲୀଳା ଶେଷ ହୋଇ

---

[ଜୀପ୍‌ସୀ:- ଇଉରୋପ ପ୍ରବାସୀ ଏସୀୟ ଯାଯାବର ଜାତି - ସେମାନେ ଛୋଟ ଛୋଟ ବ୍ୟବସାୟ, କୁଟୀର ଶିଳ୍ପ, ମ୍ୟାଜିକ୍ ଓ ବାଉଁଶରାଣୀ ନାଚ ଦେଖାଇ ପେଟ ପୋଷନ୍ତି । (1) Members of wandering race of Hindu religion (AJANTA Dictionary (2) Members of a wandering Asiatic people (Oxford Dict: (3) Member of a dark skinned travelling people originally from N.W. India (Chambers 21st) (୧) ହିନ୍ଦୁ ଧର୍ମାବଲମ୍ବୀ ଯାଯାବର ୨ - ଏସିଆ ଅଧିବାସୀ ଯାଯାବର (୩) କୃଷ୍ଣଚର୍ମ ବିଶିଷ୍ଟ ଉତ୍ତର ପଶ୍ଚିମ ଭାରତର ଯାଯାବର]

ଯାଇଥିଲା । ସେଦିନ ସକାଳେ ସବୁ ଜୀପ୍‌ସୀ ତରୁଣୀଙ୍କୁ କ୍ୟାମ୍ପରୁ ନେଇ ନେଇ ନିଆଗଲା । ସେମାନଙ୍କୁ ଗାଡ଼ି ଭିତରେ ପୂରାଇବା ବେଳେ ସେଠାରେ ବିକଟ କରୁଣ ଧ୍ୱନି ସୃଷ୍ଟି ହୋଇଥିଲା । ସେମାନେ ଆଶଙ୍କା କରୁଥିଲେ ଯେ ଯେଉଁମାନେ ପଛରେ ରହିଗଲେ, ସେମାନଙ୍କ ମୃତ୍ୟୁ ଅବଧାରିତ । ତାହା ମଧ୍ୟ ଅଭ୍ରାନ୍ତ ସତ୍ୟ ଥିଲା । ସେଦିନ ସନ୍ଧ୍ୟାରେ ଗ୍ୟାସ୍ ଚେମ୍ବର ଇଞ୍ଜିନ୍‌ର ମର୍ମର ଶବ୍ଦ ଚତୁର୍ଦ୍ଦିଗକୁ କରିଥିଲା ଭାରାକ୍ରାନ୍ତ । ସେହି ଗୋଟିଏ ରାତିରେ କୋଡ଼ିଏ ହଜାର ଇହୁଦୀଙ୍କୁ ହତ୍ୟା କରାଯାଇଥିଲା ।

ବଡ଼ ବିଚିତ୍ର । ସେହି ଗଣସଂହାର ଭିତରେ ଆମେମାନେ କେବଳ ଜଣକ କଥା ହିଁ ଭାବୁଥିଲୁ । ମେଙ୍ଗେଲ୍ କ'ଣ ସେହି ମନୋହର ଶିଶୁଟିକୁ ଗ୍ୟାସ୍ ମୁହଁରୁ ରକ୍ଷା କରିଥିବ ? କିନ୍ତୁ ତା' ପରଦିନ ମେଙ୍ଗେଲ୍ ସାଙ୍ଗରେ ସେହି ମନୋରମ ଶିଶୁଟିକୁ ଆଉ ଦେଖିବାକୁ ପାଇଲୁ ନାହିଁ । ଖବର ପାଇଲୁ ଯେ ଶେଷ ମୁହୂର୍ତ୍ତରେ ମେଙ୍ଗେଲ୍ ନିଜ ହାତରେ ଶିଶୁଟିକୁ ଗ୍ୟାସ୍ ଭିତରକୁ ଠେଲି ଦେଇଥିଲା ।

■■■

– ୨୨ –

## ସ୍ନେହବନ୍ଧୁ

କ୍ୟାରୋଲ୍ ଜଣେ ରେଜିଷ୍ଟାର୍ଡ ନର୍ସଥିଲା । ଯୁଦ୍ଧ ପୂର୍ବରୁ ସେ କ୍ରାକୋଭର ଏକ ହସ୍‌ପିଟାଲ୍‌ରେ କାର୍ଯ୍ୟ କରୁଥିଲା । ମଣିଷର ପେଶା (ପ୍ରଫେସନ୍) ଯଦି ତାହାର ଚେହେରା ଓ ମନ ପ୍ରଭାବିତ କରିବା ସତ୍ୟ ହୋଇଥାଏ, ତାହାହେଲେ କ୍ୟାରୋଲ୍ ସେହି ସତ୍ୟର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ଥରେ ମାତ୍ର କ୍ୟାରୋଲ୍‌କୁ ଚାହିଁ ଦେଲେ, ତାହାର ପେଶା କ'ଣ ଜାଣିବା ଆଦୌ କଷ୍ଟକର ହେଉ ନଥିଲା । ତାର ପ୍ରଶାନ୍ତ ମୁଖ ମଣ୍ଡଳ, ଦ୍ରୁତ କିନ୍ତୁ ନିଃଶବ୍ଦ ପଦପାତ ଏବଂ ସମଗ୍ର ଚେହେରାର ମହାନତା ଦେଖିଲେ ମନେ ହୁଏ ସେ ନିଶ୍ଚୟ ଜଣେ ବିସ୍ମୟ-ସେବିକା । ମୁଁ ଆଉସ୍‌ଭିତ୍‌ଜ୍‌ରେ ଯେତେବେଳେ ପ୍ରଥମେ ତାକୁ ଦେଖିଲି ତା' ବୟସ ପ୍ରାୟ ପଇଁତ୍ରିଶ ବର୍ଷ ଥିଲା ।

ସେ ତା' ମନର ଗହନର କଥା କାହା ଆଗରେ ପ୍ରକାଶ କରିବାକୁ ଆଦୌ ଆଗ୍ରହ ପ୍ରକାଶ କରେ ନାହିଁ । ସେ ସର୍ବଦା ଚିନ୍ତାରେ ବୁଡ଼ି ରହିଥିବା ଭଳି ମନେ ହୁଏ । ମୁଁ ତା' ସମ୍ପର୍କରେ ଖୁବ୍ କମ୍ କଥା ଜାଣିଥିଲି । ତାର ଶାନ୍ତ ସ୍ୱଭାବ ବେଶ୍ ପ୍ରଭାବଶାଳୀ ଥିଲା । ସେ ହସ୍‌ପିଟାଲ୍ ବ୍ଲକ୍‌ରେ କାର୍ଯ୍ୟ କରୁଥିବାରୁ ମୁଁ ତାକୁ ବହୁତ ସମୟରେ ଦେଖୁଥିଲି । ତାର ବ୍ୟବହାର ଅପରିବର୍ତ୍ତିତ ଥିଲା । ସେ ଶାନ୍ତ ଓ ଧୀର ସ୍ଥିର ଥିଲା ।

ଜନରବ ହେଉଥିଲା ଯେ ସେ ତାର ଦୁଇଟି ସନ୍ତାନଙ୍କୁ ତା'ର ଭଉଣୀ ନିକଟରେ ଛାଡ଼ି ଦେଇ ଆସିଥିଲା । ଝିଅଟି ତେର ବର୍ଷର ଓ ପୁଅଟି ପାଞ୍ଚ ବର୍ଷର । ସେ ସେମାନଙ୍କ ବିଷୟରେ କ୍ୱଚିତ୍ କହୁଥିଲା । ତା'ର ଆଶଙ୍କା ଥିଲା ଯେ ସେ ସେମାନଙ୍କ ସମ୍ପର୍କରେ କଥାବାର୍ତ୍ତା କଲେ, ତାହା ସେମାନଙ୍କୁ ଏଠାକୁ ଟାଣି ଆଣିବ । ବସ୍ତି ବାହାରେ ଭଦ୍ର ସମାଜରେ ତା'ର ଭଉଣୀ ସେମାନଙ୍କୁ ଲାଳନ ପାଳନ କରୁଥିଲା ବୋଲି ଶୁଣାଯାଉଥିଲା ।

ମୋର ମନେ ଅଛି ଗ୍ରୀଷ୍ମ ଋତୁରେ ଦିନେ କ୍ୟାରୋଲ୍ ଜାଣିବାକୁ ପାଇଲା ଯେ ତାର ଦୁଇ ସନ୍ତାନଙ୍କ ସହ ତାହାର ଭଉଣୀ ମଧ ଧରାହୋଇ ଅନ୍ୟମାନଙ୍କ ସହ ବ୍ଲକ୍ ଗଡ଼ାଣିରେ ଡାକ୍ତରକୁ ଅପେକ୍ଷା କରି ରହିଛନ୍ତି ।

ସେଦିନ ମଧାହ୍ନରେ ଡାକ୍ତର କ୍ଲ୍ୟନିଗ୍ ରୋଗୀମାନଙ୍କୁ ଦେଖୁଥିଲା । କ୍ଲ୍ୟନିଗ୍ ଜଣେ ଡେଙ୍ଗା ଚେମେଡ଼ିଆ ମଳିନ ଚେହେରାର ଲୋକ ଥିଲା । ସେ କିନ୍ତୁ ରୋଗୀମାନଙ୍କର ହିତକାରୀ ପରି ଆଚରଣ କରୁଥିଲା । ଡାକ୍ତର ମେଞ୍ଜେଲ୍ ଅପେକ୍ଷା କ୍ଲ୍ୟନଗ୍‌କୁ ଆମେ ଅଧିକ ପସନ୍ଦ କରୁଥିଲୁ । ହଠାତ୍ ଅକ୍ଷମଶାଳାର ଗେଟ୍ ଖୋଲିଗଲା ଏବଂ ତୋଫାନ୍ ଭଳି ପଶି ଆସିଲା କ୍ୟାରୋଲ୍ । ଅକ୍ଷମଶାଳାର ମଧ ଭାଗରେ ସେ ଆଣ୍ଠେଇ ପଡ଼ି ଓ ହାତଯୋଡ଼ି କ୍ଲ୍ୟନିଗ୍ ନିକଟରେ ପ୍ରାର୍ଥନା କଲା । ''ମୋର ସନ୍ତାନ ଦୁଇଟିକୁ ରକ୍ଷା କରନ୍ତୁ ସାର୍ ।'' କ୍ୟାରୋଲ୍ ସାଙ୍ଗରେ ଆସିଥିବା ଓର୍ଲି ମଧ ତା' ପାଖରେ ଛିଡ଼ା ହେଲା । କ୍ୟାରୋଲ୍‌ର ଭାଗ୍ୟ ଭଲ ଯେ ସେଦିନ ସେଠାକୁ ମେଞ୍ଜେଲ୍ ଆସି ନଥିଲା । ସେ ଯଦି ଥାଆନ୍ତା ସଙ୍ଗେ ସଙ୍ଗେ କ୍ୟାରୋଲ୍ ସହ ପିଲା ଦୁଇଟିକୁ ମଧ ଗ୍ୟାସ୍‌କୁ ପଠାଇ ଦେଇଥାନ୍ତା । ମେଞ୍ଜେଲ୍ କହୁଥିଲା, ପିଲାମାନେ କ୍ୟାମ୍ପରେ ରହିବା ଅନୁଚିତ ଏବଂ ମା'କୁ ଛାଡ଼ି କେବଳ ପିଲାମାନଙ୍କୁ ମଧ ଗ୍ୟାସ୍‌କୁ ପଠାଇବା ''ଅମାନୁଷିକତା'' ।

ଡାକ୍ତର କ୍ଲ୍ୟନିଗ୍ ଅବାକ୍ ହୋଇଗଲା । ଓର୍ଲି କାଳବିଳମ୍ବ ନକରି କହି ପକାଇଲା, ''କ୍ୟାରୋଲ୍ ଜଣେ ପେଶାଦାର ନର୍ସ ଏବଂ ଜଣେ ଉତ୍ତମ କର୍ମଚାରୀ ।''

''ମୋ ସାଙ୍ଗରେ ଆସ ଓ ତୁମର ପିଲାଙ୍କୁ ନେଇଯାଅ ।'' ପିଲାଙ୍କୁ ଆଣିବାରେ ସାହାଯ୍ୟ କରିବା ପାଇଁ ଓର୍ଲି ମଧ ତା ସହ ଚାଲିଗଲା ।

ସେଦିନ ସନ୍ଧ୍ୟାରେ ମୁଁ କ୍ୟାରୋଲ୍ ରହୁଥିବା ପାଖ ବ୍ଲକ୍‌କୁ ଗଲି । କ୍ୟାରୋଲ୍ ତା'ର ପିଲା ଦୁଇଟିଙ୍କ ସହ ଉଚ୍ଚ ଖଟ ଉପରେ ବସିଥିଲା । ଝିଅଟି ତା' ମା' ଭଳି ବେଶ୍ ଡେଙ୍ଗା ହୋଇଥିବାରୁ ତାହାର ପ୍ରକୃତ ବୟସରୁ ଅଧିକ ତିନି ବର୍ଷ କରି ଲେଖିବାରେ କୌଣସି ଅସୁବିଧା ନଥିଲା । ତା' ବୟସ ଷୋଳ ବର୍ଷ ବୋଲି ରେଜିଷ୍ଟ୍ରେସନ୍ କାର୍ଡରେ ଲେଖା ହେଲା ଏବଂ ତା' ନମ୍ବର ବାହୁରେ ଲେଖି ଦିଆଗଲା । କିନ୍ତୁ ପୁତ୍ର ବାଇସେକ୍ ଅତି ଛୋଟ ହୋଇଥିବାରୁ ତାହାର ପ୍ରକୃତ ବୟସ ଲୁଚାଇବା ସମ୍ଭବ ନଥିଲା । ତାର ବୟସ ମାତ୍ର

ପାଞ୍ଚ ବର୍ଷ । ତାହାର ଗଠନ ମଧ୍ୟ ତଦନୁରୂପ ଥିଲା । ଅଳ୍ପ ଉଚ୍ଚ, ରଙ୍ଗ କଳା, ଘନ ବାଦାମୀ ରଙ୍ଗର କେଶ । ତା' କପାଳରେ କଟା ଦାଗ । ଉଜ୍ଜ୍ୱଳ ଆଖି ଦୁଇଟି ସମଗ୍ର ଚେହେରାକୁ ଆକର୍ଷଣୀୟ କରିଥିଲା । କିନ୍ତୁ ପିଲାଟା ପୂରା ଡରିଯାଇଥିବାରୁ ମା'କୁ କୁଣ୍ଢେଇ ଥାଏ । ତାର ଚତୁର୍ଦ୍ଦିଗରେ ଶାୟିତ ମୁମୂର୍ଷୁ ରୋଗୀଙ୍କର ସେହି ବିକଟାଳ ପୃଥିବୀକୁ ସେ ଅନେଇ ଥାଏ ଓ ସେମାନଙ୍କ କଥା ଶୁଣୁଥାଏ । ସେମାନଙ୍କ ଆଡ଼କୁ ମୁଣ୍ଡକୁ ଏମିତି ଝୁଲାଇ ଦେଇଥାଏ ଯେ ଜଣାଯାଉଥାଏ ଯେପରିକି ସେ ସେମାନଙ୍କ କଥା କାନଡେରି ଶୁଣୁଥିଲା ଓ ସେଠାରୁ ପଳେଇ ଯିବାକୁ ଚାହୁଥିଲା ।

କ୍ୟାରୋଲ୍‌ର ଝିଅ କ୍ରାଇସିଆ (Krysia) ତା' ପରଦିନ ବ୍ଲକ୍‌ରେ ପତ୍ରବାହକ କାର୍ଯ୍ୟ ଆରମ୍ଭ କରିଦେଲା ଅର୍ଥାତ୍ ଆଉସ୍‌ଭିଡ୍‌ଜ୍‌ରେ ତାର ସାବାଳକ କାର୍ଯ୍ୟ ଆରମ୍ଭ ହୋଇଗଲା । କିନ୍ତୁ ପୁଅ ବାଇଜେକ୍ କଥା କ'ଣ କରାଯିବ ? ଓର୍ଲି ସାହାଯ୍ୟରେ କ୍ୟାରୋଲ୍ ତାକୁ ତାହାର ନିଜ କ୍ୟାମ୍ପ୍ ଭିତରକୁ ଆଣିବାକୁ ସମର୍ଥ ହୋଇଥିଲା । ହସ୍‌ପିଟାଲ୍ ରେଜିଷ୍ଟର୍‌ରେ ତାହାର ନାମ ନ ଥିବାରୁ କାଗଜପତ୍ରରେ ତାହାର କୌଣସି ସ୍ଥିତି ନଥିଲା । କେବଳ କ୍ଲ୍ୟୁନିଗ୍ ଡାକ୍ତର ତାହା ଜାଣିଥିଲା । କିନ୍ତୁ ସେ କିଭଳି ବ୍ୟବହାର କରିବ କିଏ ଜାଣେ ? ଏଭଳି କ'ଣ ହୋଇ ନପାରେ ଯେ ଦିନେ ଡାକ୍ତର କ୍ଲ୍ୟୁନିଗ୍ ହଠାତ୍ ସେଠାରେ ପହଞ୍ଚିଯିବ ଏବଂ ଅନ୍ୟ ପିଲାମାନଙ୍କ ସହ ବାଇଜେକ୍‌କୁ ଗ୍ୟାସ୍‌କୁ ପଠାଇଦେବ । ଆମେ ସମସ୍ତେ ଜାଣୁ ଯେ ଜର୍ମାନ୍–ଈଶ୍ୱରଙ୍କ ଦୟା ଓ ଅନୁକମ୍ପା ଅନିଶ୍ଚିତ ଦୋଳାୟମାନ ଘୋଡ଼ା ଉପରେ ଆରୋହଣ କରିଥିଲେ ।

କ୍ୟାରୋଲ୍ ହଠାତ୍ ବୁଢ଼ୀ ହେବା ଭଳି ଦେଖାଗଲା । ସେ କାମରେ ଥିବାବେଳେ ପୁଅ ଉପର ଥାକ ଖଟରେ ଲୁଚି ରହୁଥିଲା । ସେପରି ସ୍ଥଳେ ଡାକ୍ତର ମେଙ୍ଗେଲ୍ ବା ଯେ କୌଣସି ନାତ୍‌ସୀ ଆତଙ୍କବାଦୀ (SS man) ବ୍ଲକ୍‌କୁ ଆସିଲେ କ୍ୟାରୋଲ୍ କେତେ ଉଦ୍‌ବେଗ ଭିତରେ ସମୟ ଅତିବାହିତ କରୁଥିଲା ତାହା ବର୍ଣ୍ଣନାତୀତ । ସେ ଭାବେ "ଛୁଆଟା କାଳେ କେତେବେଳେ ଆତଙ୍କିତ ହୋଇ ଏଭଳି କିଛି ଗୋଟାଏ କରିବସିବ, ଯାହା ଫଳରେ ସେ ସମସ୍ତଙ୍କ ଆଖିରେ ପଡ଼ିଯିବ ।" ଅବଶ୍ୟ ଡାକ୍ତର କ୍ଲ୍ୟୁନିଗ୍ କେବେ ହେଲେ କ୍ୟାରୋଲ୍‌କୁ ତା' ପୁଅ କଥା ପଚାରୁ ନଥିଲା । ସେ କିଛି ନ ଜାଣିବା ଭଳି ବ୍ୟବହାର କରୁଥିଲା । ତେଣୁ ତା' ଆଡୁ କୌଣସି ବିପଦର ଆଶଙ୍କା ନଥିଲା ।

ଏଭଳି ଭାବରେ କେତେ ମାସ ବିତିଗଲା । ସନ୍ଧ୍ୟା ହାଜିରା ପରେ ସମସ୍ତେ ବ୍ଲକ୍‌ରୁ ଚାଲିଗଲେ ଛୁଆଟା ଲୁଚିବା ସ୍ଥାନରୁ ବାହାରୁଥିଲା । କ୍ୟାରୋଲ୍ ତାକୁ ନେଇ ବ୍ଲକ୍ ସାମନାକୁ ଯାଉଥିଲା । ସେତିକିବେଳେ ବାଇଜେକ୍ ଟିକେ ଦୌଡ଼ା ଦୌଡ଼ି କରି ଖେଳୁଥିଲା ।

ଦିନେ ସନ୍ଧ୍ୟାରେ ମା' ପୁଅଙ୍କର ନୈଶ ବ୍ୟାୟାମ୍ ବେଳେ ମୁଁ ଯାଇ ସେଠାରେ

ପହଞ୍ଚିଗଲି । ଗ୍ରୀଷ୍ମ ଋତୁ ପ୍ରାୟ ଶେଷ ହୋଇଯାଇଥିଲା ଏବଂ ଶବପୋଡ଼ା ଚୁଲାରୁ ଅନବରତ ଧୂଆଁ ବାହାରୁଥିଲା । ବାଇଜେକ୍ ଖେଳୁଥିବା ବେଳେ କ୍ୟାରୋଲ୍ ଇଗଲ ପରି ବାହାର ଉପରେ ଦୃଷ୍ଟି ରଖୁଥିଲା । ରଜ୍ଜୁରେ ବନ୍ଧା ହୋଇଥିବା ଭଳି ପୁଅଟି ତା' ଚାରିପଟେ ଖେଳୁଥିଲା ।

କ୍ୟାରୋଲ୍ ମୋତେ କହିଲା, ''ତୁମେ ଜାଣ ପିଲାଟି ଭୀଷଣ ଡରିଯାଇଛି । ଜର୍ମାନ୍ ଲୋକ ତାକୁ ଦେଖିଲେ, ତାହାର କ'ଣ କ୍ଷତି ହେବ ତାକୁ ମୁଁ ବୁଝାଇ ଦେଇଛି । ଅସଲ କଥା ହେଲା, ସେ ଯେପରି ଦିନବେଳେ ପଦାକୁ ନ ବାହାରେ ।'' ସେ ଗୋଟେ ବହି ସାଙ୍ଗରେ ଆଣିଥିଲା । ମୁଁ ତାକୁ ବହିଟି ପଢ଼ାଇ ଦେଇଥିଲି । ସେ ଦିନସାରା ତାକୁ ପଢୁଥିଲା । କବିତା ଗୁଡ଼ିକ ତା'ର କଣ୍ଠସ୍ଥ ହୋଇଯାଇଥିଲା । ମୁଁ ଯଦି ପୋଲାଣ୍ଡ ଭାଷାର ବହି ଖଣ୍ଡେ ଦେଇପାରିଥାନ୍ତି ସେ କେତେ ଖୁସି ହୋଇଥାନ୍ତା ।

ବାଇଜେକ୍ ମୋତେ ଦେଖି ମୋ' ପାଖକୁ ଦୌଡ଼ି ଆସିଲା । ତା' ବୟସର ଅନ୍ୟ ଯେ କୌଣସି ପିଲା ଭଳି ସେ ଭାରି କ୍ଲାନ୍ତ ଦିଶୁଥିଲା । ଦୁଃଖ ଓ ଆତଙ୍କରେ ତା' ମନ ଭରି ଯାଇଥିବା ସତ୍ତ୍ୱେ ତାର ଆଖିରେ ଥିଲା ସତର୍କ ଦୃଷ୍ଟି । ମୋତେ ପଚାରିଲା, ''ତୁମେ କୌଣସି ଜର୍ମାନ୍‌କୁ ଏଠାକୁ ଆସିବା ଦେଖିନାହଁ ତ !''

ଜର୍ମାନ୍‌ମାନେ ରବିବାର ଦିନ ବ୍ଲକ୍‌କୁ ଆସନ୍ତି ନାହିଁ । ଅନ୍ୟଦିନ ଅପେକ୍ଷା ସେଦିନ ଆମେ ଅଧିକ ସ୍ୱାଧୀନତା ଉପଭୋଗ କରୁଥିଲୁ ଏବଂ ଅକ୍ଷମଶାଳାରେ ଏକାଠି ହେଉଥିଲୁ । କ୍ୟାରୋଲ୍ ମଧ୍ୟ ତାର ପିଲାଦୁଇଟିକୁ ଧରି ସେଠାକୁ ଆସୁଥିଲା । ତା' ଝିଅ କ୍ରାଇସିଆର ବାହୁରେ (Laufer) ପତ୍ରବାହକ ଲେଖା କପଡ଼ାଟି ବନ୍ଧା ହୋଇଥିବାରୁ ସେ ନିଜକୁ ନିରାପଦ ମନେ କରୁଥିଲା । ପୁଅ ବାଇଜେକ୍ କବିତା ଆବୃତ୍ତି କରୁଥିଲା । ଅକ୍ଷମଶାଳା ମଝିରେ ସେ ଛିଡ଼ା ହୋଇଗଲେ ବଡ଼ ସୁଶ୍ରୀ ଦିଶୁଥିଲା । ସେ ଗପିଯାଏ କେମିତି ଟ୍ରେନ୍ ଆସିଲା ଓ ତା' ମୁହଁରୁ ଖାଲି ଧୂଆଁ ଓ ତେଲ ବାହାରୁଥିଲା । ମୁଁ ତା' ଆଡ଼କୁ ଅନାଇ ଭାବୁଥିଲି ସେଭଳି ନିରୀହ ଅଜ୍ଞାନ ବାଳୁତକୁ ହତ୍ୟା କରିବାକୁ କିଏ କେଉଁଠାରେ ଷଡ଼ଯନ୍ତ୍ର କରୁଥିଲା ତାହା କଳ୍ପନା କରିପାରୁ ନଥିଲି । ଅକ୍ଷମଶାଳାରେ ସର୍ବତ୍ର ନୀରବତା ରାଜତ୍ୱ କରୁଥିଲା । କେବଳ ବାଇଜେକ୍‌ର ଗୁଲୁ ଗୁଲିଆ କଥା ଗୁଡ଼ିକ ଆମକୁ ମଧୁର ସଙ୍ଗୀତ ଭଳି ଶୁଭୁଥିଲା ।

ଏହି ସମୟରେ ଅନ୍ୟବ୍ଲକ୍‌ର ଜଣେ ସର୍ଦ୍ଦାର ଦୌଡ଼ି ଆସି ଜଣାଇଦେଲା, ''ଡାକ୍ତର ମେଙ୍ଗେଲ୍....''

ମୁଁ ବାଇଜେକ୍‌କୁ ଚାହିଁ ଦେଲି । ହଠାତ୍ ତାର ମୁହଁ କଳାକାଠ ପଡ଼ିଗଲା । ଆମେ ତାକୁ ନେଇ ଯାଇ ତା' ଉପରେ ଗୋଟାଏ ଗଦି ପକାଇ ଦେଇ ଚାଦର ଢାଙ୍କି ଦେଲୁ ।

ସେ ସାମାନ୍ୟ ଆପତ୍ତି କଲା ନାହିଁ ଯେ ତାକୁ କଷ୍ଟ ହେଉଛି ବା ଅଣନିଃଶ୍ୱାସୀ ଲାଗୁଛି ବୋଲି । କ୍ୟାରୋଲ୍ ତା' ବ୍ଲକ୍‌କୁ ପଳାଇଗଲା ।

ଅଧଘଣ୍ଟା ପରେ ଆମେ ସେହି ଅଣନିଃଶ୍ୱାସୀ ପିଲାକୁ ବିଛଣା ତଳୁ ବାହାର କଲୁ ।

ବାଇଜେକ୍ ଆମକୁ ପଚାରିଲା, ''ସେ ପଳାଇ ଗଲାଣି ତ ? ମୁଁ ଏମିତି ସନ୍ଧ୍ୟା ପର୍ଯ୍ୟନ୍ତ ଏଠାରେ ରହି ପାରିଥାନ୍ତି ।''

ଯାହା ହେଉ ବାଇଜେକ୍ ଆଉସ୍‌ଭିଚ୍‌ଜ୍‌ର ପତନ ପର୍ଯ୍ୟନ୍ତ ସେଠାରେ ରହିପାରିଥିଲା, ସମସ୍ତ ଅନ୍ତେବାସୀ ତା' କଥା ଜାଣିଥିଲେ ମଧ୍ୟ କେହି ବିଶ୍ୱାସ ଘାତକତା କରିନଥିଲେ ।

■■■

– ୨୩ –

## ବାମନମେଧ ଯଜ୍ଞ

ସେଦିନ ଡେରି ରାତିରେ ହଙ୍ଗେରୀରୁ ଟ୍ରେନ୍ ଆସି ପହଞ୍ଚିଗଲା । ବିଳମ୍ବିତ ରାତିରେ ଗେଟ୍‌ରେ କେହି ନଥିବାରୁ ଗେଟ୍ ଭାଙ୍ଗି ଭିତରକୁ ଯିବା ପାଇଁ ଓ ଅକ୍ଷମଶାଳାର ପଛପଟେ ଥିବା କୋଠରୀରେ ବାମନମାନଙ୍କୁ ରଖିବା ପାଇଁ ଡକ୍ଟର ମେଙ୍ଗେଲ୍ ଅର୍ଡର ଦେଲା । ପୁରୁଷମାନଙ୍କୁ ଅନ୍ୟ ବ୍ଲକ୍‌କୁ ପଠାଇ ଦେଇ କେବଳ ମହିଳା ଓ ଶିଶୁମାନଙ୍କୁ ସେଠାରେ ରଖାଗଲା ।

ପରଦିନ ସକାଳେ ସବୁଦିନ ଭଳି ହାଜିରା ପୂର୍ବରୁ ଆମେମାନେ ସେଠାରେ ପହଞ୍ଚିଗଲୁ । ଆମେମାନେ ସେଠି ତିନିଜଣ ବାମନ ମହିଳା ଏବଂ ବାମନ ପୁରୁଷଙ୍କୁ ବିବାହ କରିଥିବା ସ୍ୱାଭାବିକ ଉଚ୍ଚତା ବିଶିଷ୍ଟ ଦୁଇଜଣ ମହିଳା ଏବଂ ବାମନ ମା'ଠାରୁ ଜନ୍ମ ହୋଇଥିବା ଗୋଟିଏ ତିନିବର୍ଷ ବୟସର ବାଳକ, ମୋଟରେ ଗୋଟିଏ ଦଶଜଣିଆ ପରିବାର ଦେଖିଲୁ । ସେମାନେ ସମସ୍ତେ ବୁଦାପେଷ୍ଟର ଏକ ସର୍କସ ଦଳର ।

ପରିବାରର ପିତା ଜଣେ ବାମନ କିନ୍ତୁ ମାତା ଜଣେ ସାଧାରଣ ଉଚ୍ଚତାର ସ୍ୱାଭାବିକ ମହିଳା । କିନ୍ତୁ ସନ୍ତାନଗୁଡ଼ିକ ସମସ୍ତେ ବାମନ- ତିନି ପୁଅ ଓ ତିନି ଝିଅ । ଝିଅଗୁଡ଼ିକଙ୍କ ମଥାରେ କିନ୍ତୁ ସୁନ୍ଦର କୁଞ୍ଚୁ କୁଞ୍ଚିଆ କଳା କେଶ ଗୁଚ୍ଛ । ସେମାନେ ଚମତ୍କାର ଜର୍ମାନ୍ ଭାଷା କହୁଥିଲେ ବେଶ୍ ସ୍ପଷ୍ଟ ସ୍ୱରରେ । ପଚାଶ ସେଣ୍ଟିମିଟର ଉଚ୍ଚତା ବିଶିଷ୍ଟ ହୋଇଥିଲେ ମଧ୍ୟ ସେମାନଙ୍କର କୌଣସି ସମସ୍ୟା ହେଉ ନଥିଲା । ବାମନ କୃତି ଶରୀରର କୁନି କୁନି ହାତଗୋଡ଼ ବେଶ୍ ଆକର୍ଷଣୀୟ ବସ୍ତୁ । କିନ୍ତୁ ସେହି ଆକର୍ଷଣ କେବଳ ପେଶା ପାଇଁ

ନଥିଲା । ସେମାନେ ଆମକୁ ବୁଝାଇ ଦିଅନ୍ତି, ''ଆମର ବିବାହ ପ୍ରସ୍ତାବ ମଧ୍ୟ ଆସିଛି ।'' ସେମାନେ ଏକଥା ମଧ୍ୟ କହୁଥିଲେ ଯେ କେତେକ ପୁରୁଷ ଆମକୁ କଣ୍ଢେଇ ଭଳି ଖେଳନ୍ତି । ଗୋଟିଏ ବାମନ ପୁଅ ସାଧାରଣ ଉଚ୍ଚତାର ସୁନ୍ଦର ଝିଅଟିକୁ ମଧ୍ୟ ବିବାହ କରିଥିଲା ଏବଂ ସେ ମଧ୍ୟ ଏକ ସୁଶ୍ରୀ ପୁଅ ଜନ୍ମ କରିଥିଲା ।

ମେଙ୍ଗେଲ୍ ପଚାରିଲା, ''ଏ କଣ ସତରେ ସେହି ବାମନର ପୁଅ ?''

ନାତ୍ସୀ ଆତଙ୍କବାଦୀମାନେ ମଧ୍ୟ ସେହି ପରିହାସରେ ଯୋଗଦେବାକୁ ଅନିଚ୍ଛୁକ ନଥିଲେ ।

ଯେଉଁ ଲକ୍ଷ ଲକ୍ଷ ଇହୁଦୀଙ୍କୁ ଆଉସ୍‌ଭିଚ୍‌ଜକୁ ଅଣା ଯାଉଥିଲା ସେମାନଙ୍କ ମଧ୍ୟରୁ ଯେଉଁମାନେ ମେଙ୍ଗେଲ୍ ଭାଷାରେ 'ଈଶ୍ୱର ରୂପ' ନେଇ ନଥାନ୍ତି; ସେହିମାନଙ୍କୁ ସେ ବେଶୀ ଭଲ ପାଉଥିଲା ।

ଥରେ ଦୁଇଟି ନାକ ଥିବା ଏକ ମହିଳାକୁ ସିଏ ଆମ ବ୍ଲକ୍‌କୁ ଆଣିଥିଲା । ଆଉ ଥରେ ଗୋଟେ ଦଶବର୍ଷର ଝିଅକୁ ଆଣିଥିଲା । ଯାହାର ମଥାରେ ଲମ୍ବା ଚୁଳ ପରିବର୍ତ୍ତେ ମେଣ୍ଢା ଲୋମ ଭଳି ଲୋମ ଥିଲା । ସେଭଳି ଆଉ ଥରେ ଗଧ କାନ ଥିବା ଗୋଟେ ମହିଳାକୁ ଆମକୁ ଦେଖାଇଥିଲା । ଏବେ ମେଙ୍ଗେଲ୍ ହାତରେ ପଡ଼ିଛନ୍ତି ନିରୀହ ବାମନ ଗୁଡ଼ିକ । ପ୍ରତିଦିନ ସେ 'ମଡେଲ୍'ଗୁଡ଼ିକୁ ଅକ୍ଷମଶାଳାକୁ ଅଣାଉଥିଲା । ସେମାନଙ୍କର ଫଟୋ ଉଠାଉଥିଲା ଓ ସେମାନଙ୍କୁ 'ପରୀକ୍ଷା' କରୁଥିଲା । ସେ ଆମ ଆଗରେ ଛଳନା କରି କହୁଥିଲା, କେବଳ ବୌଦ୍ଧିକ ଆଗ୍ରହରେ ବା ଜ୍ଞାନାର୍ଜନ କରିବା ପାଇଁ ସେ ଏଭଳି 'ପରୀକ୍ଷା' କରୁଛି । କିନ୍ତୁ ଆମେମାନେ ଜାଣିଥିଲୁ ଯେ ତାହାର ଅନ୍ତର୍ନିହିତ ପୈଶାଚିକ ଓ ବିକୃତ ଯୌନାଭିଳାଷର ତାହା ଏକ ଅବଶ୍ୟମ୍ଭାବୀ ପ୍ରତିକ୍ରିୟା । ଅନ୍ୟର ଦୁର୍ଭାଗ୍ୟର ସୁଯୋଗ ନେଇ ସେ ସେମାନଙ୍କୁ ଏଭଳି ପ୍ରଶ୍ନ ସବୁ ପଚାରୁଥିଲା, ଯାହା ପ୍ରତ୍ୟେକ ସଭ୍ୟ ମଣିଷ ଗୋପନ ରଖିବାକୁ ଚାହେ । ସେ ସେହି ଶିକାରମାନଙ୍କ ସହ ଖେଳୁ ଥିଲା ଏବଂ ଶେଷରେ ସେମାନଙ୍କୁ ମାରି ଦେଉଥିଲା ।

ସେ ତିନିଭଉଣୀ ସେମାନଙ୍କ ସାଙ୍ଗରେ ତିନିଗୋଟି କୁନି କୁନି ଚେୟାର ଓ ଗୋଟିଏ କୁନି ଟେବୁଲ୍ ମଧ୍ୟ ଆଣିଥିଲେ । ସେଗୁଡ଼ିକ ସେମାନଙ୍କ ରୁମ୍‌ରେ ସଜାଇ ଦେଇଥିଲେ । ମା' ମଧ୍ୟ ରୁମ୍‌ଟି ସଜେଇ ଦେଉଥିଲା । ତିନିଭଉଣୀଙ୍କ ପାଖରେ ପାଉଡର, ଲିପ୍‌ଷ୍ଟିକ୍ ମଧ୍ୟ ଥାଏ । ସେମାନେ ସେମାନଙ୍କ ଦେହକୁ ରଙ୍ଗେଇ ଡାକ୍ତର ମେଙ୍ଗେଲ୍‌କୁ ଅପେକ୍ଷା କରୁଥିଲେ ।

ସେମାନେ ବାରମ୍ବାର କହୁଥିଲେ, ''କେତେ ଦୟାଳୁ, କେତେ ସୁନ୍ଦର ସେ । ଆମର କେତେ ଭାଗ୍ୟ ଯେ ସେ ଆମର ରକ୍ଷକ ହୋଇ ଅଛନ୍ତି ଓ ସର୍ବଦା ଆମର ଭଲମନ୍ଦ ବୁଝୁଛନ୍ତି ।''

ମେଙ୍ଗେଲ୍‌ର ପ୍ରଶଂସାରେ ସେମାନେ ତରଳି ଯାଉଥିଲେ । ସର୍ବସାଧାରଣଙ୍କ ସମ୍ମୁଖରେ ନିଜକୁ ପ୍ରଦର୍ଶିତ କରିବାରେ ସେମାନେ ଅଭ୍ୟସ୍ତ ଥିଲେ । ସେମାନେ ଭାବୁଥିଲେ ''ଏହା ମଧ୍ୟ ଏକ ଖେଳ ।''

ଛୁଆକୁ ଧରିଥିବା କେବଳ ସେହି ବୟସ୍କା ମହିଳାଟି ସେମାନଙ୍କ ପାଇଁ ଥିଲା ଉତ୍କଣ୍ଠିତା । ପୁଅଟି ବେଶ୍ ଗୋରା ଏବଂ ସୁନ୍ଦର; କିନ୍ତୁ ସର୍ବଦା ମ୍ଳାନ ମୁଖ ।

ବ୍ୟସ୍ତ ବିବ୍ରତ ମା' ବେଳେ ବେଳେ ଆମକୁ ପଚାରୁଥିଲା, ''ସେ ମୋ ଛୁଆକୁ କ'ଣ କରିବ ? ତୁମେ କ'ଣ ଭାବୁଛ ? ଏଠାରେ ତ ଆଉ କେହି ପିଲା ନାହାନ୍ତି । ସେମାନେ କ'ଣ ମୋ ପିଲାକୁ ମାରିଦେବେ ?''

''ମୁଁ ବା ତାକୁ କି ଉତ୍ତର ଦେବି ? ସେମାନଙ୍କର ଜୀବନ ଯେ ବିପନ୍ନ, ସେକଥା ଆମେ ଭଲ ଭାବରେ ଜାଣୁ ।''

ସବୁଦିନ ଭଳି ସେଦିନ ମଧ୍ୟ ଉପରଓଳି ମେଙ୍ଗେଲ୍ ଅକ୍ଷମଶାଳାକୁ ଆସିଥିଲା । ଆମେମାନେ ପୂରା ଆଟେନ୍‌ସନ୍ ମୁଦ୍ରାରେ ଛିଡ଼ା ହୋଇଗଲୁ । ବିଚରା ବାମନଗୁଡ଼ିକ ମଧ୍ୟ । ସେମାନଙ୍କ ନିକଟରେ ଆମେ ଗୋଟେ ଗୋଟେ ଦାନବ ଭଳି ଦିଶୁଥିଲୁ । ମେଙ୍ଗେଲ୍ ସେମାନଙ୍କୁ ଖୁବ୍ ନିକଟରୁ ନିରୀକ୍ଷଣ କଲା । ଗୋଟିଏ ବାମନ ଲାଇନ୍‌ରୁ ବାହାରି ପଡ଼ି ମେଙ୍ଗେଲ୍‌ର ପାଦତଳେ ପଡ଼ିଗଲା । ତା'ର ଉଚ୍ଚତା ମେଙ୍ଗେଲ୍‌ର ବୁଟର ଉଚ୍ଚ ଅପେକ୍ଷା ଅଧିକ ଦିଶୁ ନଥିଲା । ବାମନଟି ତାହାର ଜୋତାକୁ ଆଲିଙ୍ଗନ କରି ତାକୁ ଚୁମା ଦେବାକୁ ଲାଗିଲା । ''ତୁମେ କେତେ ମହାନ୍, କେତେ ଦୟାଳୁ । ଈଶ୍ୱର ତୁମକୁ ପୁରସ୍କୃତ କରିବେ ।'' ଅଭିଭୂତା ବାମନଟି କହୁଥିଲା । ମେଙ୍ଗେଲ୍ କିଛି ସମୟ ଚୁପ୍ ରହିଲା । ତା' ପରେ ତା ପାଦକୁ ଏଭଳି ଛିଞ୍ଚାଡ଼ି ଦେଲା ଯେ ଝିଅଟି ଚଟାଣ ଉପରେ ଚିତ୍‌ପଟାଙ୍ଗ ହୋଇ ତଳେ ପଡ଼ିଗଲା । ତାର ହଲ ନାହିଁ କି ଚଳ ନାହିଁ । ପୁରୁଷ ବ୍ଲକ୍‌ରେ ଥିବା ବାମନ ସ୍ତ୍ରୀକୁ ମେଙ୍ଗେଲ୍ ପ୍ରଶ୍ନ କଲା, ''ବର୍ତ୍ତମାନ ମୋତେ କହ, ତୁ ସେ ବାମନ ସାଙ୍ଗରେ କେମିତି ଚଳୁଛୁ ?'' ମହିଳାର ମୁହଁଟି ଲାଲ ପଡ଼ିଗଲା । ଜଣାଗଲା ଯେପରିକି ତାହାର ଶରୀରର ସମସ୍ତ ରକ୍ତ ମୁହଁକୁ ଚାଲି ଆସିଥିଲା ।

ପୁଣି ମେଙ୍ଗେଲ୍ ଚିତ୍କାର କଲା, ''ସେ କଥା ପରେ କହିବୁ ବର୍ତ୍ତମାନ କହ, ସେ ପିଲାଟା ତୋ' ବାମନ ସ୍ୱାମୀର ନା ଅନ୍ୟ କୌଣସି ପୁରୁଷର ?''

ଆମେମାନେ ପୂରା ପଥର ପାଲଟିଗଲୁ । ମହିଳାଟି ତାହାର ବାମନ ସ୍ୱାମୀ କଥା କହି ଚାଲିଲା, ''ସେ କେତେ ଭଲ । ସର୍କସ୍‌ରୁ ସେ ବହୁତ ପଇସା ରୋଜଗାର କରେ ।''

''ସେ ବାଜେ କଥା ଗୁଡ଼ା ଗପନା । ତୁ ତା ସହ କିପରି ଶୟନ କରୁ । ସେହି କଥା କହ ।'' ମେଙ୍ଗେଲ୍ ତା' ଓଠକୁ ଚାଟୁଥିଲା ।

ମହିଳାର ଦେହରୁ ଗମ୍ ଗମ୍ ହୋଇ ଝାଳ ବୋହି ଗଲା । ଟୋପା ଟୋପା ଝାଳ ତା'ର ପୋଷାକ ଉପରେ ପଡୁଥିଲା । ସେ ତାକୁ ପ୍ରଶ୍ନ କରୁଥିଲା । ମହିଳାଟି ତାହାର ଜବାବ ଦେଉଥିଲା । ମୁଁ ସେ କଥାଗୁଡ଼ାକ ପୁନରାବୃତ୍ତି କରିପାରିବି ନାହିଁ ।

କି ଭୟାବହ । କି ଅମାନୁଷିକ ନିର୍ଯାତନା ସେ । ମେଙ୍ଗେଲ୍‌ର ପୁଣି ଚିତ୍କାର; ''ସେ କଥା ମୋତେ କହ ।'' ସେ ଉତ୍ତର ଦେବାକୁ ଚେଷ୍ଟା କଲା । ତା' ପାଟି ଖୋଲିଲା । କିନ୍ତୁ କିଛି କହିପାରିଲା ନାହିଁ । ଛୁଆଟିକୁ ଛାତିରେ ଜାକି ଧରିଲା ।

''ଏ କଣ ତାହାରି ଛୁଆ ?'' ପୁନର୍ବାର ଚିତ୍କାର । ମା'ଟି ମୁଣ୍ଡ ହଲାଇଲା । କିନ୍ତୁ ପାଟି ଖୋଲିଲା ନାହିଁ । ତା ପରେ ମେଙ୍ଗେଲ୍ ଉଠି ପଳାଇଲା । ତ୍ରସ୍ତ ଓ ଦୁଃଖୀ ବାମନ ଗୁଡ଼ିକ ମଧ୍ୟ ସେମାନଙ୍କ ପ୍ରକୋଷ୍ଠକୁ ପଳାୟନ କଲେ । 'ସ୍ୱର୍ଗଦୂତ' ମେଙ୍ଗେଲ୍‌ର ସ୍ୱରୂପ ଦେଖିଲେ । ସେମାନଙ୍କ ଭାଗ୍ୟରେ କ'ଣ ଅଛି ? ଏଠାରେ କେମିତି ବଞ୍ଚିବେ ସେମାନେ ? ମେଙ୍ଗେଲ୍ କିଛିଦିନ ପାଇଁ ସେଠାକୁ ଆସି ନଥିଲା । କିନ୍ତୁ ଆମେ ଜାଣିଥିଲୁ ଯେ ସେ ସେମାନଙ୍କୁ କଦାପି ଭୁଲିବ ନାହିଁ । ତା'ର ନ ଆସିବା ପଛରେ କିଛି ମତଲବ ଥିବ ।

ଦିନେ ସେହି ଏରିଆକୁ ଅର୍କେଷ୍ଟ୍ରା ଆସିଥିଲା । ଆମେ ସେଠାକୁ ସଙ୍ଗୀତ ଶୁଣିବାକୁ ଗଲୁ । ବାମନଗୁଡ଼ିକ ମଧ୍ୟ ଯାଇଥିଲେ । ସୁନ୍ଦର ଓ ଆକର୍ଷଣୀୟ ପୋଷାକ ପିନ୍ଧି ସେମାନଙ୍କର କୁନି କୁନି ଚୌକିରେ ବସିଥିଲେ । ମହିଳା ଜଣକ ତା ଛୁଆକୁ ଧରି ମୋ ପାଖରେ ବସିଲେ । ପରିବେଶ ଏତେ ଶାନ୍ତ, ନିରୀହ ଓ ଆଦର୍ଶ ସ୍ଥାନୀୟ ହୋଇଥିଲା ଯେ ମୁଁ ଭୟରେ ଥରିବାକୁ ଲାଗିଲି । ତାହାର କାରଣ କ'ଣ ମୁଁ ବୁଝି ପାରେନା । କିନ୍ତୁ ସେଭଳି ପରିସ୍ଥିତିରେ ହଠାତ୍ ଅତାନକ ଗୋଟିଏ ବଜ୍ରପାତ ହେବ ବୋଲି ସର୍ବଦା ଆଶଙ୍କା କରୁଥିଲି । ଆମେ ସବୁବେଳେ ମୃତ୍ୟୁ ସହ ହାତ ଧରାଧରି ହୋଇ ଚାଲୁଥିଲୁ । ମୃତ୍ୟୁ ପଦଶବ୍ଦ ମୋତେ ସବୁବେଳେ ଶୁଭୁଥିଲା । ଠିକ୍ ସେତିକିବେଳେ ନର୍ସ ମାଉସିଆ ସେହି ବାମନ ଛୁଆଟିକୁ ନେବା ପାଇଁ ଦୌଡ଼ି ଦୌଡ଼ି ସେଠାରେ ପହଞ୍ଚି କହିଲା, ''ମେଙ୍ଗେଲ୍ ତାକୁ ପରୀକ୍ଷା କରିବ ।'' ଛୁଆର ମା' ଚିତ୍କାର କରି କହିଲା ''କି ପରୀକ୍ଷା ! ସେ ତ ଅସୁସ୍ଥ ନାହିଁ ।'' ତଥାପି ଛୁଆକୁ ଧରି ମାଉସିଆ ସାଙ୍ଗରେ ସେ ଅକ୍ଷମଶାଳାକୁ ଦୌଡ଼ିଲା । ମେଙ୍ଗେଲ୍ ଛୁଆଟିକୁ ରଖି ମା'କୁ ଅକ୍ଷମଶାଳାରୁ ବାହାର କରିଦେଲା । ସେ ଛୁଆ ସଙ୍ଗରେ ଏକା ରହିଲା । ମାଉସିଆ ଆମ ପାଖକୁ ପଳାଇ ଆସିଲା । ଆମେ ଆଉ ଛୁଆଟିର ସଙ୍ଗୀତ ଭଳି ଗୁଳୁଗୁଳିଆ କଥା ଶୁଣିବାକୁ ପାଇଲୁ ନାହିଁ । ତା'ର ମା' ଶାବକ ହରା ଆହତ ପକ୍ଷୀ ଭଳି ଅକ୍ଷମଶାଳା ଚତୁଃପାର୍ଶ୍ୱରେ ଘୂରି ବୁଲୁଥିଲା ।

ସେ ମୋର ଦୁଇହାତକୁ ଧରି ବିକଳ ହୋଇ ପଚାରିଲା, ''ସତ କୁହନି, ସେ ମୋର ଛୁଆକୁ ନେଇ କ'ଣ କରୁଥିବ ?''

ଆମେ ଭଲ ଭାବରେ ଜାଣିଥିଲୁ, ''ଧଳା ଆପ୍ରୋନ୍ ପରିହିତ ସେହି ଜହ୍ଲାଦ୍ ଛୁଆଟିର ଶରୀର ଉପରେ 'ଗିନ୍‌ପିଗ୍' ଭଳି ତାହାର ବିକୃତ ମାନସିକତାର ହୁଏତ ପରୀକ୍ଷା କରୁଥିବ । ପୃଥିବୀରେ ଏଭଳି କୌଣସି ଶକ୍ତି ନଥିଲା ଯେ କି ସେହି ମୁହୂର୍ତ୍ତରେ ମେଙ୍ଗେଲ୍ ହାତରୁ ସେ ଛୁଆଟିକୁ ଛଡ଼ାଇ ଆଣି ପାରିଥା'ନ୍ତା ।'' କେବଳ ମୃତ୍ୟୁ ହିଁ ସେ ଛୁଆଟିକୁ ନିର୍ଯାତନାରୁ ରକ୍ଷା କରିଥାଇପାରେ ।

ସାମାନ୍ୟ ଆଖି ପିଛୁଡ଼ା ନ ମାରି ମେଙ୍ଗେଲ୍ ସେହି ତିନିବର୍ଷର ଶିଶୁର ଶରୀର ଉପରେ ଅଶେଷ ନିର୍ଯାତନା ଚଳାଇ ଯାଉଥିଲା । ତା ଉପରେ କିଭଳି ଅତ୍ୟାଚାର ହେଉଥିଲା ତାହା ବୁଝି ପାରିବାର ସାମାନ୍ୟ ଜ୍ଞାନ ମଧ୍ୟ ଶିଶୁଟିର ନଥିଲା ।

ଶେଷରେ ମେଙ୍ଗେଲ ସେଠାରୁ ଚାଲିଯିବା ପରେ ଆମେ ଅକ୍ଷମଶାଳାକୁ ଦୌଡ଼ିଲୁ । ପିଲାଟି ଅର୍ଦ୍ଧମୃତ ଅବସ୍ଥାରେ ଟେବୁଲ୍ ଉପରେ ପଡ଼ିଥିଲା । ଡାକ୍ତର ମାନସୀ ପିଲାଟିର ଅବସ୍ଥା ଦେଖିବାକୁ ଚେଷ୍ଟା କଲା । କିନ୍ତୁ ତାହାର ମା' ତାକୁ ପରୀକ୍ଷା କରିବାକୁ ଦେଲା ନାହିଁ । ଅର୍ଦ୍ଧମୃତ ଶିଶୁଟିକୁ କାଖରେ ଚିପିଧରି କ୍ରୋଧୋନ୍ମତ୍ତା ମା'ଟି ଅସହ୍ୟ ମାନସିକ ଯନ୍ତ୍ରଣା ଭୋଗୁଥିଲା ଓ ଟେବୁଲ୍ ଚାରିପଟେ ପାଗଳୀ ହୋଇ ବୁଲୁଥିଲା । ଛୁଆଟିର ମୁହଁ ପୂରା ଶେତା ପଡ଼ିଯାଇ ଥିଲା ଯେପରିକି ତା ଦେହରେ ଟୋପାଏ ବି ରକ୍ତ ନଥିଲା ।

କ୍ରନ୍ଦନରତା ମା' ବାରମ୍ବାର କହୁଥିଲା, ''ଏ ମରିଯିବ, ଏ ମରିଯିବ ।'' ତାର ସଞ୍ଜ୍ଞା ଆଦୌ ଫେରିଲା ନାହିଁ । ସେହି ରାତିରେ ଛୁଆଟି ଚାଲିଗଲା । କୁନି ଟେବୁଲ୍ ଉପରେ ତାହାର ନିର୍ଜୀବ ଶରୀରଟି ପଡ଼ିଥାଏ ।

ତାହାର ଚାରିପଟେ ଛିଡ଼ା ହୋଇଥିଲା ପଥର ଖୁଣ୍ଟ ଭଳି ନିଶ୍ଚଳା ମା' – ସେହି ପତଳା, ଡେଙ୍ଗା ମହିଳା ଏବଂ କୁନି ଚୌକିରେ ବାମନ ପିଲା ତିନିଗୋଟି । କେହି କାହୁ ନଥିଲେ । ଅପେକ୍ଷା କରିଥିବା ମୃତ୍ୟୁ ଭୟରେ ସମସ୍ତେ ତ୍ରସ୍ତ । ସେହି ଅବସ୍ଥାରେ ସେମାନେ ସନ୍ଧ୍ୟା ପର୍ଯ୍ୟନ୍ତ ସେମିତି ବସି ରହିଲେ । ସନ୍ଧ୍ୟାପରେ କ୍ୱିଟା ସେହି ଶିଶୁ ଶବଟାକୁ ନେଇ ଶବବ୍ରହ୍ମ ଗାଡ଼ିରେ ଆସି ଜମା ହୋଇଥିବା ଶବକୁଢ଼ ଉପରେ ଫୋପାଡ଼ି ଦେଇ ଆସିଲା ।

ଆମେମାନେ ସବୁବେଳେ ଆତଙ୍କିତ ଅବସ୍ଥାରେ ଏବଂ ମେଙ୍ଗେଲ୍ କେତେବେଳେ କାହାକୁ ପରବର୍ତ୍ତୀ ଶିକାର ଭାବରେ ବାଛିବାକୁ ପହଞ୍ଚିଯିବ, ସେହି ଅପେକ୍ଷାରେ ରହିଥିଲୁ । କିଛିଦିନ ସେଭଳି ଅତିବାହିତ ହେଲା । ଅକ୍ଷମଶାଳାକୁ ମେଙ୍ଗେଲ୍ ଆଉ ଆସିଲା ନାହିଁ । ରୋଗୀ ଦେଖିବା ଦାୟିତ୍ୱ ଡାକ୍ତର କ୍ୟାନିଗ୍ ଉପରେ ନ୍ୟସ୍ତ ଥିଲା । ଦୁଃଖ ଓ ନିସ୍ତବ୍ଧତା ସର୍ବତ୍ର ରାଜତ୍ୱ କରୁଥିଲା ।

---

ଗିନ୍‌ପିଗ୍- ମୂଷା ଭଳି କ୍ଷୁଦ୍ରକାନ ଓ ଲାଞ୍ଜ ବିଶିଷ୍ଟ ପ୍ରାଣୀ ଯାହାର ଶରୀରରେ ମଣିଷ ପାଇଁ ବିଭିନ୍ନ ଔଷଧ ଓ ରୋଗର ଜୀବାଣୁ ପରୀକ୍ଷା କରାଯାଏ ।

ଦିନେ ମଧ୍ୟାହ୍ନରେ ବୁବୀ ନାମ୍ନୀ 'କାପୋ' (ମୁଖ୍ୟକର୍ମୀ) ହଠାତ୍ ପହଞ୍ଚିଗଲା । ସେ ଥିଲା କଳା ତ୍ରିଭୂଜ ଚିହ୍ନିତ ଜର୍ମାନ୍ ବନ୍ଦିନୀ । ଆମେମାନେ ନାତ୍‌ସୀ ଆତଙ୍କବାଦୀଙ୍କୁ ଡରୁଥିଲୁ । ବୁବୀକୁ କମ୍ ଡରୁ ନଥିଲୁ । ଓର୍ଲି ସହ ପ୍ରେମାଳାପ କରିବାକୁ ସେ ସେଠାକୁ ବହୁତ ସମୟରେ ଆସୁଥିଲା । ସେ ଥିଲା ଜଣେ ସମଲିଙ୍ଗୀ ଯୌନାଭିଳାଷିନୀ ନାରୀ । ଆମେ ତାହା ସମସ୍ତେ ଜାଣିଥିଲୁ ଏବଂ ସେଥିପାଇଁ ତାକୁ ଭୟ କରୁଥିଲୁ । ତାହାର ସେହି ପ୍ରେମାଭିନୟ ବଡ଼ ଅସ୍ୱସ୍ତିକର ଓ ଅରୁଚିକର ବୋଧ ହେଉଥିଲା । ବ୍ଲକ୍‌ରେ ଘଟୁଥିବା ଦୁଃଖଦାୟକ ଘଟଣାଗୁଡ଼ିକ ଆମ ଆଗରେ ବଖାଣିବା ବେଳେ ତାକୁ ଭାରି ମଜା ଲାଗୁଥିଲା । ସେଦିନ ସେ ଖୁବ୍ ଖୁସି ମିଜାଜ୍‌ରେ ଥିଲା । ପୈଶାଚିକ ହସଟାଏ ହସିଦେଇ ପଚାରିଲା, ''ତୁମର ସେ ବାମନଗୁଡ଼ିକ କୁଆଡ଼େ ଗଲେ ?'' ସେହି ବିଦ୍ୟୁତ୍ ଚାର୍ଜଥିବା ତାରବାଡ଼ ଆଡ଼କୁ ଅନାଅ ଦେଖିବ ସେଠାରେ କିଏ ପଡ଼ିଛି । ଶୁଣ ପୁରୁଷ ବ୍ଲକ୍‌ରେ ଥିବା ଗୋଟେ ବୟସ୍କ ବାମନ ତାହାର ସ୍ତ୍ରୀକୁ ଦେଖିବାକୁ ଚାହୁଁଥିଲା ଏବଂ ସେଥିପାଇଁ ସର୍ବଦା ଅଘଟଣ ଘଟାଉଥିଲା । ଦିନେ ସେ ବ୍ଲକ୍‌ର ଓ୍ୱାର୍ଡେନ୍ ଓ ସର୍ଦ୍ଦାରଙ୍କୁ କହିଲା, ''ମୋତେ ଟିକେ ମୋର ପରିବାରକୁ ଦେଖିବାକୁ ଦିଅ ।'' ସେମାନେ ସେ କଥାକୁ ଥଟ୍ଟା ମଣିଲେ ଓ ତାକୁ କହିଲେ, ''ତୁ ନିଜେ ଚାଲିଯା, ତୁ ତ ଏତେ ଛୋଟ ଯେ ସେ ତାର ବାଡ଼ ଭିତରେ ଗଳି ଚାଲିଯିବୁ, ଯାଉନୁ । ଓ୍ୱାର୍ଡେନ୍ ଓ ସର୍ଦ୍ଦାର କଥାକୁ ସେ ପୂରା ବିଶ୍ୱାସ କରିଗଲା । ଆଜି ଅପରାହ୍ନରେ ସେ ତାରବାଡ଼ ଆଡ଼କୁ ଚାଲିବାକୁ ଆରମ୍ଭ କଲା । ଦେଖଣାହାରୀମାନଙ୍କୁ ଭାରି ମଜା ଲାଗୁଥିଲା । ସେ ଚାରିଆଡ଼କୁ ଅନେଇଲା, ନାତ୍‌ସୀ ଆତଙ୍କବାଦୀ ଜଗୁଆଳି କେଉଁଠି କ'ଣ କରୁଛି, ତାହା ସେ ଦେଖିପାରୁ ନଥିଲା । ତୁମେମାନେ ସେ ମଜାଦାର ଦୃଶ୍ୟ ଦେଖିପାରିଲ ନାହିଁ । ଏହାହିଁ ଦୁର୍ଭାଗ୍ୟ ।''

ଏତିକି କହୁ କହୁ ବୁବୀ ହସି ହସି ବେଦମ୍ ହୋଇଯାଉଥାଏ, ଯେପରିକି ସେ ଗୋଟାଏ ଭାରି ମଜାକଥା କହୁଥାଏ । ଆମେ ତା' ସହ ହସରେ ଯୋଗ ଦେବୁ ବୋଲି ସେ ଚାହୁଁଥିଲା ।

''କିନ୍ତୁ ତୁମେମାନେ ଜାଣ ଯେ ଜଗୁଆଳୀ ମୁହୂର୍ତ୍ତେ ଡେରି କରିବାବାଲା ନୁହେଁ । ବାମନଟି ତାର ବାଡ଼ ପାଖରେ ପହଞ୍ଚୁ ପହଞ୍ଚୁ ସେ ତାର ବନ୍ଧୁକରୁ ଦୁ କରିଦେଲା । ବାମନଟିର ସ୍ତ୍ରୀ ଦର୍ଶନ ସେଇଠାରେ ଇତି ହୋଇଗଲା ।''

ଆମେ ଅକ୍ଷମଶାଳାର ବାହାରକୁ ଯାଇ ଦୂରରୁ ଦେଖିଲୁ ଯେ ବାମନଟି ସେଠାରେ ମରିପଡ଼ିଛି । ତା'ର ମୃତ୍ୟୁ ପାଇଁ ତାକୁ ଗୁଳି ମାରିଥିବା ଜଗୁଆଳୀ ଅପେକ୍ଷା ସହବନ୍ଦୀମାନେ କମ୍ ଦାୟୀ ନୁହଁନ୍ତି । ଆଉସ୍‌ଭିଟ୍‌ଜ୍‌ରେ ତାହାହିଁ ଦୁର୍ଭାଗ୍ୟ ।



## - ୨୪ -

# 'ନାଟାସା'ର ବିଜୟ

ପ୍ରତିଦିନ ଶହ ଶହ ଅସ୍ଥିକଙ୍କାଳ ସର୍ବସ୍ୱ ଓ ମୃତ୍ୟୁ ପଥଯାତ୍ରୀ ମହିଳା ବନ୍ଦିନୀମାନେ ଅକ୍ଷମଶାଳାକୁ ଆସୁଥିଲେ । କର୍ମଚାରୀମାନଙ୍କ ପାଇଁ ସେଠାରେ ଏକ କ୍ଷୁଦ୍ର କୋଠରୀ ମଧ୍ୟ ଥିଲା । କୋଠରୀର ଅର୍ଥ ହେଉଛି - ଦୁଇ ମିଟର ପ୍ରସ୍ଥ ଓ ଛ ମିଟର ଦୈର୍ଘ୍ୟର ଗୋଟିଏ ନିବୁଜ ବାକ୍ସ ଭଳି ଘର । ସେହି ଘରେ ଦୁଇଗୋଟି ତିନିଥାକ ବିଶିଷ୍ଟ ଶଯ୍ୟା ଓ ଗୋଟିଏ କ୍ଷୁଦ୍ର ଟେବୁଲ୍ ଥିଲା । ଆମକୁ ସେହି ଘରଟି ପୃଥିବୀର ଏକ ବିସ୍ମୟଜନକ ବାସସ୍ଥାନ ଭଳି ମନେ ହେଉଥିଲା । ତାହା ଭୟଙ୍କର ବ୍ୟାରାକ୍‌ଠାରୁ ପୃଥକ୍ ଥିଲା । ୧୯୪୪ ମସିହାର ଗୋଟିଏ ସନ୍ଧ୍ୟାରେ ଓର୍ଲି ଆମ୍ଭମାନଙ୍କୁ କହିଲା ଯେ ସେହି କୋଠରୀ ଆମକୁ ପରିତ୍ୟାଗ କରିବାକୁ ପଡ଼ିବ । ''କାରଣ ମେଙ୍ଗେଲ୍ ସେହି କୋଠରୀରେ ଉନ୍ମାଦ ରୋଗୀମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ୱାର୍ଡ୍ କରିବାକୁ ଚାହେ ।'' ସେହି ନୋଟିସ୍‌ଟି ଆମକୁ ଏକ ବଜ୍ରପାତ ଭଳି ଲାଗିଲା । ରାତିରେ ଆମେ ଆମର ଯତ୍ ସାମାନ୍ୟ ଜିନିଷ ସେଠାରୁ ସ୍ଥାନାନ୍ତରିତ କରିଦେଲୁ ।

ଉନ୍ମାଦ ରୋଗୀମାନଙ୍କୁ ଆମେ ତା ପରଦିନ ସକାଳେ ଅପେକ୍ଷା କରି ରହିଲୁ । ସେ ସମସ୍ତ ଘଟଣା ମୋତେ ବଡ଼ ସନ୍ଦେହ ଜନକ ମନେ ହେଲା । ମେଙ୍ଗେଲ୍ କେବଳ ଉନ୍ମାଦ ରୋଗୀଙ୍କ ପାଇଁ ଏକ ସ୍ୱତନ୍ତ୍ର ୱାର୍ଡ୍ କାହିଁକି ସୃଷ୍ଟି କରୁଛି ତାହା ମଧ୍ୟ ବଡ଼ ଦୁର୍ବୋଧ ଥିଲା । ସେ ପର୍ଯ୍ୟନ୍ତ ସେଠାରେ କୌଣସି ଉନ୍ମାଦ ୱାର୍ଡ୍ ନଥିଲା । ତାହା ମେଙ୍ଗେଲର ଏକ ନୂଆ କୌଶଳ ବୋଲି ଆମେ ଅନୁମାନ କରୁଥିଲୁ ।

ସକାଳୁ ପ୍ରଥମ ରୋଗୀଟି ପହଞ୍ଚିଲା । ୱାର୍ଡେନ୍ ତାକୁ ଆଣିଥିଲା । ତା'ର ନାମ ନାଟାସା । ''ସେ ଏଇଠି ଅକ୍ଷମଶାଳାରେ ରହିବ ।'' ଏତିକି କହିଦେଇ ୱାର୍ଡେନ୍ ଚାଲିଗଲା ।

ମୋ ସାମନାରେ ଛିଡ଼ା ହୋଇଗଲା ଜଣେ ତରୁଣୀ ଗଛଭଳି ସିଧା, ମୁହଁ ଶୁଖିଲା । କିନ୍ତୁ ଆଖି ଦୁଇଟିରେ ବିଦ୍ରୋହର ବହ୍ନି । ବୟସ ଉଣେଇଶ । ଘର ଲେଲିନ୍ ଗ୍ରାଡ୍ । ପଦେକଥା କହିଲା ନାହିଁ । ତାକୁ ପରୀକ୍ଷା କରିବାକୁ ଇହୁଦୀ ଡାକ୍ତର ଆସିଲେ ନାହିଁ । କାରଣ ତାଙ୍କ ରିପୋର୍ଟର କୌଣସି ମୂଲ୍ୟ ନଥିଲା । ସେ ଉପର ବଙ୍କରରେ ଶୋଇଗଲା । ସେଠାରେ ସେ ଚୁପ୍‌ଚାପ୍ ପଡ଼ିଥାଏ । କିନ୍ତୁ ଆମେ ଯେତେବେଳେ ତାକୁ ଝୋଳ ଗିନାଏ ଦେଇଦେଲୁ ତା ମୁହଁରେ ଫୁଟି ଉଠିଲା ହାସ୍ୟରେଖାଟି । ସେ ସେମିତି ଶୋଇ ଶୋଇ ଖାଇଲା । କିନ୍ତୁ ପଦେକଥା ତା ପାଟିରୁ ବାହାରିଲା ନାହିଁ ।

ସେଦିନ ଅପରାହ୍ନରେ ଆଉ ପାଞ୍ଚଜଣ ଆସିଲେ । ଦୁଇଜଣ ଜର୍ମାନ୍, ଜଣେ ଡଚ୍ ଓ ଦୁଇଜଣ ଫରାସୀ ମହିଳା । ସେମାନେ ସମସ୍ତେ ତରୁଣୀ । କିନ୍ତୁ ସମସ୍ତେ ମ୍ଳାନ ମୁଖର ଝିଅ । ଆମେ ତ ପ୍ରଥମେ ସେମାନଙ୍କୁ ଦେଖି ଡରିଗଲୁ । ଆମେ ଭାବିଲୁ ''ସେମାନେ ଭାରି ଗୋଳମାଳ କରିବେ । ଉନ୍ମାଦ (ଅପସ୍ମାର) ରୋଗୀ ଭଳି ବାଡ଼େଇ ପିଟି ହେବେ । ସେମାନଙ୍କୁ ଆୟତ୍ତ କରିବା ପାଇଁ ଆମକୁ ହୁଏତ ବଳ ପ୍ରୟୋଗ କରିବାକୁ ପଡ଼ିବ ।'' ଉନ୍ମାଦ ରୋଗୀଙ୍କୁ କିପରି ଆୟତ୍ତ କରିବାକୁ ହୁଏ, ଆମର ସେ ଅଭିଜ୍ଞତା ନ ଥିଲା । କିନ୍ତୁ ସେମାନେ ଚୁପ୍‌ଚାପ୍ ବିଛଣାରେ ପଡ଼ି ରହିଥିଲେ । ବେଳେବେଳେ ମୁହଁକୁ ତଳକୁ କରି ବସି ରହିଥିଲେ ।

ମୋର ମନେପଡୁଛି, ମୁଁ ସେମାନଙ୍କ ସହ କଥା ଦି' ପଦ ହେବାକୁ ବହୁତ ଉଦ୍ୟମ କରିଥିଲି । କିନ୍ତୁ ମୋ' କଥା ସେମାନଙ୍କ ପାଖରେ ପହଞ୍ଚୁଥିଲା କିମ୍ବା ନାହିଁ, କିଛି ଜାଣିପାରୁ ନଥିଲି । ସେଦିନ ସନ୍ଧ୍ୟା ହାଜିରା ପୂର୍ବରୁ ଆହୁରି କେତେ ଜଣ ମଧ ଆସିଲେ ସେତେବେଳକୁ ଗୋଟିଏ ଗୋଟିଏ ବେଡ୍‌ରେ ଦୁଇଜଣ ଲେଖା ରୋଗୀ ରହିଲେଣି ।

ଏହାର କେତେଦିନ ପରେ ଡାକ୍ତର ମେଙ୍ଗେଲ୍‌ର ଆଗମନ ପାଇଁ ଆମେ ପ୍ରସ୍ତୁତ ହୋଇପଡ଼ିଲୁ । ଆମେ ଜାଣିଥିଲୁ ଯେ, ''ମେଙ୍ଗେଲ୍ ତାହାର ନୂଆ ୱାର୍ଡ୍‌କୁ ନିଶ୍ଚୟ ପରୀକ୍ଷା କରିବାକୁ ଆସିବ ।'' ସେଦିନ ସକାଳେ ଆମେ ଅତି ଖରାପ ରୋଗୀଙ୍କୁ ସେଠାରେ ରଖିଲୁ ନାହିଁ । ସମସ୍ତଙ୍କୁ ବ୍ଳକ୍‌କୁ ପଠାଇ ଦେଲୁ । ଆମେ ଜାଣିଥିଲୁ ଯେ ସେମାନଙ୍କୁ ଦେଖିଲେ ମେଙ୍ଗେଲ୍ ସଙ୍ଗେ ସଙ୍ଗେ 'ଗ୍ୟାସ୍'କୁ ପଠାଇଦେବ । ପାଦ ଫୁଲିଥିବା ବା ଦେହରେ ବଡ଼ ବଡ଼ ଘା' ହୋଇଥିବା ରୋଗୀମାନଙ୍କୁ ବଡ଼ ଭାରାକ୍ରାନ୍ତ ହୃଦୟରେ ସେଠାରୁ ଫେରାଇ ଦେଇଥିଲୁ । ଆମେ ଏକଥା ଅବଶ୍ୟ ଜାଣିଥିଲୁ ଯେ ସେମାନଙ୍କୁ ହୁଏତ କାର୍ଯ୍ୟ କରିବାକୁ ପଡ଼ିପାରେ ।

ପ୍ରେମିକ ରୋମିଓ ଭଳି ଚେହେରା କରିଥିବା ଶ୍ୱେତ ପୋଷାକ ପରିହିତ ସେହି ରାକ୍ଷସକୁ ଆମେ ଭଲ ଭାବରେ ଚିହ୍ନିଥିଲୁ । ଆମେ ଜାଣିଥିଲୁ ଯେ ସେ ସେମାନଙ୍କୁ ସିଧା ଗ୍ୟାସ୍‌କୁ ପଠାଇଦେବ ଏବଂ ଆମକୁ ଭାଷଣ ଦେବ, ''ହେଇ ଦେଖ ଏହି ମହିଳାମାନେ ବଞ୍ଚିବାକୁ ଅସମର୍ଥ । କାହିଁକି ସେମାନଙ୍କୁ କଷ୍ଟ ଦେବି ! ସେମାନଙ୍କ ମଙ୍ଗଳ ପାଇଁ ମୁଁ ସେମାନଙ୍କୁ ଗ୍ୟାସ୍ ଚ୍ୟାମ୍ବରକୁ ପଠାଇ ଦେଉଛି ।''

ସେଦିନ ମେଙ୍ଗେଲ୍ ପ୍ରାୟ ମଧ୍ୟାହ୍ନରେ ପହଞ୍ଚିଲା । ମାରୁସିଆ ଗର୍ଜନ କଲା, ''ହାଜର'' । ଆମେ ହାଜର ହୋଇଗଲୁ । ରୋଗୀମାନଙ୍କୁ ବଛାବଛି ଓ କାର୍ଡ ଲେଖାଲେଖି କାମ ସଙ୍ଗେ ସଙ୍ଗେ ଆରମ୍ଭ ହୋଇଗଲା । ସୁରୁଖୁରୁରେ ସବୁ କାମ ଚାଲିଥିଲା ।

ପାଖରୁମ୍‌ରୁ ଆମେ ହଠାତ୍ ଶୁଣିବାକୁ ପାଇଲୁ ଆନନ୍ଦର ଚିତ୍କାର ।

''ଏ ଡାକ୍ତର, ଏଠାକୁ ଆ, ଆମକୁ ଦେଖ୍ । ତାହା ଥିଲା ନାଟାସାର ଆହ୍ୱାନ । ସେ ଚମତ୍କାର ଜର୍ମାନ୍ ଭାଷାରେ କହୁଥିଲା । ତାହାର କଣ୍ଠସ୍ୱରରେ ଭରି ରହିଥିଲା ଆନନ୍ଦର ମଧୁର ମୂର୍ଚ୍ଛନା ।''

''ଶିଶୁ ଓ ସେମାନଙ୍କର ମା'ମାନଙ୍କୁ ହଜାର ହଜାର ସଂଖ୍ୟାରେ ହତ୍ୟା କରିଥିବା ରେ ଭୀରୁ, କାପୁରୁଷ । କାହାକୁ ଡରୁଛୁ ? ଏଠାକୁ ଚାଲିଆ । ସେହି ନରପିଶାଚ ହିଟଲର ବିଷୟରେ କଥା ହେବା । ଓହୋ ତୁ ଭାବୁଛୁ ଷ୍ଟାଲିନ୍ ଗ୍ରାଡ୍ କଥା ଆଲୋଚନା କରିବୁ ? ସେଠାରେ ତ ତୁମ୍ଭମାନଙ୍କୁ ପାଗଲା କୁକୁରମାନଙ୍କ ଭଳି ମରାଯାଉଛି ।

ତା' କଥାଶୁଣି ଆମେ ପଥର ପାଲଟିଗଲୁ । ଆମେ ସମସ୍ତେ କାର୍ଯ୍ୟବ୍ୟସ୍ତ ଥିବାର ଛଳନା କରୁଥିଲୁ – ଯେପରିକି ନାଟାସାର କଥା ଆମକୁ ଆଦୌ ଶୁଭୁ ନଥିଲା । ସେ ଆଡ଼କୁ ଅନେଇବାକୁ ଆମେ ସାହସ କରିପାରୁ ନଥିଲୁ । ଆମେ ଜାଣିଥିଲୁ; ଯେ କୌଣସି ମୁହୂର୍ତ୍ତରେ ଭୟାବହ କିଛି ଘଟିଯାଇପାରେ । ନାଟାସାର ଗର୍ଜନ ଓ କର୍କଶ ଭାଷା ଗୁଡ଼ିକ ପାଖ ରୁମ୍‌ରେ ପ୍ରତିଧ୍ୱନିତ ହେଉଥିଲା ।

''ନେପୋଲିୟନ୍ ଭଳି ତୁମେ ସବୁ ରୁଷିୟାରେ ମରିବ । ମୋ ପାଖକୁ ଆସିବାକୁ ଡରୁଛୁ ? ନା, ଆରେ ହେ ଗ୍ୟାସ୍ ଚ୍ୟାମ୍ବର୍‌ରେ ବିଶେଷଜ୍ଞ ଡାକ୍ତର, ସତକଥା ଶୁଣିବାକୁ ଡରୁଛୁ ?''

ଆମେ ଦେଖିଲୁ, ମେଙ୍ଗେଲ୍ ହଠାତ୍ ଉଠିପଡ଼ି ସେ ରୁମ୍ ଭିତରକୁ ପଶିଗଲା । ସେଠାରୁ ଗୁଳିର ଶବ୍ଦ ଶୁଣିବା ଆଶଙ୍କାରେ ଆମେ କାନ ଡେରି ରହିଲୁ ।

ପୁଣି ଶୁଭିଲା, ''ଆ, ମୋ ପାଖରେ ବସ୍ । ଖୁସି ଗପ କରିବା ।'' ମେଙ୍ଗେଲ ପାଟି ଶୁଭୁ ନଥିଲା । କେବଳ ଶୁଭୁଥିଲା ନାଟାସାର ଗର୍ଜନ ।

''ମାନବ ଜାତିର ନର୍ଦ୍ଦମା ସେହି ହିଟଲର ଜର୍ମାନୀକୁ ଧ୍ୱଂସ କଲା । ଯୁଗ ଯୁଗ ଧରି ସେହି ମାନବ ଜାତି ଘୃଣା କରିବ ତୁମ୍ଭମାନଙ୍କୁ । ତୁ ସବୁ ଦେଖିବୁ । ଯୁଦ୍ଧପରେ ଯଦି ବା ତୁ ବଞ୍ଚି ରହିବୁ ମଣିଷ ଜାତିର ପ୍ରତିଶୋଧ ଭୟରେ ତୋତେ ଏକ ଘୃଣ୍ୟ ଜୀବାଣୁ ଭଳି ଆତ୍ମଗୋପନ କରିବାକୁ ପଡ଼ିବ ।''

ଆମ୍ଭେମାନେ ମୋହଗ୍ରସ୍ତ ଭଳି ଅଚଳ ଛିଡ଼ା ହୋଇଥିଲୁ । ନାଟାସା ଗୀତ ଗାଇବାକୁ ଆରମ୍ଭ କଲା । କି ହୃଦୟସ୍ପର୍ଶୀ ତା କଣ୍ଠସ୍ୱର !

ଏକ ସାଙ୍ଘାତିକ ସଂଳାପରେ ନାଟାସା ତା'ର ଭାଷଣ ଶେଷ କଲା, ''ନିକଳ ଏଠୁ । ନିକଲ୍, ଗେଟ୍ ଆଉଟ୍ ।''

ମେଙ୍ଗେଲ୍ ନୀରବରେ ସେଠାରୁ ଚାଲି ଆସିଲା । ଅକ୍ଷମଶାଳାର ଦ୍ୱାର ଅତିକ୍ରମ

କରିବା ପରେ ଆମ ଶୃଙ୍ଖଳା ମୁହଁକୁ ଦେଖି ସାରିବା ପରେ ଯାଇ ମେଙ୍ଗେଲ୍ ଅର୍ଡର ଦେଲା, ''ଡ୍ରେସିଂ କାମ ଶୀଘ୍ର ଶେଷ କର ।'' କାରଣ ଡ୍ରେସିଂ ଓ ଖାଇବା ଶେଷ ହେଲେ ସେମାନଙ୍କୁ ଅନ୍ୟରୁମ୍‌କୁ ନିଆଯିବ । ''ସେ ରଷିୟାନ୍ ଜଣକ ଏଇଠି ରହିବ ।'' ଏହା ଥିଲା ସେଦିନ ପାଇଁ ମେଙ୍ଗେଲ୍‌ର ଶେଷ ନିର୍ଦ୍ଦେଶ ।

ସେହି ନିର୍ଦ୍ଦେଶର ଅର୍ଥ ଆମକୁ ଭଲ ଭାବରେ ଜଣାଥିଲା । କାରଣ ସେମାନଙ୍କୁ ଅନ୍ୟ ରୁମ୍‌କୁ ନିଆଯାଇ ସେଠାରେ ପ୍ରତ୍ୟେକକୁ ଗୋଟିଏ ଲେଖା ବିଷାକ୍ତ ଫେନଲ ଇଞ୍ଜେକ୍‌ସନ୍ ଦିଆଯିବ । ତା'ପରେ ଗାଡ଼ିରେ ସେମାନଙ୍କୁ ନିଆଯିବ ଗ୍ୟାସ୍ ଚ୍ୟାମ୍ବରକୁ । ତେବେ ସେ ରଷିୟାନ୍ ନାଟାସାକୁ ଏଠାରେ ରଖିବାକୁ ମେଙ୍ଗେଲ୍ କାହିଁକି ନିର୍ଦ୍ଦେଶ ଦେଲା, ସମ୍ଭବତଃ ତା' ପାଇଁ ଯୋଗାଡ଼ ଦେଉଥିଲା ଅନ୍ୟ କେଉଁ ପ୍ରକାରର ଯନ୍ତ୍ରଣାଦାୟକ ମୃତ୍ୟୁ !

ପରଦିନ ସକାଳେ ଆଉ ଦଳେ ମହିଳାଙ୍କୁ ସେଠାକୁ ପଠାଗଲା । ସେମାନେ ମଧ ସେମିତି ନୀରବ ଓ ମ୍ରିୟମାଣ ଦିଶୁଥିଲେ । ମଧ୍ୟାହ୍ନ ଭୋଜନ ପରେ ମେଙ୍ଗେଲ୍ ପୁନର୍ବାର ପହଞ୍ଚିଗଲା । ତାକୁ ଦେଖିବା ସଙ୍ଗେ ସଙ୍ଗେ ନାଟାସା ପୁଣି ଗର୍ଜିଲା, ''ଗ୍ୟାସ୍ ଚ୍ୟାମ୍ବରର ରେ କୁଖ୍ୟାତ ହିରୋ, ଏଠାକୁ ଚାଲିଆ । ତୋର ଆସନ୍ନ ମୃତ୍ୟୁ କଥା ଆଲୋଚନା କରିବା । ଯଦି ଚାହିଁବୁ, ତୋର ମୃତ୍ୟୁ କେମିତି ହେବ, ମୁଁ ତାହା କହିଦେବି ।''

ମେଙ୍ଗେଲ୍ ନାଟାସା ପାଖକୁ ଯିବାଟାକୁ ଆମେ ବିସ୍ମିତ ହୋଇ ଅନାଇଥିଲୁ । ପ୍ରାୟ ଘଣ୍ଟାଏ କାଳ ନାଟାସା ହିଟଲର୍ ବିରୁଦ୍ଧରେ ବିଷୋଦ୍‌ଗାର ଓ ରୁଷିଆର ଗୁଣଗାନ କଲା । ମେଙ୍ଗେଲ୍ ଚେୟାର୍ ଉପରେ ବସି ଓ ମୁଣ୍ଡକୁ ଆଣ୍ଠୁ ଉପରେ ଥୋଇ ଚୁପ୍ ଚାପ୍ ବସିଥିଲା ।

ସେହି ଅବସ୍ଥାରେ ବସିଥିବା ମେଙ୍ଗେଲ୍‌କୁ ମୁଁ ଅନେଇ ଥିଲି ଏବଂ ସେ ଅବସ୍ଥା ଦେଖି ସୁଦ୍ଧା ବିଶ୍ୱାସ କରିପାରୁ ନଥିଲି ସେଠାରେ କ'ଣ ସବୁ ଘଟିଯାଉଥିଲା । ସେହି ହିଂସ୍ର ଜନ୍ତୁକୁ ତାହାର ଶିକାର ପାଖକୁ କ'ଣ ଟାଣି ନେଉଥିଲା, ତାହା ଆଜି ପର୍ଯ୍ୟନ୍ତ ବୁଝିପାରୁ ନାହିଁ । ହୋଇପାରେ, ସେ ଏକ ବିଚାର ସଙ୍କଟରେ ପଡ଼ିଥିଲା । ନାଟାସା ମେଙ୍ଗେଲ୍‌ର ଯେଉଁ କୁକୀର୍ତ୍ତିମାନ ବଖାଣୁ ଥିଲା, ସେଥିରୁ ସମ୍ଭବତଃ ମେଙ୍ଗେଲ୍ ଆତ୍ମ ପ୍ରସାଦ ଅନୁଭବ କରୁଥିଲା ।

ପ୍ରତିଦିନ ସଫେଇ କର୍ମଚାରୀମାନେ ଅସୁସ୍ଥ ବନ୍ଦିନୀମାନଙ୍କୁ 'ଫେନଲ୍' ଇଞ୍ଜେକ୍‌ସନ୍ ଦେଉଥିଲେ । ଆଉସ୍‌ଭିଜ୍‌ଜ୍‌ରେ 'ଫେନଲ୍' ଇଞ୍ଜେକ୍‌ସନ୍ ଦେଇ ହତ୍ୟା କରିବା ସେମାନଙ୍କର କାର୍ଯ୍ୟ । ନାଟାସାର ଭର୍ତ୍ସନା ଶୁଣିବାକୁ ମେଙ୍ଗେଲ୍ ଦୈନିକ ସେଠାକୁ ଆସୁଥିଲା ।

ମୁଁ ନାଟାସା ସହ କଥା ହେବାକୁ ଦିନେ ସନ୍ଧ୍ୟାରେ ସ୍ଥିର କଲି । ମୋ' ବିଷୟରେ

ମୁଁ ସବୁକଥା ତାକୁ କହିଦେଲି । ତାହାର ଜୀବନ ବୃତ୍ତାନ୍ତ ମୋତେ କହିବା ପାଇଁ ସେ ଯଥେଷ୍ଟ ମାନସିକ ଶକ୍ତି ସଂଗ୍ରହ କରିବାକୁ ଏବଂ ମୋ'ପ୍ରତି ତାହାର ପତିଆରା ହେବା ପର୍ଯ୍ୟନ୍ତ ମୋତେ ଅପେକ୍ଷା କରିବାକୁ ପଡ଼ିଲା । ଅବଶ୍ୟ ମୁଁ ନିରାଶ ହୋଇ ନଥିଲି ।

ମୁଁ ଜାଣିଲି ଯେ ସେ ଜଣେ ଛାତ୍ରୀ ଥିଲା । ତା'ର ପିତାମାତା ଜର୍ମାନ୍ ଭାଷାର ଅଧାପକ ଥିଲେ ଓ ସେମାନଙ୍କ ଠାରୁ ସେ ଜର୍ମାନ୍ ଭାଷା ଶିକ୍ଷା କରିଥିଲା । ସେ ସବୁ କଥା ଜାଣି ସାରିବା ପରେ ମୋ'ର ହୃଦ୍‌ବୋଧ ହୋଇଥିଲା ଯେ ନାଟାସା ଆଦୌ ପାଗଳୀ ନଥିଲା । ଜର୍ମାନମାନଙ୍କ ସମ୍ପର୍କରେ ସେ ଯାହା ଭାବୁଥିଲା ତାହା ପ୍ରକାଶ କରିବା ପାଇଁ ପାଗଳାମିର ଛଳନା କରୁଥିଲା ।

ମୁଁ ବ୍ୟସ୍ତ ହୋଇ ତାକୁ କହିଲି, ''ନାଟାସା ସେମାନେ ପାଗଳମାନଙ୍କୁ କ'ଣ କରନ୍ତି, ତାହା ତୁମେ ଜାଣ ନାହିଁ । ସେମାନେ ପାଗଳମାନଙ୍କର ଚିକିତ୍ସା କରନ୍ତି ନାହିଁ, ହତ୍ୟା କରନ୍ତି ।''

ନାଟାସା ଜବାବ ଦେଲା, ''ମୁଁ ମଧ୍ୟ ଏହି ପୂତି ଗନ୍ଧମୟ ପୃଥିବୀରେ ବଞ୍ଚି ରହିବାକୁ ଚାହେଁ ନା ।''

ତା' ପରଦିନ ମେଙ୍ଗେଲ୍ ପରିବର୍ତ୍ତେ ଡାକ୍ତର କ୍ରୁୟନିଗ୍ ଆସିଲା । ସେ ଯେପରି ନାଟାସାକୁ ଦେଖି ନପାରେ ମୁଁ ରୁମ୍‌ର ଦରଜା ଆଉଜାଇ ଆଣିଥିଲି । ନାଟାସା ବଡ଼ ପାଟିରେ କହିଲା, ''ରେ ନରହନ୍ତା ଡାକ୍ତର ଏଠାକୁ ଚାଲିଆ, ତୋ' ହିଟଲର୍ କଥା ଶୁଣାଇବି ।''

କ୍ରୁୟନିଗ୍ କ୍ରୋଧରେ ଥରିଗଲା ଓ ଦରଜାକୁ ଠେଲି ରୁମ୍ ଭିତରକୁ ପଶିଗଲା । ସେ ଘର ଭିତରେ ସମ୍ପୂର୍ଣ୍ଣ ଅନ୍ଧକାର ଆଛନ୍ନ କରିଥିଲା । ନାଟାସା ତା'ର ଶଯ୍ୟାରେ ମୋଡ଼ି ମାଡ଼ି ହୋଇ ପଡ଼ିରହିଥିଲା । ତଥାପି କ୍ରୁୟନିଗ୍‌କୁ ଦେଖିବା ସଙ୍ଗେ ସଙ୍ଗେ ନାଟାସା ଗର୍ଜି ଉଠିଲା, ''ରେ ହିଟଲର୍ ଚେଲା ଭୀରୁ କାପୁରୁଷ ! କ'ଣ ଭିତରକୁ ଆସିବା ପାଇଁ ଡର ଲାଗୁଛି ?''

ତା' ପରେ ଶୁଭିଲା ଗୁଳିର ଆୱାଜ୍ । ସେହି ଆୱାଜ୍‌ରେ ଅକ୍ଷମଶାଳାରେ ପଡ଼ିଥିବା ରୋଗୀମାନେ ଭୟରେ ଥରି ଉଠିଲେ ।

ଆମେ ସେଠାରେ ପହଞ୍ଚିବା ବେଳକୁ ନାଟାସା ଶେଷ ହୋଇ ଯାଇଥିଲା । ଫେନେଲ୍ ଇନ୍‌ଜେକ୍‌ସନ୍ ବା ଗ୍ୟାସ୍ ଚେମ୍ବରର ଯନ୍ତ୍ରଣାଦାୟକ ମୃତ୍ୟୁର ସମ୍ମୁଖୀନ ନ ହୋଇ ସେ ବୀରର ମୃତ୍ୟୁ ବରଣ କରିଥିଲା । ନାଟାସାର ବିଜୟ ହେଲା ।

■■■

- ୨୫ -

# ଜୀବନର ମୂଲ୍ୟ

**ମଣିଷ ଜୀବନର ମୂଲ୍ୟ ନିର୍ଦ୍ଧାରଣ କରାଯାଇ** ପାରିବ କି ? ଅନ୍ୟ ଜୀବନ ନୁହେଁ, ମୁଁ ନିଜର ଜୀବନ କଥା **କହୁଛି । ଜୀବନର** କୌଣସି ନିର୍ଦ୍ଦିଷ୍ଟ ମୂଲ୍ୟ ଅଛି, ନା ତାହା ଅମୂଲ୍ୟ । ଯଦି ତାହା ହିଁ ହୋଇଥାଏ, ତେବେ ଯେଉଁ ବନ୍ଦୀମାନେ ସର୍ବଶକ୍ତିମାନ ଜର୍ମାନମାନଙ୍କ ଦ୍ୱାରା ବଞ୍ଚିବା ଅଧିକାରରୁ ବଞ୍ଚିତ, ସେମାନଙ୍କ ଜଣାଶୁଣାରେ ସେମାନଙ୍କୁ ଗ୍ୟାସ୍‌କୁ ପଠାଇଦେବା ହୁଏତ ଠିକ୍ । ଅଧିକନ୍ତୁ ମୃତ୍ୟୁ ଯେତେବେଳେ ଅବଧାରିତ ସେତେବେଳେ ବଞ୍ଚିବା ପାଇଁ ସଂଗ୍ରାମ କରିବାର ଯୌକ୍ତିକତା କେତେ ? ସାର୍ଥକ ମୃତ୍ୟୁ ନାମରେ କୌଣସି ସଞ୍ଜ୍ଞା ଅଛି କି ? ମୃତ୍ୟୁ ଅବଶ୍ୟମ୍ଭାବୀ ବୋଲି ଜାଣି ତାହାକୁ ବରଣ କରିବା ଓ ଅପ୍ରତ୍ୟାଶିତ ଭାବେ ମୃତ୍ୟୁ ଆସି ପହଞ୍ଚି ଯିବା ମଧ୍ୟରୁ କିଏ ଅଧିକ ଶ୍ଲାଘ୍ୟ ବା ସ୍ପୃହଣୀୟ ?

ଆଉସ୍‌ଭିଜ୍‌ ଯେଉଁଠାରେ ମୃତ୍ୟୁକୁ ସ୍ପର୍ଶ କରିହେବ, ମୃତ୍ୟୁ ଯନ୍ତ୍ରଣା ଯେଉଁଠାରେ ଅହୋରାତ୍ର ପ୍ରତିଧ୍ୱନିତ, ସେଇଠି ସେତେବେଳେ ମନରେ ଏହି ପ୍ରଶ୍ନ ଗୁଡ଼ିକ ବାରମ୍ବାର ଆନ୍ଦୋଳିତ ହେଉଥିଲା । ଆମ ପାଇଁ ଏହା କେବଳ ବୌଦ୍ଧିକ ଚର୍ଚ୍ଚାର ବିଷୟ ବା ତାତ୍ତ୍ୱିକ ପ୍ରଶ୍ନ ନଥିଲା । କାରଣ ସେହି ପ୍ରଶ୍ନଗୁଡ଼ିକର ଉତ୍ତର ଉପରେ ନିର୍ଭର କରୁଥିଲା ଅନ୍ୟମାନଙ୍କ ପ୍ରତି ଆମର ମନୋଭାବ କ'ଣ ହେବା ଉଚିତ । ବିଶେଷତଃ ଯେଉଁମାନେ ମୃତ୍ୟୁ ପାଇଁ ବଛା ହୋଇଥିଲେ ସେମାନଙ୍କ ସହ ଆମେ କିପରି ବ୍ୟବହାର କରିବା । ଯେଉଁମାନେ କହନ୍ତି - ''ଯେ କୌଣସି ମୂଲ୍ୟ ଦେଇ ମୁଁ ବଞ୍ଚିବାକୁ ଚାହେ'', ସେମାନେ ନିଜ ବାପା ମା'ଙ୍କୁ ଗ୍ୟାସ୍ ଚାମ୍ବର ଗାଡ଼ିରେ ଭର୍ତ୍ତିକରି ମୃତ୍ୟୁ ଗହ୍ୱରକୁ ଠେଲି ଦିଅନ୍ତି । ଅନ୍ୟପକ୍ଷରେ କେତେ ବାପା ମା ନିଜେ ବଞ୍ଚି ରହିବାକୁ ନିଜର ଶିଶୁ ସନ୍ତାନକୁ ମଧ୍ୟ ବ୍ୟାଗ୍‌ରେ ଲୁଚାଇ ଦେଇ ରାସ୍ତା କଡ଼ରେ ଛାଡ଼ି ଦେଇ ଯାଆନ୍ତି ଏବଂ ଯେଉଁମାନେ କହନ୍ତି, ''ମୋର ଜୀବନ ଅମୂଲ୍ୟ'' ସେମାନେ ମୃତ୍ୟୁ ମୁଖରୁ ବଞ୍ଚିବା ପାଇଁ ଆତ୍ମଗୋପନ କରିଥିବା ସ୍ଥାନରୁ ଘୋଷାଡ଼ି ଆଣି ବନ୍ଦୀମାନଙ୍କୁ ଗ୍ୟାସ୍ ଚ୍ୟାମ୍ବରକୁ ପଠାଇ ଦିଅନ୍ତି ।

ଏହା ସବୁ ବିଚିତ୍ର ମନେ ହୋଇପାରେ । କିନ୍ତୁ ଆଉସ୍‌ଭିଜ୍‌ରେ ସମସ୍ତେ ବଞ୍ଚି ରହିବାକୁ ଚାହାନ୍ତି । ସେଠାରେ ପ୍ରାୟ କେହି ଆତ୍ମହତ୍ୟା କରନ୍ତି ନାହିଁ । ସେହି ଭୟାବହ ପୃଥିବୀରେ ବଞ୍ଚିବାର ବା ସ୍ୱପ୍ନ ଦେଖିବାର ସ୍ୱାଧୀନତା ମଧ୍ୟ ଥାଏ । ଯୁଦ୍ଧୋତ୍ତର ପୃଥିବୀର ସୁନ୍ଦର ମଣିଷମାନଙ୍କର ପ୍ରତିଛବି ମନଶ୍ଚକ୍ଷୁରେ ଉଦ୍ଭାସିତ ହୋଇ ଉଠୁଥାଏ । ଆମେମାନେ

କଳ୍ପନା କରୁଥିଲୁ ଯେ କେବେ ସେ ମଣିଷ ଅଧିକ ଅନୁଭୂତି ସିଦ୍ଧ ହେବ ଏବଂ ସେହି ପୃଥିବୀ ପୃଷ୍ଠରେ ଯୁଦ୍ଧମୁକ୍ତ ଓ ଦଣ୍ଡରହିତ ଏକ ବୈକୁଣ୍ଠ ଭୁବନ ସୃଷ୍ଟି କରିବ । ତେଣୁ ଏଥିରେ ବିସ୍ମିତ ହେବାର କିଛି ନଥିଲା ଯେ ପ୍ରତ୍ୟେକ ଚାହୁଁଥିଲେ ଜର୍ମାନୀର ପରାଜୟ ଏବଂ ସ୍ୱପ୍ନ ଦେଖୁଥିଲେ ଏକ ସୁନ୍ଦର ପୃଥିବୀର । ଗୋଟିଏ ମୃତ ସିଂହର ଜୀବନ ଅପେକ୍ଷା ଗୋଟିଏ ଜୀବନ୍ତ ଶ୍ୱାନ ଜୀବନ ଶ୍ରେୟସ୍କର ଭଳି ମାନବତା ବିରୋଧୀ ଶ୍ୱାନ ସୁଲଭ ସେହି ପ୍ରବାଦବାକ୍ୟ ଅନୁସାରେ ଯେ କୌଣସି ମୂଲ୍ୟ ଦେଇ ବଞ୍ଚିବାର ମନୋଭାବ ତଥା ପାଶବିକ ମନୋବୃତ୍ତିରୁ ମୁକ୍ତ ହେବା ହିଁ ଥିଲା ସବୁଠାରୁ ବଡ଼ ଆହ୍ୱାନ ।

ମଣିଷକୁ ଯେ ମରିବାକୁ ହେବ ଏହା ପ୍ରତ୍ୟେକ ମଣିଷ ସଚେତନ ଭାବରେ ଜାଣିବା ଉଚିତ ।

ମୁଁ ସ୍କୋନିମ୍ ଅରଣ୍ୟରେ ଆତ୍ମଗୋପନ କରିଥିବା ବେଳେ ବୋମାମାଡ଼ରୁ ବର୍ତ୍ତିଯିବା ବିଷୟ ମୋ'ର ବେଶ୍ ମନେ ଅଛି । ବିୟଲ୍‌ଷ୍ଟୋକ୍‌ରୁ ପଳାୟନ କରି ମୁଁ ଏତେ କ୍ଲାନ୍ତ ହୋଇଥିଲି ଯେ ବୋମାମାଡ଼ର ବିପଦ ସତ୍ତ୍ୱେ ମୁଁ ଗାଢ଼ ନିଦରେ ଶୋଇ ଯାଉଥିଲି । ପ୍ରତି ବୋମା ବିସ୍ଫୋରଣ ଶବ୍ଦରେ ମୋ ନିଦ ଭାଙ୍ଗି ଯାଉଥିଲା ଏବଂ ମୁଁ ପ୍ରତିଜ୍ଞା କରୁଥିଲି; ''ଆଉ ଶୋଇବି ନାହିଁ ନଚେତ୍ କେତେବେଳେ ମୁଁ ମରିଯିବି, ତାହା ଜାଣି ସୁଦ୍ଧା ପାରିଲି ନାହିଁ ।'' ଆଉସ୍‌ଭିତ୍‌ଜ୍‌ରେ ଥିବାବେଳେ ମୁଁ ଭାବୁଥିଲି ଯେ ସେହି ପ୍ରାର୍ଥନାଟିକୁ, ଯେଉଁଥିରେ କୁହାଯାଇଛି, ''ହେ ପ୍ରଭୁ, ମୋତେ ଆଲୋକ ଦେଖାଅ ନଚେତ୍ ହୁଏତ ମୁଁ ଶୋଇ ପଡ଼ିବି ମହାନିଦ୍ରାରେ; ଜାଣିସୁଦ୍ଧା ପାରିବି ନାହିଁ ।'' ସେହି ପ୍ରାର୍ଥନାର ଅର୍ଥ ହେଉଛି, ''ପ୍ରଭୁ ତାକୁ ଅପ୍ରତ୍ୟାଶିତ ମୃତ୍ୟୁରୁ ରକ୍ଷା କରନ୍ତୁ, ଯେପରିକି ସେ ଜୀବନକୁ ବିଦାୟ ଦେଇ ପାରିବ ।''

ଆଉସ୍‌ଭିତ୍‌ଜ୍‌ରେ ମୋର ସହକର୍ମୀ ମାଗଦା ନାମ୍ନୀ ସ୍ଲୋଭାକ୍ ଝିଅଟି ଆମକୁ ବୁଝାଇବାକୁ ଚେଷ୍ଟା କରେ ଯେ ବନ୍ଦିନୀମାନେ ସେମାନଙ୍କର ଗନ୍ତବ୍ୟ ସ୍ଥଳ ସମ୍ପର୍କରେ କିଛି ଜାଣି ନପାରି ଗ୍ୟାସ୍ ଚ୍ୟାମ୍ବରରେ ମୃତ୍ୟୁ ଗହ୍ୱରକୁ ଚାଲି ଯାଆନ୍ତି । ମୋତେ ତାହା ଅତ୍ୟନ୍ତ ବେଦନା ଦିଏ । ସେ କହେ, ''ସେମାନେ ଯେ ମୃତ୍ୟୁ ମୁଖକୁ ଯାଉଛନ୍ତି, ତାହା ଜାଣିବା ଉଚିତ । ସଚେତନ ଭାବରେ ମୃତ୍ୟୁ ବରଣ କରିବା ପ୍ରତ୍ୟେକ ମଣିଷର ମୌଳିକ ଅଧିକାର ।''

ଆମେ ପଚାରୁ, ''ସେଥିରେ ସେମାନଙ୍କର ଲାଭ କ'ଣ ? ତଦ୍ୱାରା ବରଂ ସେମାନଙ୍କର ଦୁଃଖ ବଢ଼ିବ ।''

ସେ ଉତ୍ତର ଦେଉଥିଲା, ''ବନ୍ଧୁ । ସେ ମଣିଷ ଭଳି ମରିବା ଉଚିତ । ମୃତ୍ୟୁ ଅଭିମୁଖେ ଯାଉଥିବା ମଣିଷକୁ ତାହା କହିଦେବା ଆମର ନୈତିକ କର୍ତ୍ତବ୍ୟ ।''



- ୨୬ -

# ଆଉସ୍‌ଭିଜ୍‌ଜ୍‌ର ପ୍ରେମୀ ଯୁଗଳ

୧୯୪୪ର ଶରତ ଋତୁ । ଦିନେ ମେଘୁଆ ପାଗରେ ହାଜିରା ଲମ୍ବି ଲମ୍ବି ଯାଉଥିଲା । ପ୍ରତି ମିନିଟ୍‌ରେ ଆମେ ତାରବାଡ଼ ଭିତରକୁ ଅନେଇଲେ ଦେଖୁଥିଲୁ କ୍ଳାନ୍ତ ଶ୍ରାନ୍ତ ମହିଳାମାନଙ୍କର ଲମ୍ବା ଧାଡ଼ି । ସେଦିନ ହାଜିରା ଦାୟିତ୍ୱରେ ଥିବା କମାଣ୍ଡାଣ୍ଟ ଟାଉବେ ଏ ବ୍ଲକ୍‌ରୁ ସେ ବ୍ଲକ୍‌କୁ ଦୌଡ଼ୁଥିଲା ବନ୍ଦିନୀମାନଙ୍କର ଚେକିଂ ଓ ଗଣତି କାମରେ । ତା ସାଙ୍ଗରେ ନାତ୍‌ସୀ ଆତଙ୍କବାଦୀ ମାନେ ମଧ୍ୟ ଦୌଡ଼ୁଥାନ୍ତି । ସେମାନଙ୍କ ଛାନିଆ କହିଲେ ନସରେ । ସର୍ଦ୍ଦାର ଓ ୱାର୍ଡେନ୍‌ମାନେ କିଛି ବୁଝି ନପାରି ଖାଲି ଚିତ୍କାର କରୁଥିଲେ, ''ହାଜର, ହାଜର'' । ବନ୍ଦିନୀମାନେ ସବୁ ପରିସ୍ଥିତି ପାଇଁ ମାନସିକ ଭାବରେ ପ୍ରସ୍ତୁତ ଥିଲେ । ପରେ ସର୍ଦ୍ଦାରମାନଙ୍କୁ ଡକାଇ କ'ଣ ଗୋଟେ ଅର୍ଡର ଦେଲା ଟାଉବେ । ସେମାନେ କ୍ଳର୍କମାନଙ୍କୁ ଧରି ବ୍ଲକ୍‌କୁ ଫେରି ଆସିଲେ ଓ ଲାଇନ୍‌ରେ ଛିଡ଼ା ହୋଇଥିବା ସମସ୍ତ ବନ୍ଦିନୀମାନଙ୍କ ନମ୍ବରର ତାଲିକା କଲେ । ତାହା ଦେଖି ବନ୍ଦିନୀମାନେ ଆତଙ୍କିତ ହୋଇ ପଡ଼ିଲେ ।

''ସେମାନେ ସମସ୍ତଙ୍କ ନମ୍ବର କାହିଁକି ଲେଖି ନେଉଛନ୍ତି ? ସମସ୍ତଙ୍କୁ କ'ଣ ଗ୍ୟାସ୍‌କୁ ପଠାଇଦେବେ ? ଆମ ମନରେ ଏଭଳି ଅଜସ୍ର ପ୍ରଶ୍ନ ଉଠୁଥିଲା । ସେଠାରେ ଆମକୁ ସର୍ବଦା 'ମୃତ୍ୟୁ' ସହ କାନ୍ଧ ମିଳାଇ ଚଳିବାକୁ ହେଉଥିଲା ।

ନମ୍ବର ତାଲିକା ଧରି ସର୍ଦ୍ଦାର ଟାଉବେକୁ ଦେବା ପାଇଁ ଦୌଡ଼ିଲା । ଠିକ୍ ତା' ପରେ ପରେ ସାଇରନ୍ ବାଜିଲା । ସାଇରନ୍ ଶବ୍ଦ ଆମକୁ ସଙ୍ଗୀତ ଭଳି ଶୁଭୁଥିଲା । କାରଣ ସାଇରେନ୍ ଦୁଇଟି କାରଣରୁ ବାଜୁଥିଲା । ହୁଏତ କୌଣସି ବନ୍ଦୀର ପଳାୟନରେ ନଚେତ୍ ଜର୍ମାନୀର 'ଶତ୍ରୁ' ପକ୍ଷର ଉଡ଼ୁଆ ବିମାନ ଆକାଶରେ ଦୃଷ୍ଟିଗୋଚର ହେଲେ । ସେଦିନ ସାଇରନ୍ ଏକ ବନ୍ଦୀର ପଳାୟନ ଉପଲକ୍ଷେ ବାଜିଥିଲା । ହାଜିରା ସରିବା ପରେ ପରେ ନାତ୍‌ସୀ ଆତଙ୍କବାଦୀମାନେ ସନ୍ଧାନୀ କୁକୁର ସହ ବନ୍ଦୀ ତଲାସରେ ବାହାରି ଗଲେ ।

ତା' ପରଦିନ ସକାଳେ ଆମେ ଆବିଷ୍କାର କଲୁ ଯେ ''ମାଲା ନାମ୍ନୀ ବନ୍ଦିନୀ ଜଣକ ମହିଳା ବ୍ଲକ୍‌କରୁ ପଳାୟନ କରିଛି ।'' ମାଲା ଆମ ବ୍ଲକ୍‌ରେ ''ବାର୍ତ୍ତାବହ'' କାର୍ଯ୍ୟ କରୁଥିଲା । ସେ ବେଲ୍‌ଜିୟମ୍ ନିବାସୀ ଜଣୈକା ଇହୁଦୀ ଥିଲା । ତାର ବୟଫ୍ରେଣ୍ଡ ଥିଲା ଜଣେ ରାଜନୈତିକ ବନ୍ଦୀ । ସେ ମଧ୍ୟ ସେଦିନ ପୁରୁଷ ବ୍ଲକ୍‌ରୁ ପଳାୟନ କରିଥିଲା ।

ପଳାତକ ବନ୍ଦୀ ଦୁଇଜଣ କିଛି ଦିନ ସ୍ୱାଧୀନ ଭାବରେ ବାହାରେ ରହିଲେ । ସେହି ଖବର ମହିଳାମାନଙ୍କ ଭିତରେ ଯେପରି ଛୁଟି ଦିନର ମିଜାଜ୍ ସୃଷ୍ଟି କରିଥିଲା । ମାଲା ଫାସିଷ୍ଟ୍ ବିରୋଧୀ ସଙ୍ଗଠନର ଜଣେ ସଦସ୍ୟା ଥିବାରୁ ଆମେ କଳ୍ପନା କରୁଥିଲୁ ଯେ ସେ ଯଦି ପଳାଇ ଯାଇଥିବ ତେବେ ଏତେବେଳକୁ ସେହି ମୃତ୍ୟୁ ଗୃହରେ ଯାହା ସବୁ ଘଟିଯାଉଥିଲା ତାହା ସେ ବାହାରେ ପ୍ରଚାର କରି ସାରିଥିବ । ସେହି ସମୟରେ ଯିଏ ଯେତେବେଳେ ଯାହାକୁ ଭେଟେ ସମସ୍ତଙ୍କର ସେହି ଗୋଟାଏ ପ୍ରଶ୍ନ, ''ମାଲା ବର୍ତ୍ତମାନ କ'ଣ କରୁଥିବ ?'' ସେ କଦାପି ଧରା ପଡ଼ି ନଥିବ । ତାହାର ପଳାୟନ ଆମ ମନରେ କି ଆନନ୍ଦ ଉଲ୍ଲାସ ଖେଳାଇ ଦେଇ ନଥିଲା ! ମୋ'ର ମନେ ପଡୁଛି ମୁଁ ଦିନେ ବ୍ଲକ୍ ଭିତରେ ମୂଷାମାନଙ୍କର ଦୌରାତ୍ମ୍ୟ ଯୋଗୁଁ ରାତି ଅଧରେ ନିଦରୁ ଉଠିପଡ଼ି ବସିଥିବା ବେଳେ ହଠାତ୍ ସେ ମାଲା କଥା ଭାବି ଭାବି ଏକାବେଳେ ଅଭିଭୂତା ହୋଇ ଯାଇଥିଲି । ଠିକ୍ ଏହି ମୁହୂର୍ତ୍ତରେ ମାଲା କ'ଣ କରୁଥିବ ? ଏହି ନର୍କରୁ ମୁକ୍ତ ହୋଇ ସେ କେତେ ଖୁସି ହେଉ ନଥିବ ଓ କେତେ ସ୍ୱାଧୀନ ଲୋକଙ୍କୁ ଦେଖି ଆନନ୍ଦ ପାଉ ନଥିବ ।

ବ୍ଲକ୍‌ର ପ୍ରାୟ ପ୍ରତ୍ୟେକ ବନ୍ଦିନୀ ତାକୁ ଭଲ ଭାବରେ ଜାଣିଥିଲେ । ସେ ବହୁବର୍ଷ ଧରି ବାର୍ତ୍ତାବହ ବା କୋରିଅର୍ କାର୍ଯ୍ୟ କରିଆସିଥିଲା ଏବଂ ବହୁ ଭାଷାରେ ଅଭିଜ୍ଞା ଥିଲା । 'ପୋଲାଣ୍ଡ' ଭାଷାରେ ତାହାର ବ୍ୟୁତ୍ପତ୍ତି ଯୋଗୁଁ ମୋ'ର ତାହା ପ୍ରତି ବିଶେଷ ଶ୍ରଦ୍ଧା ଥିଲା । ତା'ଠାରୁ ଶୁଣିଥିଲି ଯେ ୧ମ ମହାଯୁଦ୍ଧ (୧୯୧୪-୧୯୧୮) ପରେ ତାର ଅଭିଭାବକ ମାନେ ପୋଲାଣ୍ଡରୁ ବେଲ୍‌ଜିୟମ୍‌କୁ ପଳାଇ ଆସିଥିଲେ । ସେମାନେ ପରସ୍ପର ପୋଲିଶ୍ ଭାଷାରେ କଥାବାର୍ତ୍ତା ହେଉଥିବାରୁ ସେହି ଭାଷାରେ ସେ ପାରଦର୍ଶିତା ଅର୍ଜନ କରିଥିଲା । ମାଲାକୁ ମୁଖ୍ୟ 'ବାର୍ତ୍ତାବହ' ବୋଲି କହିଲେ ମଧ୍ୟ ତାହା ଅତିରଞ୍ଜିତ ହେବ ନାହିଁ । ଅନ୍ୟ ବାର୍ତ୍ତାବହ ମାନେ ତାକୁ ଖୁବ୍ ମାନୁଥିଲେ ଏବଂ ଅତ୍ୟନ୍ତ ବିଶ୍ୱାସ କରୁଥିଲେ । ଯେକୌଣସି ବିପଦପୂର୍ଣ୍ଣ କାର୍ଯ୍ୟ କରିବାକୁ ସେ ପ୍ରସ୍ତୁତ ଥିଲା ଏବଂ ଅନ୍ୟମାନଙ୍କୁ ସବୁପ୍ରକାର ସାହାଯ୍ୟ ମଧ୍ୟ କରୁଥିଲା ।

୧୯୪୪ ମସିହାରେ ମୁଁ ଯେତେବେଳେ ତାକୁ ପ୍ରଥମେ ଦେଖିଲି ତାର ବୟସ ପ୍ରାୟ କୋଡ଼ିଏ ବର୍ଷ ହୋଇଥିଲା । ତା'ର ସୁନ୍ଦର କେଶରାଶି, ପ୍ରଶାନ୍ତ ମୁଖ ମଣ୍ଡଳ, ସ୍ୱଭାବ ସୁଲଭ କର୍ମତତ୍ପରତା ଓ ଦୀର୍ଘକାୟ ଚେହେରା ତାକୁ ଜଣେ ଅନିନ୍ଦ୍ୟ ସୁନ୍ଦରୀ ତରୁଣୀରେ ପରିଣତ କରିଥିଲା । ସେ ଅତ୍ୟନ୍ତ ଦୁଃସାହସିନୀ ଥିଲା । କୌଣସି କାର୍ଯ୍ୟ ତା ପକ୍ଷରେ ଅସାଧ୍ୟ ନଥିଲା । 'ଗ୍ୟାସ୍' ପାଇଁ ବଛା ହୋଇଥିବା ମହିଳାମାନଙ୍କର ପରିଚୟ ପତ୍ରଗୁଡ଼ିକୁ ଫାଇଲ୍‌ରୁ କାଢ଼ିନେଇ ତାହା ବଦଳରେ ବହୁଦିନରୁ ମୃତ ମହିଳାଙ୍କ ପରିଚୟ ପତ୍ର ଅବଲୀଳା କ୍ରମେ ରଖିଦେଇ ପାରୁଥିଲା । ତାହାର ସେହି ଦୁଃସାହସିକତା ଓ ଦକ୍ଷତା

ଯୋଗୁଁ ବହୁ ବନ୍ଦିନୀମାନଙ୍କ ଜୀବନ ରକ୍ଷା ହୋଇଥିଲା । ସେ ବନ୍ଦୀ ପରିବହନ ଓ ବନ୍ଦୀ ଚାଲାଣ ସମ୍ପର୍କରେ ବହୁ ସମ୍ବାଦ ଆମକୁ ଜଣାଉଥିଲା । ସେ ନିୟମିତ ରେଡିଓ ଶୁଣି ଯୁଦ୍ଧ ଖବର ମଧ୍ୟ ଆମକୁ ଦେଉଥିଲା ଏବଂ ଖଣ୍ଡେ ଖଣ୍ଡେ ଜର୍ମାନୀ ଖବର କାଗଜ ମଧ୍ୟ ଆଣୁଥିଲା ।

ପୋଲାଣ୍ଡର ଲୁବଲିନ୍ ସହର (ଲେଖିକାଙ୍କର ଜନ୍ମସ୍ଥାନ)କୁ ରୁଷିଆ ଓ ପୋଲାଣ୍ଡର ସୈନ୍ୟମାନେ ନାତ୍‌ସୀ ସୈନ୍ୟମାନଙ୍କଠାରୁ ଛଡ଼ାଇ ଆଣିବା ସମ୍ବାଦ ଆମକୁ ଜଣାଇବା ବେଳେ ତାହାର ଆନନ୍ଦର ସୀମା ରହୁ ନଥିଲା । ସେ ଜଣେ ଖୁସ୍ ମିଜାଜ୍‌ର ଝିଅ ଓ ଖୁବ୍ ତେଜୀୟାନ୍ ଥିଲା । ଆଉସ୍‌ଭିତ୍‌ଜ୍‌ରେ ସମସ୍ତେ ବିଶ୍ୱାସ କରୁଥିଲେ ଯେ ତାହାର ଅଦମ୍ୟ ସ ହସିକତା ଓ ନିର୍ଭୀକତା ଯୋଗୁଁ ତାଡେୟୁସ୍ ତାହା ପ୍ରତି ଆକୃଷ୍ଟ ହୋଇଥିଲା । ମୁଁ ସେ ସମ୍ପର୍କରେ ତା ସହ କେବେ କଥା ହେଉ ନଥିଲି । କିନ୍ତୁ ମୋର ସର୍ବଦା ଦୃଢ଼ ଧାରଣା ଥିଲା ଯେ ମାଲାର ଗର୍ବୋନ୍ନତ ମସ୍ତକ, ସାହସ ଓ ଲୋକଶକ୍ତି ଉପରେ ତା'ର ଅଖଣ୍ଡ ବିଶ୍ୱାସ ତା' ଭିତରେ ଗୋଟାଏ ଭାବୋଚ୍ଛ୍ୱାସ ସୃଷ୍ଟି କରିଥିଲା ।

ଆମେ ଭାବୁଥିଲୁ ''ମାଲା ଓ ତାଦେୟୁସ୍ ଏକତ୍ର ଥିବେ ଏବଂ ପୂର୍ଣ୍ଣ ସ୍ୱାଧୀନତା ଅନୁଭବ କରୁଥିବେ ।'' ଏହା ମଧ୍ୟ ଜାଣିଥିଲୁ ଯେ ଜର୍ମାନମାନେ ଏତେ ସହଜରେ ସେ ଦୁହିଁଙ୍କୁ ଖୋଜାଖୋଜି ନକରି ଛାଡ଼ି ଦେବେ ନାହିଁ । ଶିବିର ଏରିଆରେ ସେମାନଙ୍କୁ ନ ପାଇଲେ ସହରକୁ ଛୁଟିବେ । ଖୋଜିବାରେ ଆଦୌ ଢିଲା କରିବେ ନାହିଁ । ଜୀବନ ଓ ସ୍ୱାଧୀନତା ପାଇଁ ଲଢ଼େଇ ତଥାପି ଶେଷ ହୋଇ ନଥିଲା ।

ପଳାୟନର ତିନି ସପ୍ତାହ ପରେ ଅକ୍ଟୋବର ମାସର ଶେଷ ଆଡ଼କୁ ଖବର ମିଳିଲା ଯେ ମାଲା ଓ ତାହାର ପ୍ରେମିକ ଧରା ହୋଇ ଆସିଛନ୍ତି । କାର୍ବୋଓ୍ୱାଇସ୍ ନାମକ ସ୍ଥାନରେ ସେମାନଙ୍କୁ ଧରା ହେବା ପରେ ଭୀଷଣ ମାଡ଼ ଦିଆଯାଇ କ୍ୟାମ୍ପକୁ ଅଣାଯାଇଛି । ଆମ ବ୍ଲକ୍‌କୁ ପୋଷାକପତ୍ର ଆଣୁ ଥିବା ଜଣେ କର୍ମଚାରୀଠାରୁ ଆମେ ଶୁଣିଲୁ ଯେ ସେମାନଙ୍କୁ ବଙ୍କରରେ ରଖାଯାଇଛି । ସେମାନେ କିପରି ପଳାଇ ଯାଇ ପାରିଲେ ଏବଂ ଆଉସ୍‌ଭିତ୍‌ଜ୍‌ର ଗୋପନୀୟତା କେଉଁମାନଙ୍କ ଆଗରେ ସେ ପ୍ରକାଶ କରିଛନ୍ତି, ସେକଥା ଜାଣିବା ପାଇଁ ନାତ୍‌ସୀ ଆତଙ୍କବାଦୀମାନେ ସେ ଦୁଇଜଣଙ୍କ ସହ ଲାଗିଛନ୍ତି । ସେମାନେ ସହଜରେ ଅନୁମାନ କରିପାରିଥିଲେ ଯେ କାହାର ବିନା ସାହାଯ୍ୟରେ ମାଲା ଓ ତା'ର ବନ୍ଧୁ ପ୍ରେଣ୍ଡ୍ କଦାପି ଯାଇପାରି ନଥାନ୍ତେ ଏବଂ ସେମାନେ ନିଶ୍ଚୟ ଆଉସ୍‌ଭିତ୍‌ଜ୍‌ରେ କୌଣସି ଗୁପ୍ତ ସଙ୍ଗଠନ ସହ କାର୍ଯ୍ୟ କରୁଥିଲେ । ପ୍ରତିଦିନ ବହୁବାର ସେମାନଙ୍କୁ ଜେରା କରିବାକୁ ନିଆଯାଉଥିଲା ଏବଂ ସେ ଦୁହିଁଙ୍କ ଉପରେ ଅକଥନୀୟ ନିର୍ଯାତନା ଦିଆଯାଉଥିଲା । ଆମେ ଭାବୁଥିଲୁ ''ସେମାନେ ସେହି ନିର୍ଯାତନାକୁ କ'ଣ ସହ୍ୟ କରିପାରିବେ ? ସେମାନେ ଭାଙ୍ଗି ପଡ଼ିବେ କି ?''

ସାରା କ୍ୟାମ୍ପରେ ସମସ୍ତଙ୍କର ସେହି ଗୋଟିଏ ଚର୍ଚ୍ଚା ଏବଂ ସେହି ପ୍ରେମୀ ଯୁଗଳ ସମସ୍ତଙ୍କ ପକ୍ଷରେ ଏକ କୌତୁହଳପ୍ରଦ ପ୍ରତୀକ ଭାବରେ ବିବେଚିତ ହେଉଥିଲେ । ସେମାନଙ୍କ ପ୍ରେମ ବ୍ୟାପାର, ସାହସିକ ସଂଗ୍ରାମ ଓ ନିର୍ଯାତନା ଆଉସ୍‌ଭିଟ୍ସ୍‌ରେ ରୋମିଓ ଜୁଲିଏଟ୍‌ଙ୍କ ବିୟୋଗାନ୍ତ ଘଟଣାବଳୀ ଭାବରେ ପରିଗଣିତ ହୋଇଥିଲା । ଅବଧାରିତ ମୃତ୍ୟୁର ସମ୍ମୁଖୀନ ହୋଇଥିବା ଗ୍ରୀକ୍ ନାୟକଙ୍କ ଭଳି ହୋଇଥିଲା ସେମାନଙ୍କର ଅବସ୍ଥା । ସେମାନଙ୍କୁ ମୃତ୍ୟୁମୁଖରୁ ରକ୍ଷା କରିବା କଥା ଚିନ୍ତାକରି ଆମେ ନିଜକୁ ଅସହାୟ ମନେ କରୁଥିଲୁ । ସେ ଦୁହିଁଙ୍କ ପାଇଁ କି ପ୍ରକାର ମୃତ୍ୟୁଦଣ୍ଡ ଦେବାକୁ ଆତଙ୍କବାଦୀମାନେ ଯୋଜନା କରୁଥିଲେ ତାହାର କୌଣସି ସୂଚନା ପାଉ ନଥିଲୁ । ଆମେ ଜାଣିଥିଲୁ ଯେ ଯିଏ ସେମାନଙ୍କୁ ରକ୍ଷା କରିବାକୁ ଚେଷ୍ଟା କରିବ ତା'ର ମୃତ୍ୟୁ ସୁନିଶ୍ଚିତ ।

ସେହି ଘଟଣାର ବିୟୋଗାନ୍ତକ ପରିସମାପ୍ତିକୁ ପ୍ରତ୍ୟକ୍ଷ କରିବାପାଇଁ ଆମ୍ଭମାନଙ୍କୁ କିଛିଦିନ ଅପେକ୍ଷା କରିବାକୁ ପଡ଼ିଥିଲା । ସେଦିନ ଥିଲା ଏକ ଶୀତ ରାତ୍ରି ଓ କୁହୁଡ଼ିରେ ଆଚ୍ଛନ୍ନ । କର୍ମୀମାନେ କର୍ମକ୍ଷେତ୍ରରୁ ଫେରୁଥିଲେ । ବ୍ଲକ୍ ସାମନାରେ ହାଜିରା ନିଆଗଲା । ତା' ପରେ ସେମାନେ ଘା' ଡ୍ରେସିଂ କରିବାକୁ ଅକ୍ଷମଶାଳାକୁ ଯିବାକଥା । କିନ୍ତୁ ସେଦିନ ତାହାର ବ୍ୟତିକ୍ରମ ହେଲା । କର୍ମୀମାନେ ଅକ୍ଷମଶାଳାକୁ ନଫେରି ସମବେତ ମହିଳା ବନ୍ଦୀମାନଙ୍କୁ 'କ' ଓ 'ଖ' ଶ୍ରେଣୀରେ ବିଭକ୍ତ କଲେ । ସେଠାରେ ଅନୁଷ୍ଠିତ ହେଲା ଏକ ନକଲି ବିଚାରାଳୟ (Mock Tribunal) । ଶେଷରେ ପୋତା ହେଲା ଏକ ଫାଶୀଖୁଣ୍ଟ । ଫାଟକର ଦୁଇ ପାର୍ଶ୍ୱରେ ଦୁଇଟି ଶ୍ରେଣୀରେ ବିଭକ୍ତ ଦଳକୁ ଛିଡ଼ା ହେବାକୁ ନିର୍ଦ୍ଦେଶ ହେଲା । ସମସ୍ତ ୱାର୍ଡନ୍ ଓ ସର୍ଦ୍ଦାରମାନେ ମଧ୍ୟ ସେଠାରେ ଏକତ୍ରିତ ହେଲେ । ତାପରେ ଆତଙ୍କବାଦୀଙ୍କ ଗହଣରେ ପହଞ୍ଚିଲା କମାଣ୍ଡାଣ୍ଟ ଇଲ୍‌ସା କୋଚ । ସେହି ରକ୍ତାକ୍ତ ଉତ୍ସବର ନାୟିକାର ଆଗମନକୁ ଆମ୍ଭେମାନେ ଅପେକ୍ଷା କଲୁ ଗେଟ୍ ପାଖରେ । କିଏ ସେଠାରେ ଫାଶୀ ପାଇବ, ତାହା ଆମକୁ ଅଛପା ନଥିଲା । ସେଥିପାଇଁ ଆମକୁ ଅଧିକ ସମୟ ଅପେକ୍ଷା କରିବାକୁ ପଡ଼ି ନଥିଲା । ଅତ୍ୟନ୍ତ ଦୃଢ଼ ଅଥଚ ଅତି ଧୀର ପଦକ୍ଷେପରେ ପ୍ରବେଶ କଲା 'ମାଲା' । ତାର ଦୁଇପଟରେ ଚାଲିଥିଲେ ଦୁଇଜଣ ପୁରୁଷ ଆତଙ୍କବାଦୀ । ସମସ୍ତଙ୍କ ଆଗରେ ଚାଲିଥିଲା ଆଉ ଜଣେ ବନ୍ଦୀ । ସେ ରାସ୍ତା ସଫା କରୁଥଲା । ମାଲା ପହଞ୍ଚିବା ସଙ୍ଗେ ସଙ୍ଗେ ଦୀର୍ଘ ନିଶ୍ୱାସ ସହ ସହସ୍ର କଣ୍ଠରୁ ଅସ୍ପଷ୍ଟ ଶବ୍ଦଟି ଭାସି ଆସିଲା- ''ମାଲା, ମାଲା'' । ତାର ମଳିନ ମୁଖ ମଣ୍ଡଳରେ ଉକୁଟି ଉଠିଲା ଏକ ସ୍ମିତ ହାସ୍ୟରେଖା । ହତାଶା ଜର୍ଜରିତ ମୋ କଣ୍ଠରୁ ବାହାରି ଆସିଲା, 'ମାଲା' । ଧୀର ପଦକ୍ଷେପରେ ମାଲା ଆସୁଥିଲା ଗେଟ୍ ପାଖକୁ । ପ୍ରତି ପଦକ୍ଷେପରେ ସେ ମୃତ୍ୟୁର ଅଧିକ ନିକଟବର୍ତ୍ତୀ ହେଉଥିଲା । ସେହି ଉଚ୍ଚ ମଣ୍ଡପରେ ସେ କ୍ୟାମ୍ପ୍ କମାଣ୍ଡର ପାଖରେ ଛିଡ଼ା ହେଲା । ଇଲସା

ଆଗକୁ ଆସି ତାହାର ଭାଷଣ ଆରମ୍ଭ କଲା । କୌଣସି ବନ୍ଦୀର ମୃତ୍ୟୁ ଦଣ୍ଡକୁ ଆଡ଼ମ୍ବରପୂର୍ଣ୍ଣ କରିବା ଥିଲା ଆଉସ୍‌ଭିଦ୍‌ଜ୍‌ରେ ତାହା ପ୍ରଥମ ଘଟଣା । ଇଲାସାର ଭାଷଣ ଆରମ୍ଭ ହେବାରୁ ସମସ୍ତ ଅଧସ୍ତନ କର୍ମଚାରୀ ଓ ଆତଙ୍କବାଦୀମାନେ ଇଲାସାକୁ ନିର୍ନିମେଷ ନୟନରେ ଅନାଇ ରହିଲେ । ଇଲାସାର ପଛପଟ ଉହାଡ଼ରେ ଛିଡ଼ା ହୋଇଥିବା ମାଲା ସେହି ସୁଯୋଗରେ ପୋଷାକ ଭିତରେ ଲୁଚାଇ ରଖିଥିବା ଏକ ତୀକ୍ଷ୍ଣ କ୍ଷୁରରେ ସେ ବାମହସ୍ତର ସମସ୍ତ ରକ୍ତବାହୀ ଧମନୀକୁ କାଟିବାକୁ ଲାଗିଲା । ଅନ୍ୟମାନେ ଏଭଳି ଅନ୍ୟମନସ୍କ ଥିଲେ ଯେ କେହି ମାଲାକୁ ଦେଖି ପାରୁ ନଥିଲେ । ରକ୍ତାକ୍ତ ବାମ ହସ୍ତରେ କ୍ଷୁରକୁ ଧରି ସେ ଦକ୍ଷିଣ ହସ୍ତର ଧମନୀ ଗୁଡ଼ିକ ମଧ୍ୟ କାଟିଦେଲା । ସେଥିରୁ ବହି ଚାଲିଲା ଅଜସ୍ର ରକ୍ତଧାର । ସେହି ଦୃଶ୍ୟକୁ ଦେଖୁଥିବା ବନ୍ଦିନୀମାନେ ମଧ୍ୟ ଉଁ ଚୁଁ କରୁ ନଥିଲେ । କେବଳ ସହସ୍ର ବକ୍ଷସ୍ଥଳରୁ ଗୁଞ୍ଜରି ଉଠୁଥିଲା ଗୋଟିଏ ଶବ୍ଦ- ହାୟ ହାୟ । ପରୀ କାହାଣୀ ମାନଙ୍କରେ ସର୍ବଶେଷରେ ଯେପରି ହଠାତ୍ ଗୋଟିଏ ଶୁଭଙ୍କର ଘଟଣା ଘଟିଯାଏ, ସେଦିନ ସେଠାରେ ସେହିଭଳି ଯଦି ଘଟିଥାନ୍ତା ସେହି 'ହାୟ ହାୟ' ସ୍ୱରରେ ଇଲାସା କୋଚ ଓ ଆତଙ୍କବାଦୀମାନେ ଦଣ୍ଡାୟମାନ ହୋଇଥିବା ମଞ୍ଚ ମଧ୍ୟ ବିଧ୍ୱସ୍ତ ହୋଇଯାଇଥାନ୍ତା ।

ଇଲାସା ତାହାର ଭାଷଣ ବନ୍ଦ କରି ପଛକୁ ଅନାଇ ଦେଇ ଦେଖିଲା ମାଲା ତାହାର ଜୀବନର ଶେଷ ମୁହୂର୍ତ୍ତରେ ଇଲାସାର ବିଚାରକୁ ଅବମାନନା କରି ମୃତ୍ୟୁ ମୁଖରେ ଉପନୀତା । ମାଲା ହାତରୁ କ୍ଷୁର ଛଡ଼ାଇ ଆଣିବା ପାଇଁ ସେ ତା' ଉପରକୁ ଝୁଙ୍କି ପଡ଼ିଲା । କିନ୍ତୁ ମାଲା ତାହାର ରକ୍ତାକ୍ତ ହାତକୁ ମୁଠାକରି ମାରିଲା ଏକ ଶକ୍ତ ମୁଥ ଇଲାସାର ମୁହଁ ଉପରକୁ । ରକ୍ତରେ ଚିତ୍ର ବିଚିତ୍ର ହୋଇଗଲା ତା'ର ମୁଖ ମଣ୍ଡଳ । ନାତ୍‌ସୀ ଆତଙ୍କବାଦୀ ମାଲା ହାତରୁ ଛଡ଼ାଇ ନେଲା କ୍ଷୁରକୁ । ସର୍ଦ୍ଦାରମାନେ ଅନ୍ୟ ବନ୍ଦିନୀମାନଙ୍କୁ ଘଉଡ଼େଇ ନେଲେ ବ୍ଲକ୍ ଭିତରକୁ । ବିଚରା ଇଲାସା ତାର ଭାଷଣ ଶେଷ କରିବାକୁ ସୁଯୋଗ ପାଇଲା ନାହିଁ ।

ମାଲାକୁ ଆଉ ଫାଶୀ ଖୁଣ୍ଟରେ ଝୁଲା ଯାଇ ପାରିଲା ନାହିଁ । ଆତଙ୍କବାଦୀମାନେ ମାଲାର ଅର୍ଦ୍ଧମୃତ ଶରୀରକୁ ଅକ୍ଷମଶାଳା ଭିତରକୁ ଟେକି ନେଇ ଗଲେ । ଧୀରେ ଧୀରେ ମାଲାର ଶରୀର ଭୂଇଁ ଉପରେ ଲୋଟି ଯାଉଥିଲା ଏବଂ ଦୁଇ ହାତରୁ ଝରି ଯାଉଥିଲା ଅବିଶ୍ରାନ୍ତ ରକ୍ତଧାର । ମହିଳା ପୋଲିସ୍‌ମାନେ ତାକୁ ବଞ୍ଚାଇବାକୁ ତା ଆଡ଼କୁ ମାଡ଼ିଗଲେ । କାରଣ କ'ଣ ? ବଞ୍ଚାଇ ଦେଲେ ଆଉ ଥରେ ତାକୁ ମାରି ଦିଆଯାଇପାରିବ । ମାଲା ସଞ୍ଜ୍ଞାହୀନ ଅବସ୍ଥାରେ ସେହି ରକ୍ତ ସ୍ରୋତରେ ବୁଡ଼ି ଯାଇଥିଲା ।

କିନ୍ତୁ ସେମାନେ ମାଲାକୁ ଅକ୍ଷମଶାଳାରେ ଶାନ୍ତିରେ ମରିବାକୁ ନଦେବା ଉଦ୍ଦେଶ୍ୟରେ ଏକ ଠେଲା ଗାଡ଼ି ମଗାଇ ସେଥିରେ ମୁମୂର୍ଷୁ ମାଲାକୁ ନେଇଗଲେ ଗ୍ୟାସ୍

ଚୁଲ୍ଲୀ ଉଦ୍ଦେଶ୍ୟରେ । ମାଲାର ସୁନ୍ଦର ମଥାଟି ସେ ଗାଡ଼ିରେ ଧରୁ ନଥିଲା ଏବଂ ତାକୁ ନେଲା ବେଳେ ତାର ରକ୍ତାକ୍ତ ହାତ ଦୁଇଟି ଝୁଲି ପଡ଼ିଥିଲା ଦୁଇପଟକୁ । ସେହି ଶେଷଥର ପାଇଁ ମୁଁ ମାଲାକୁ ଦେଖିଥିଲି ।

ପରେ ଅନ୍ୟବନ୍ଦୀମାନଙ୍କଠାରୁ ଜାଣିବାକୁ ପାଇଲି ଯେ ସେହି ଠେଲା ଗାଡ଼ି ମହିଳା ଓ ପୁରୁଷ ବ୍ଲକ୍ ମଝିରେ ଥିବା ଗେଟ୍ ବାଟେ ଯିବାବେଳେ ସେଠାରେ ଝୁଲୁଥିଲା ତାଦେୟୁସ୍‌ର ଶବ, ତା'ର ପ୍ରେମିକ । କ୍ଷୀଣ କଣ୍ଠରେ ମାଲା କହୁଥିଲା "ବିଦାୟ ବନ୍ଧୁ ବିଦାୟ ।"

ତାହାର ଜୀବନ୍ତ ଶରୀରକୁ ସେହି ଗ୍ୟାସ୍ ଚୁଲ୍ଲୀ ଭିତରକୁ ନିକ୍ଷେପ କରିବାକୁ ଇଚ୍ଛାସା ଚାହୁଥିଲା । ତାହା ହୋଇଥିଲେ ମାଲା ଭଣ୍ଡୁର କରିଦେଇଥିବା ଫାଶୀ ଦଣ୍ଡ ଓ ଶହ ଶହ ମହିଳାଙ୍କ ସମ୍ମୁଖରେ ତାକୁ ମାରିଥିବା ମୁଥର ଉପଯୁକ୍ତ ପ୍ରତିଶୋଧ ନେଇ ପାରିଥାନ୍ତା । କିନ୍ତୁ ଚୁଲ୍ଲୀରେ କାର୍ଯ୍ୟ କରୁଥିବା ପୁରୁଷ ଆତଙ୍କବାଦୀମାନେ ତା'ର ନିର୍ଦ୍ଦେଶ ମାନିଲେ ନାହିଁ । ସେ ମାଲାକୁ ଗୁଳି କରିଦେଲା ଓ ତା ପରେ ତାକୁ ଚୁଲ୍ଲୀ ଭିତରକୁ ଫୋପାଡ଼ି ଦେଇଥିଲା ।

ଏଭଳି ଭାବରେ ମାଲା ଓ ତାଦେୟୁସ୍ ମୃତ୍ୟୁ ବରଣ କରିଥିଲେ । ସେ ଦୁଇଜଣଙ୍କ ପୂରାନାମ ମୁଁ ମନେ ରଖି ପାରି ନଥିଲି । ଲୋକଙ୍କର ପ୍ରେମ ଓ ମୃତ୍ୟୁ କେତେ ସୁନ୍ଦର । କେତେ ସାହସିକତା ପୂର୍ଣ୍ଣ ଅଥଚ କେତେ ହୃଦୟ ବିଦାରକ । ସେହି ଅସଭ୍ୟ ଯୁଗରେ ସେମାନଙ୍କର ପ୍ରେମ ଓ ମୃତ୍ୟୁ ଏକ ବିୟୋଗାନ୍ତକ ନାଟକ ଭଳି ।

■■■

– ୨୭ –

# ଧର୍ମଗୁରୁମାନଙ୍କ ନୃତ୍ୟ

ଆଉସ୍‌ଭିତ୍‌ଜ୍‌ରେ ଏମିତି ଗୋଟିଏ ଦିନ ପହଞ୍ଚିଥିଲା ଯେଉଁଦିନ ମାଗଦା ଅକ୍ଷମଶାଳା ଆଗରେ ଛିଡ଼ା ହୋଇ ତା'ର ପାରୁ ପର୍ଯ୍ୟନ୍ତ ଉଚ୍ଚ କଣ୍ଠରେ ଡାକ ଛାଡ଼ିଲା, "ରେ ନିର୍ବୋଧ ଲୋକମାନେ । ସେମାନେ ତୁମ୍ଭମାନଙ୍କୁ ପ୍ରତାରିତ କରୁଛନ୍ତି । ଜାଣି ରଖ, ତୁମ୍ଭେମାନେ ଗ୍ୟାସ୍ ଚ୍ୟାମ୍ବରକୁ ମରିବାକୁ ଯାଉଛ ।"

ସେଦିନ ବିଳମ୍ବ ଅପରାହ୍ନରେ ପରିବହନ ଗାଡ଼ି ଆସି ପହଞ୍ଚିଥିଲା । ଟ୍ରେନ୍ ଆସିବାର ଶବ୍ଦ ଓ ଆତଙ୍କବାଦୀଙ୍କର ହୁଇସିଲ୍ ଆମକୁ ଶୁଭିଲା । ଆମେ ଗେଟ୍ ବନ୍ଦ କରିଦେଲୁ ଏବଂ ଗେଟ୍‌ରେ ଥିବା ଗୋଟିଏ ଭଙ୍ଗା ଫାଙ୍କରେ ବାହାରର ଘଟଣାବଳୀ ଉପରେ ଆଖି ପକେଇଲୁ । ସାଧାରଣତଃ ଅକ୍ଷମଶାଳା ସାମନାରେ ଟ୍ରେନ୍ ଗୁଡ଼ିକ ଅଟକୁଥିବାରୁ

ଆମେମାନେ ସେହି ଦୃଶ୍ୟାବଳୀ ଗୁଡ଼ିକ ଦେଖିବାରେ ଅଭ୍ୟସ୍ତ ହୋଇଯାଇଥିଲୁ । ସେଦିନ ଭୀଷଣ ଗରମ ଓ ଗୁଳୁଗୁଳି । ବାୟୁ ମଣ୍ଡଳ ଦୁର୍ଗନ୍ଧରେ ଭାରାକ୍ରାନ୍ତ ଥିଲା । ଲୋକମାନେ ଦଳ ଦଳ ହୋଇ ୱାଗନ୍‌ରୁ ବାହାରୁଥିଲେ । ସ୍ୱାଭାବିକ ଭାବରେ ଡାକ୍ତର ମେଞ୍ଜେଲ୍ ସେଠାରେ ଉପସ୍ଥିତ ରହି 'ଗ୍ୟାସ୍' ପାଇଁ ଲୋକ ବାଛୁଥିଲା । ଗୋଟିଏ ୱାଗନ୍‌ରୁ ବାହାରିଲେ ପ୍ରାୟ ଶହେ ଜଣ ଇହୁଦୀ ଧର୍ମଗୁରୁ । ସମସ୍ତେ ଲମ୍ୱା କଳା ସିଲ୍କ କୋଟ୍ ଏବଂ କଳା ହ୍ୟାଟ୍ ପରିହିତ ହୋଇଥିଲେ । କେତେକ ସେହି ଗରମରେ ମଧ୍ୟ ଲୋମ ହ୍ୟାଟ୍ ପିନ୍ଧିଥିଲେ । ଅଧିକାଂଶ ଥିଲେ ବେଶ୍ ବୟସ୍କ ଏବଂ ସଭିଙ୍କର ଲମ୍ବ ଧଳା ଦାଢ଼ି ଥିଲା । ସେମାନଙ୍କୁ ନାତ୍‌ସୀମାନେ କେଉଁଠୁ ପାଇଲେ ? ଗୋଟାଏ ଗାଡ଼ି ଭର୍ତ୍ତି ଏତେଗୁଡ଼ିଏ ଧର୍ମଗୁରୁ କିପରି ମିଳିଗଲେ ? ଗାଡ଼ିଟି ହଙ୍ଗେରୀରୁ ଆସିଥିବାରୁ ଆମେ ଭାବିଲୁ ଯେ ସେମାନେ ସମସ୍ତେ ନିଶ୍ଚୟ ହଙ୍ଗେରୀର ଅଧିବାସୀ ।

ମେଞ୍ଜେଲ୍ ସେମାନଙ୍କୁ ଗୋଟିଏ ପାଖରେ ଛିଡ଼ା କରାଇଲା । ତାହା ଦେଖି ଆମେ ଅନୁମାନ କଲୁ ଯେ ମେଞ୍ଜେଲ୍ ବୋଧହୁଏ ସେମାନଙ୍କ ପାଇଁ କିଛି ସ୍ୱତନ୍ତ୍ର ବ୍ୟବସ୍ଥା କରୁଅଛି । ରେଲ୍ ରାସ୍ତା ଓ ଅକ୍ଷମଶାଳା ମଝିରେ ଖାଲ ଖମାଣ ଭରା ଗୋଟାଏ ପତିତ ପଡ଼ିଆ ଥିଲା । ସେଠାରେ ଗୋଡ଼ି, ପଥର, ଭଙ୍ଗା ଜିନିଷ ଓ ଆବର୍ଜନା ଚାରିଆଡ଼େ ବିଛାଡ଼ି ହୋଇ ପଡ଼ିଥିଲା । ଆତଙ୍କବାଦୀମାନେ ସେମାନଙ୍କୁ ସେହି ପଡ଼ିଆ ଭିତରକୁ ଘଉଡ଼ାଇ ଦେଲେ । ଆତଙ୍କିତ ଓ ଭୀତତ୍ରସ୍ତ ଧର୍ମଗୁରୁମାନେ ପରସ୍ପର ଲଗାଲଗି ହୋଇ ସେଠାରେ ଛିଡ଼ା ହୋଇଗଲେ । ଅବଶ୍ୟ ମେଞ୍ଜେଲ୍‌ର ଅର୍ଡର ଆମକୁ ଶୁଭୁ ନଥିଲା । କିନ୍ତୁ ଦେଖିଲୁ ଧର୍ମଗୁରୁମାନେ ସବୁଆଡ଼କୁ ଖେଳେଇ ହୋଇଗଲେ ଏବଂ ସେହି ଖାଲ ଢିପ ପଡ଼ିଆରେ ବୃତ୍ତାକାରରେ ଛିଡ଼ା ହୋଇ ନୃତ୍ୟ କରିବାକୁ ଲାଗିଲେ । ନାଚୁ ନାଚୁ କେତେକ ଝୁଣ୍ଟି ପଡୁଥିଲେ । କିନ୍ତୁ ଉଠିପଡ଼ି ପୁନର୍ବାର ନୃତ୍ୟରେ ଯୋଗ ଦେଉଥିଲେ । ତାହା ଫଳରେ ଅବଶ୍ୟ ନୃତ୍ୟରେ ଛନ୍ଦ ପତନ ହେଉଥିଲା । ତା' ପରେ ଶୁଣାଗଲା ଘନ ଘନ ଚାବୁକ୍ ପ୍ରହାର । ଜଣେ ବୃଦ୍ଧ ତଳେ ପଡ଼ିଗଲେ । କିନ୍ତୁ ସଙ୍ଗେ ସଙ୍ଗେ ଉଠିପଡ଼ି ନୃତ୍ୟରେ ଯୋଗଦେବାର ଦେଖାଗଲା ।

ତା'ପରେ ମେଞ୍ଜେଲ୍ ଆଉ ଗୋଟାଏ ଅର୍ଡର ଦେଲା । ଯାହା ଫଳରେ ନୃତ୍ୟରତ ବୃଦ୍ଧମାନେ ଉପରକୁ ଚାହିଁ ଓ ହାତ ଟେକି ନାଚିବାକୁ ଲାଗିଲେ । ନୂଆ ଇହୁଦୀ ନୃତ୍ୟ ନାଚିବା ପାଇଁ ମେଞ୍ଜେଲ୍ ବୋଧହୁଏ ପୁଣି ଅର୍ଡର ଦେଲା । ସେମାନେ କାନ୍ଧକୁ ସଙ୍କୁଚିତ କରି ଈଶ୍ୱରଙ୍କୁ ପ୍ରାର୍ଥନା କରିବା ମୁଦ୍ରାରେ ନାଚିଲେ, ଯଦିଓ ସେମାନେ ଜାଣିଥିଲେ ଯେ ଯେଉଁ ଈଶ୍ୱରଙ୍କୁ ଭକ୍ତି ସହକାରେ ସେମାନେ ଜୀବନ ସାରା ପ୍ରାର୍ଥନା କରି ଆସିଥିଲେ, ସେ ସେମାନଙ୍କୁ ପରିତ୍ୟାଗ କରି ଅଛନ୍ତି ।

ମେଙ୍ଗେଲ୍ ପୁଣି ନିର୍ଦ୍ଦେଶ ଦେଲା, ''ଗୀତ ଗାଅ'' । ହଠାତ୍ ଏକ ହୃଦୟସ୍ପର୍ଶୀ ପ୍ରାର୍ଥନା ସଙ୍ଗୀତର ଝଙ୍କାର ଭାସି ଆସିଲା । ଇହୁଦୀ ପର୍ବ ''ୟମ୍ କିପୁର'' (Yom kippur) ର ପୂର୍ବ ସନ୍ଧ୍ୟାରେ (ସିନାଗଗ୍) ଇହୁଦୀ ଧର୍ମମନ୍ଦିରରେ କୋଲ ନିଡ୍ରେଇ (Kol Nidrei)ଙ୍କ ଦ୍ୱାରା ରଚିତ ସେହି ପ୍ରାର୍ଥନା ସଙ୍ଗୀତ ବୋଲାଯାଏ । ଧର୍ମଗୁରୁମାନେ ପଡ଼ିଆର ଚତୁର୍ଦ୍ଦିଗରେ ଘୂରି ଘୂରି ଈଶ୍ୱରଙ୍କ ଉଦ୍ଦେଶ୍ୟରେ ସେହି ଶୋକାପ୍ଲୁତ ଅଭିଳାଷର ସଙ୍ଗୀତ ଗାଇବାକୁ ଲାଗିଲେ । ମନେହେଲା, ସେମାନେ ମେଙ୍ଗେଲ୍‌ର ନିର୍ଦ୍ଦେଶିତ ସଙ୍ଗୀତ ପ୍ରତି କର୍ଣ୍ଣପାତ ନକରି ସେହି ଗୀତ ଗାଇବାକୁ ଲାଗିଲେ ଓ ନାତ୍‌ସୀ ଆତଙ୍କବାଦୀମାନେ ସେମାନଙ୍କୁ ଗ୍ୟାସ୍ ଚ୍ୟାମ୍ବର ଗେଟ୍ ଆଡ଼କୁ ଗୋଡ଼େଇ ନେଇଯାଉଥିଲା ବେଳେ ସୁଦ୍ଧା ସେମାନେ ସେହି ବିକଟ ନୃତ୍ୟ ନାଚୁଥିଲେ । ସେହିପରି ଲାଞ୍ଛନା ଓ ନିର୍ଯାତନା ସତ୍ତ୍ୱେ ସେମାନେ ଇହୁଦୀ ଧର୍ମଗୁରୁଙ୍କ ମହାନ ଦାୟିତ୍ୱକୁ ତଥାପି ବିସ୍ମୃତ ହେଉନଥିଲେ । ଗ୍ୟାସ୍ ଚ୍ୟାମ୍ବର୍‌ର ଗେଟ୍ ପଛରେ ସେମାନେ ଅଦୃଶ୍ୟ ହୋଇଯାଇଥିବା ବେଳେ ମଧ୍ୟ ଶୁଭୁଥିଲା ପ୍ରାର୍ଥନା ସଙ୍ଗୀତ, ''ହେ ଇସ୍ରାଏଲ୍ ଶୁଣ, ''ଈଶ୍ୱର ଏକ ଓ ଅଭିନ୍ନ, ସେ ସର୍ବଦା ଆମ ପାଖରେ ବିଦ୍ୟମାନ ।''

ସେହି ଧର୍ମଗୁରୁଙ୍କ ସହ ଆସିଥିବା ହଜାର ହଜାର ବନ୍ଦୀ ଟ୍ରେନ୍ ପାଖରେ ଛିଡ଼ା ହୋଇ ସେହି ହୃଦୟ ବିଦାରକ ଦୃଶ୍ୟକୁ ଅନେଇ ରହିଥିଲେ । ଠିକ୍ ସେତିକିବେଳେ ଶିକୁଳି ଦିଆ ଅକ୍ଷମଶାଳା ଭିତରେ ରହିଥିବା ଅଠର ବର୍ଷ ବୟସ୍କା ଝିଅ ମାଗଦା ଶିକୁଳି ଖୋଲି ବାହାରକୁ ଯିବାକୁ ଚେଷ୍ଟା କଲା ।

ଆମେ ପାଟିକରି ତାକୁ କହିଲୁ, ''ଏ ତୁ କ'ଣ କରିବାକୁ ଯାଉଛୁ ? ତୁ କ'ଣ ଚାହୁ, ସେମାନେ ଆମକୁ ଗୁଳି କରନ୍ତୁ ?''

''ମୁଁ ମୋ ନିଜ ଇଚ୍ଛାରେ ଯାଉଛି । ମୁଁ ସେମାନଙ୍କୁ କହିବି ଯେ , ''ତୁମେମାନେ ମଧ୍ୟ ଧର୍ମଗୁରୁଙ୍କ ଭଳି ମରିବ । ସେମାନେ ଚିତ୍କାର କରନ୍ତୁ । ନାତ୍‌ସୀମାନେ ସେମାନଙ୍କୁ ଗୋଡ଼ାନ୍ତୁ ଏବଂ ସେହି ଦୌଡ଼ିବା ଅବସ୍ଥାରେ ସେମାନେ ମରନ୍ତୁ ।''

ଆମେ ତଥାପି ପାଟି କରି କହିଲୁ, ''ଦେଖ୍ ସେମାନେ କଦାପି ତୋ କଥା ବିଶ୍ୱାସ କରିବେ ନାହିଁ । ତୋ' କଥା ସେମାନଙ୍କ ନିକଟରେ ପହଞ୍ଚିବା ପୂର୍ବରୁ ତୁ ହୁଏତ ଗୁଳିମାଡ଼ରେ ମରି ଶୋଇଥିବୁ । ସେମାନେ ବଞ୍ଚିବାକୁ ଚାହାନ୍ତି । ତେଣୁ ତୋ'ର ପ୍ରାଣ ତ୍ୟାଗ ବୃଥା ହୋଇଯିବ ।''

ମାଡୋନା (ମଦର ମେରୀ)ଙ୍କ ଭଳି ଦିଶୁଥିବା ସେହି ଲଘୁକେଶୀ ଝିଅଟିକୁ ଆମେ ଗେଟ୍ ପାଖରେ ଅଟକାଇ ଧରିଥିଲୁ । ଆମେ ଭାବିଥିଲୁ, ''ଜୀବନ ଓ ମୃତ୍ୟୁ ମଝିରେ ଥିବା ଅଳ୍ପ କେତୋଟି ମୁହୂର୍ତ୍ତ ପାଇଁ ସେମାନେ ନିଶ୍ଚୟ ମରିବେ ବୋଲି କହିବାରେ ଲାଭ

କ'ଣ ?'' 'ସମ୍ମାନ ଜନକ ମୃତ୍ୟୁ' କଥାର ଅର୍ଥ କ'ଣ ? ଯେଉଁଠି ସାମାନ୍ୟ ପ୍ରତିବାଦ କରିବାର ସୁଯୋଗ ନାହିଁ, ସେଠି 'ସମ୍ମାନ ଜନକ ଓ ଅସମ୍ମାନ ଜନକ' ମୃତ୍ୟୁ ଭିତରେ ପାର୍ଥକ୍ୟ କ'ଣ ? ସେ ସମୟରେ ଆମେମାନେ ତାହାହିଁ ଭାବୁଥିଲୁ । କିନ୍ତୁ କେଉଁଟା ଠିକ୍ ? ଏହାର ଠିକ ଉତ୍ତର ମିଳିବା ସହଜ ନଥିଲା ।

■■■

- ୨୮ -

# ନର୍ତ୍ତକୀର ପ୍ରତିଶୋଧ

୧୯୪୪ ମସିହାର ଗ୍ରୀଷ୍ମ ଋତୁରେ ଦିନରାତି ସବୁବେଳେ ବନ୍ଦୀ ପରିବହନ ଗାଡ଼ି ଆଉସ୍‌ଭିଟ୍‌ଜ୍‌ରେ ପହଞ୍ଚୁଥିଲା । ଆତଙ୍କବାଦୀ କୁକୁରମାନଙ୍କ ଗର୍ଜନ, ଟ୍ରେନ୍‌ର ହୁଇସିଲ୍, ଶହ ଶହ ବୁଟର ଆବାଜ ଏବଂ ବିଭିନ୍ନ ଭାଷାଭାଷୀ ବନ୍ଦୀମାନଙ୍କର କରୁଣ ଚିତ୍କାରରେ ରାତିରେ ଆମ ନିଦ ଭାଙ୍ଗି ଯାଉଥିଲା । ରାତିରେ ଘଟୁଥିବା ସେହି ଅମାନୁଷିକ କାଣ୍ଡ ସାଙ୍ଗକୁ ଉନିଦ୍ର ରଜନୀ ଆମକୁ ଅହରହ ଚେତେଇ ଦେଉଥିଲା ଯେ ଆମେ ଏକ ମୃତ୍ୟୁ କାରଖାନାରେ ଅବସ୍ଥାନ କରୁଥିଲୁ । ତଥାପି ଲାଗୁଥିଲା ଯେପରିକି ସବୁ ଅବାସ୍ତବ ।

ଦିନେ ଜୁଲାଇ ରାତ୍ରିରେ ଆତଙ୍କବାଦୀ ଓ ପୋଲିସ୍ କୁକୁରମାନଙ୍କର ''ଭାଓ ଭାଓ'' ଶବ୍ଦରେ ଆମ ନିଦ ଭାଙ୍ଗିଗଲା । ମୁଁ ମୋ' ସଂକୀର୍ଣ୍ଣ ଶେଯରେ ପଡ଼ି ରହି ଭାବୁଥିଲି, ସେହି ଅଚିହ୍ନା ଆଗନ୍ତୁକମାନଙ୍କର ଅନ୍ତିମ ଯାତ୍ରା କଥା । ହଠାତ୍ ଭାସି ଆସିଲା ଘନଘନ ଗୁଳିର ଶବ୍ଦ ଏବଂ ତା' ପଛେ ପଛେ ବହୁ ଲୋକଙ୍କର ଦୌଡ଼ା ଦୌଡ଼ି ଶବ୍ଦ । ପୁଣି ଗୁଳିର ଶବ୍ଦ, ପୁଣି ଚିତ୍କାର, ଗର୍ଜନ ଓ ଆକୁଳ କ୍ରନ୍ଦନର ସ୍ୱର । ଗ୍ରୀଷ୍ମ ଋତୁର ସେହି ଛୋଟ ରାତିରେ ବହୁ ସମୟ ସେମିତି ଚାଲିଲା । ମୋତେ ଜଣାଗଲା- ଟ୍ରେନ୍ ପାଖରେ କ'ଣ ସବୁ ଅଘଟଣ ଘଟି ଯାଉଛି । ଭାବିଲି ଜର୍ମାନ୍‌ମାନଙ୍କର କୌଣସି ଆଦେଶର ବୋଧହୁଏ ଅବମାନନା କରାଯାଇଛି ।

ସବୁଦିନ ଭଳି ସେଦିନ ହାଜିରା ପୂର୍ବରୁ ମୁଁ ଅକ୍ଷମଶାଳାରେ ପହଞ୍ଚିଗଲି । ସେତେବେଳକୁ ରାତି ପୋଷାକ ମୁଁ ଛାଡ଼ି ନଥିଲି । ଅକ୍ଷମଶାଳାର ପ୍ରବହମାନ ଜଳଧାରାରେ ଧୁଆଧୋଇ ହେବାକୁ ଟିକେ ସୁବିଧା ହେଲା । ଗେଟ୍ ପାଖରେ ଭେଟିଲି ମାରୁସିଆକୁ ।

ସେ କହିଲା, ''ଶୀଘ୍ର ଚାଲ ଅକ୍ଷମଶାଳାକୁ କ'ଣ କରିବାକୁ ହେବ ତାହା ଶୀଘ୍ର ସ୍ଥିର କରିବା ।'' ଆମ ଦୁଇଜଣଙ୍କ ଛଡ଼ା ଆଉ ସବୁ କର୍ମଚାରୀ ସେଠାରେ ପହଞ୍ଚି ଯାଇଥିଲେ ।

ଡାକ୍ତର ମାନ୍‌ସୀର ସ୍ୱେଟର ପିନ୍ଧିଥିବା ଜଣେ ଯୁବତୀକୁ ସେଠାରେ ଦେଖିଲି । ସେ ଜାକିଜୁକି ହୋଇ ବସିଥିଲା । କିନ୍ତୁ ସେ ଏଭଳି ଡରି ଯାଇଥିଲା ଯେ ସେ କ'ଣ କହୁଛି ତାହା ନିଜେ ବି ବୁଝିପାରୁ ନଥିଲା । ଆମେ କିନ୍ତୁ ଯଥାଶୀଘ୍ର ତା' ଠାରୁ ସମସ୍ତ କଥା ଶୁଣିବାକୁ ଚାହୁଁଥିଲୁ । କାରଣ ତା' ପାଇଁ କ' ଣ କରିବାକୁ ହେବ ସେକଥା ଆମକୁ ହିଁ ସ୍ଥିର କରିବାକୁ ହେଉଥିଲା ।

ସେ ଫରାସୀ ଭାଷାରେ କଥା କହୁଥିଲା । ଅଳ୍ପ ଜର୍ମାନୀ ଭାଷା ମଧ୍ୟ ଜାଣିଥିଲା । ମାରୁସିଆ ମାସା ପାଖକୁ ଦୌଡ଼ିଗଲା । ମାସା ଫ୍ରେଞ୍ଚ୍ ଭାଷିଣୀ ହୋଇଥିବାରୁ ଆମର ଆଶା ଥିଲା ଯେ ସେ ଝିଅ ମାସାକୁ ବିଶ୍ୱାସ କରି ସେ କିପରି ଏତେ ସକାଳୁ ସମ୍ପୂର୍ଣ୍ଣ ଉଲଗ୍ନ ଅବସ୍ଥାରେ ସେଠାରେ ପହଞ୍ଚିଛି, ତାହା ପ୍ରକାଶ କରିଦେବ ।

ସେଦିନ ସକାଳେ ମାରୁସିଆ ଅକ୍ଷମଶାଳାରେ ପହଞ୍ଚିବା ବେଳକୁ ଝିଅଟିକୁ ଅର୍ଦ୍ଧ ଉଲଗ୍ନ ଅବସ୍ଥାରେ ଦେଖିଥିଲା । ବ୍ୟାରେକ୍ କାନ୍ଥରେ ଝୁଲୁଥିବା ଖଣ୍ଡେ ଛିଣ୍ଡା କନାକୁ ସେ ଗୁଡ଼େଇ ହୋଇ ପଡ଼ିଥିଲା । ଶୀତରେ ଥରୁଥିବା ସେ ଝିଅଟିକୁ ମାରୁସିଆ ଭିତରକୁ ନେଇ ମାନ୍‌ସୀର ଗୋଟେ ସ୍ୱେଟର ତାକୁ ପିନ୍ଧିବାକୁ ଦେଇଥିଲା । କିନ୍ତୁ ସେହି ପରିସ୍ଥିତିରେ ତାକୁ କିଛି ପଚାରିବାକୁ ଉଚିତ ମନେ କରି ନଥିଲା । ମାସାକୁ ଭେଟିବା ପରେ ସେ ଟିକେ ପ୍ରକୃତିସ୍ଥ ହୋଇ ତାହାର ନିମ୍ନଲିଖିତ ବିବରଣୀ ଆମକୁ ଶୁଣାଇଲା ।

''ଆମେ କାଲି ରାତିରେ ଆଉସ୍‌ଭିଚ୍‌ଜ୍‌ରେ ପହଞ୍ଚିଲୁ । ଆମକୁ ପୁଲିସ୍‌ମାନଙ୍କ ତଦାରେ ଅଣାଯାଇଥିଲା । ସେହି ଟ୍ରେନ୍‌ରେ ସ୍ତ୍ରୀ ପୁରୁଷ ଓ ଶିଶୁ ମିଶି ପ୍ରାୟ ପାଞ୍ଚଶହ ଲୋକ ଥିଲେ । ଆମକୁ ପୂର୍ବ ୟୁରୋପରେ କାମ କରିବାକୁ ନିଆଯିବ ବୋଲି କୁହା ଯାଇଥିଲା । ସେମାନେ ଆମକୁ ଖାଇବାକୁ ଦେଉଥିଲେ ଏବଂ ଆମ ସହ ଭଲ ବ୍ୟବହାର ମଧ୍ୟ କରୁଥିଲେ । ଆମେ ପୋଲାଣ୍ଡ ଭିତର ଦେଇ ଆସିବା ବେଳେ କେତେକ ଅପରିଚିତ ଲୋକ ରାସ୍ତାରେ ପାଟିକରି କହୁଥିଲେ, ''ତୁମ୍ଭମାନଙ୍କୁ ହତ୍ୟା କରିବାକୁ ନିଆଯାଉଛି, ଯାଅ, ପଳାଇଯାଅ ।''

ସେ ବାଜେ କଥା ଗୁଡ଼ାକୁ ଆମେ ଆଦୌ ବିଶ୍ୱାସ କଲୁ ନାହିଁ । ଆମେ କାହିଁକି ପଳେଇବୁ ? ଆମକୁ ତ କାମ କରିବାକୁ ଅଣାଯାଇଛି ଓ ଆମ ସମସ୍ତଙ୍କୁ ଗୋଟାଏ ଜାଗାରେ ରଖାଯିବ । ଆମର ତାହାହିଁ ବିଶ୍ୱାସ ଥିଲା କିନ୍ତୁ ପୋଲାଣ୍ଡ ଅତିକ୍ରମ କରିବା ପରେ ଆମ ସହ ସେମାନେ ଦୁର୍ବ୍ୟବହାର କରିବାକୁ ଆରମ୍ଭ କଲେ ।''

''ଆମେ ଆଉସ୍‌ଭିଚ୍‌ଜ୍‌ରେ ପହଞ୍ଚିବା ବେଳକୁ ଷ୍ଟେସନ୍‌ରେ କେହି ନଥିଲେ । ମନେ ହେଲା ଆମେ ଏପରି ଅବେଳରେ ପହଞ୍ଚିବୁ ବୋଲି ଆଗରୁ କେହି ଜାଣି ନଥିଲେ । ସବୁ ଆଡ଼େ ଅନ୍ଧକାର ଓ ନୀରବତା । ଆମ ତଦାରେ କେତେକ ମା' ଓ ସେମାନଙ୍କର ଛୁଆମାନେ ଥିଲେ ଏବଂ ପ୍ୟାରିସ୍‌ର ଜଣୈକା ନର୍ତ୍ତକୀ ଥିଲା । ସେ ଏକ ଅନିନ୍ଦ୍ୟ ସୁନ୍ଦରୀ

ଝିଅ । ଅତ୍ୟନ୍ତ ଭଦ୍ର ଓ ଖୁସ୍ ମିଜାଜର । ସେ ଡବାରେ ଥିବା ଛୁଆମାନଙ୍କୁ ଭାରି ଖୁସ୍ ରଖି ମା' ମାନଙ୍କୁ ସାହାଯ୍ୟ କରୁଥିଲେ । ସେଦିନ ଭୀଷଣ ଗରମ ପଡ଼ିଥିବାରୁ ଆମେମାନେ ଗାଧୁଆ ପୋଷାକ ପିନ୍ଧିଥିଲୁ । କିନ୍ତୁ ସେ ନର୍ତ୍ତକୀଟି ଟୁ ପିସ୍ ପିନ୍ଧିଥିଲା । ସେହି ଦୀର୍ଘ ରେଳଯାତ୍ରା ଯୋଗୁଁ ସେ ଖୁବ୍ କ୍ଳାନ୍ତ ଶ୍ରାନ୍ତ ହୋଇଯାଇଥିଲା । ଡବାରୁ କେତେବେଳେ ବାହାରିବ ତାକୁ ଅପେକ୍ଷା କରି ଢୁଳାଉଥିଲା ।''

''ବୁଟ୍ ଗୁବାର ଶବ୍ଦ ଓ କୁକୁରମାନଙ୍କ ଘନଘନ ଭୁକା ଶବ୍ଦରେ ଆମମାନଙ୍କର ନିଦ ଭାଙ୍ଗିଗଲା । ଆମର ଗନ୍ତବ୍ୟ ସ୍ଥଳ ପହଞ୍ଚି ଗଲାଣି ଭାବି ଆମ୍ଭେମାନେ ପୋଷାକ ପିନ୍ଧି ପକାଇଲୁ ଏବଂ ଜିନିଷ ପତ୍ର ବନ୍ଧାବନ୍ଧି କରିବାକୁ ଆରମ୍ଭ କଲୁ । କିନ୍ତୁ କର୍କଶ ଶବ୍ଦ କରି ଡବା ଖୋଲିଗଲା ଏବଂ ଡବା ଭିତରକୁ ପଶି ଆସିଲା ଜଣେ ଜର୍ମାନ୍ ପୋଲିସ୍ । ସେ ନିର୍ଦ୍ଦେଶ ଦେଲା ''ସମସ୍ତେ ଉଲଗ୍ନ ହୋଇ ପଡ଼ି ଷ୍ଟେସନକୁ ଚାଲ । ତୁମମାନଙ୍କର ଜିନିଷପତ୍ର ଏଇଠି ଥାଉ ।'' ଆମେମାନେ ଆମ କାନକୁ ବିଶ୍ୱାସ କରି ପାରିଲୁ ନାହିଁ । ତେଣୁ ପଚାରିଲୁ, ''ତୁମେ କ'ଣ କହିବାକୁ ଚାହ ? ଆମେ ସମସ୍ତେ ଉଲଗ୍ନ ହୋଇ ଓହ୍ଲାଇବୁ ?''

''ଆମେମାନେ କିଂ କର୍ତ୍ତବ୍ୟ ବିମୂଢ଼ ହୋଇ ଛିଡ଼ା ହୋଇ ରହିଥିବାରୁ ପୋଲିସ୍ ଜଣକ ତା'ର ବନ୍ଧୁକ କୁନ୍ଦାରେ ଆମକୁ ଭୁଷିବାକୁ ଲାଗିଲା ।'' ଆମେମାନେ ଉଲଗ୍ନ ହେବାକୁ ଆରମ୍ଭ କଲୁ । ପରେ ପରେ କୁକୁର ସହ ଅଧିକ ପୋଲିସ୍ ଡବା ଭିତରେ ପ୍ରବେଶ କଲେ ଏବଂ ଆମମାନଙ୍କୁ ଗୋଡ଼େଇବାକୁ ଲାଗିଲେ । ଗୋଟିଏ ମୁହୂର୍ତ୍ତ ବି ସେଠାରେ ଛିଡ଼ା କରାଇ ଦେଲେ ନାହିଁ । ଆମେମାନେ ସ୍ତ୍ରୀ ପୁରୁଷ ଓ ଶିଶୁମାନେ ପୂରା ଲଙ୍ଗଳା ହୋଇ ଟ୍ରେନ୍‌ରୁ ଓହ୍ଲେଇ ଆଗକୁ ଚାଲିବାକୁ ଆରମ୍ଭ କଲୁ । ନର୍ତ୍ତକୀଟି ତା'ର ପୋଷାକ ନ ଓହ୍ଲାଇ ମୋ ପାଖରେ ଚାଲିଲା । ଆମମାନଙ୍କ ଭିତରେ ସେହି ଏକା ପୋଷାକ ପିନ୍ଧିଥିଲା । ଆତଙ୍କବାଦୀମାନଙ୍କର କମାଣ୍ଡାଣ୍ଟ ତା' ପାଖକୁ ଆସି କହିଲା ''ରେ ସୁନ୍ଦରୀ, ତୋ'ର ପୋଷାକ ଖୋଲ,'' ଧୀର ଗଳାରେ ଏତିକି କହି ତା' ପାଖକୁ ଲାଗି ଆସିଲା । ନର୍ତ୍ତକୀଟି ହଠାତ୍ ଖୋଳ ଭିତରୁ ପିସ୍ତଲ କାଢ଼ି ପୋଲିସ୍‌କୁ ଗୁଳି କରିଦେଲା । ତା' ପରେ ଦୁଇତିନି ପାଦ ପଛକୁ ହଟିଯାଇ ପଳାୟମାନ ଆତଙ୍କବାଦୀମାନଙ୍କୁ ଲକ୍ଷ୍ୟ କରି ଗୁଳି ଚଳାଇବାକୁ ଲାଗିଲା । ଶେଷ ଗୁଳିଟା ତା' ନିଜ ଛାତିରେ ଫୁଟାଇ ଦେଇ ଭୂଇଁରେ ଲୋଟିଗଲା । ଚତୁର୍ଦ୍ଦିଗରେ ଅସାଧାରଣ ଆତଙ୍କ ସୃଷ୍ଟି ହୋଇଗଲା । ଚାରିଆଡୁ ଗୁଳି ଚାଲିଲା ଏବଂ ସର୍ବତ୍ର ଶୁଭିଲା କ୍ରନ୍ଦନ ରୋଳ । ଆମେ ସମସ୍ତେ ଉଲଗ୍ନ ହୋଇଥିବାରୁ ଏବଂ କ୍ୟାମ୍ପ ଦେଖିନଥିବାରୁ ସେହିଭଳି ଛିଡ଼ା ହୋଇ ରହିଲୁ । ମୁଁ ସେହି ବୀରାଙ୍ଗନା ନର୍ତ୍ତକୀର ମୃତଦେହ ନିକଟରେ ଛିଡ଼ା ହୋଇଥିଲି । ହଠାତ୍ ମୁଁ ଅନୁଭବ କଲି ଯେ କେହି ଜଣେ ମୋ ହାତକୁ ଜୋର କରି ଧରି ନେଲା ଏବଂ ଗୋଟାଏ ପୋଷାକ

ମୋ’ ଆଡ଼କୁ ପକାଇ ଦେଲା । ତା’ ପରେ ମୋତେ ଟାଣି ଟାଣି ଗୋଟାଏ ଗେଟ୍ ପର୍ଯ୍ୟନ୍ତ ନେଇ ଆସିଲା । ଶେଷରେ ମୁଁ ଏହିଠାରେ ପହଞ୍ଚିଛି । ସେ ଜଣେ ଜର୍ମାନୀ ସୈନିକ କିନ୍ତୁ ମୋତେ ପଦେ କିଛି କହିଲା ନାହିଁ ।’’

ଏହା ଥିଲା ସେହି ଫରାସୀ ଝିଅଟିର ବକ୍ତବ୍ୟ । ଆମକୁ ତାହା ଏକ ସଙ୍ଗୀତ ଭଳି ଲାଗୁଥିଲା ।

ମାଗଦା, ତାକୁ କହିଲା, ‘‘ତୁ ମଧ୍ୟ ସେହିଭଳି ମରିବୁ ।’’

ଆମେ ଆଉ ସେ ସମ୍ପର୍କରେ ତା ସହ ଅଧିକ କିଛି ଆଲୋଚନା କଲୁ ନାହିଁ । ସେହି ରାତିରେ ବ୍ଲକ୍‌ରେ ଜଣେ ଫରାସୀ ମହିଳା ମରିଗଲା । ରାତି ପରିବହନ ପହଞ୍ଚିବା ପରେ ଆମେ ତାହାର ନମ୍ବର ଓ ନାମ ପାଇଲୁ । ତେବେ ସେହି ଇହୁଦୀ କନ୍ୟାଟିର ଜୀବନ ରକ୍ଷା କରିଥିବା ଜର୍ମାନ୍ ସୈନିକ ଜଣକ କିଏ ତାହା ଜାଣି ପାରିଲୁ ନାହିଁ ।

■■■

– ୨୯ –

# ଚରମ ପ୍ରତାରଣା

୧୯୪୪ ମସିହା ଅକ୍ଟୋବର ମାସରେ ସମସ୍ତ ହସ୍‌ପିଟାଲ ପୁରୁଣା ଜୀପ୍‌ସୀ କ୍ୟାମ୍ପର ‘ସି’ କ୍ୟାମ୍ପକୁ ସ୍ଥାନାନ୍ତରିତ ହେଲା । ସେଇଠି ମୁଁ ମିସେସ୍ ହେଲେନାଙ୍କୁ ଭେଟିଲି । ଅକ୍ଷମଶାଳାରେ ମୁଁ ଯେଉଁ କାର୍ଯ୍ୟ କରୁଥିଲି ସେ ମଧ୍ୟ ସେହି କିରାଣୀ କାର୍ଯ୍ୟ କରୁଥିଲେ । ତଫାତ୍ ଏତିକି୍ ଯେ ସେ ଅଣ-ଇହୁଦୀ ଅକ୍ଷମଶାଳାରେ କାର୍ଯ୍ୟ କରୁଥିଲେ । ନୂଆ କ୍ୟାମ୍ପରେ ଦୁଇଟି ଅକ୍ଷମଶାଳାକୁ ଏକତ୍ର କରାଯାଇଥିଲା ଏବଂ ତାହା ଏକ ସ୍ୱତନ୍ତ୍ର ବାରାକ୍‌ରେ ରିସେପ୍‌ସନ୍ ରୁମ୍ ସମେତ ଅନ୍ୟ ଗୋଟିଏ ସୁନ୍ଦର କୋଠରୀ ଏବଂ ସେଥିରେ ତିନିଥାକିଆ ବଙ୍କର ଥିଲା । ପାଞ୍ଚୋଟି ବେଡ୍‌ରେ ଅକ୍ଷମଶାଳା କର୍ମଚାରୀ ପାଞ୍ଚଜଣ ଯଥା:- ଦୁଇ କ୍ଲର୍କ- ମୁଁ ଓ ହେଲେନା, ଡାକ୍ତର ମାନ୍‌ସୀ, ଫ୍ରିଡା ଓ ନର୍ସ ମାରୁସିଆ । ୬ଷ୍ଠ ଶଯ୍ୟାଟି ଦଖଲ କରିଥିଲା ଗ୍ୟାସ୍ ଚ୍ୟାମ୍ବରରେ କାର୍ଯ୍ୟ କରୁଥିବା କ୍ଳିଟା ।

ଆମ ପାଞ୍ଚଜଣଙ୍କ ମଧ୍ୟରୁ ହେଲେନା ଟିକେ ଖାପ୍ ଛଡ଼ା ପ୍ରକୃତିର ଥିଲେ । ସେ ଆମ ଅପେକ୍ଷା ବୟସ୍କ ହୋଇଥିବାରୁ ତାଙ୍କ ସହ ଚଳିବାକୁ ଆମକୁ ଟିକେ ଅଡୁଆ ଲାଗୁଥିଲା । ସେ ସର୍ବଦା ଚୁପ୍‌ଚାପ୍ ଏବଂ ସବୁ ସମୟରେ ନିଜ ଚିନ୍ତାରେ ନିମଗ୍ନ ରହୁଥିଲେ । ସେ ଏକୁଟିଆ ଜୀବନ ବିତାଉଥିଲେ ଏବଂ କାହା ସହ କଥାବାର୍ତ୍ତା ବି କରୁନଥିଲେ । ସେ ଆଉସ୍‌ଭିତ୍‌ଜକୁ କେମିତି ଆସିଲେ ଆମେ ଜାଣି ପାରୁ ନଥିଲୁ । ସେ

ଆମର କଥାବାର୍ତ୍ତାକୁ କାନେଇ କାନେଇ ଶୁଣୁଥିଲେ ଏବଂ ବୋଧହୁଏ କହୁଥିବେ, ''ମୁଁ ଦେଖିବି ତୁମେମାନେ ମୋ ପରିସ୍ଥିତିରେ ପଡ଼ିଲେ କ'ଣ କରିବ ।''

ଦିନେ ସନ୍ଧ୍ୟାରେ ଆମେ 'ସସ୍ଥାନ ମୃତ୍ୟୁ ଓ ଅସ୍ଥାନ ମୃତ୍ୟୁ' ବିଷୟରେ ଆଲୋଚନା କରୁଥିବା ବେଳେ ଆମକୁ ସେ ବିସ୍ମିତ କରିଦେଇ ଆମ ଆଲୋଚନା ଭିତରକୁ ପଶିଆସିଲେ । ସେ କହିବାକୁ ଆରମ୍ଭ କଲେ, ''ଶୁଣ, ମୁଁ ତୁମକୁ କ୍ରେକୋରୁ ଆସିଥିବା ୧୫୬ ଜଣ ଝିଅଙ୍କର ମୃତ୍ୟୁ ସମ୍ପର୍କରେ କହିବି ।''

''ସେଦିନ ଆମେ ନୂଆରୋଗୀମାନଙ୍କର ଆଡ୍‌ମିସନ୍ କରିସାରିଥିଲୁ । ଡାକ୍ତର ମେଙ୍ଗେଲ୍ ଆମେ ଭର୍ତ୍ତି କରିଥିବା ରୋଗୀମାନଙ୍କୁ ଦେଖିସାରିବା ପରେ ଆମେ ଭାବୁଥିଲୁ 'ସେ ଖୁବ୍ ଶୀଘ୍ର ଚାଲିଯିବ ।' ମୋର ମନେ ପଡୁଛି, ଜୁଲାଇ ମାସର ସେହି ଅସହ୍ୟ ଗୁଳୁଗୁଳି । ଅକ୍ଷମଶାଳାର ପରିବେଶ ଅତ୍ୟନ୍ତ ଅସହନୀୟ ମନେ ହେଉଥିଲା । ସର୍ବଶେଷ ଅସୁସ୍ଥ ମହିଳାଟି ଡାକ୍ତର ସାମନାରେ ଅତିକ୍ରମ କରିଗଲା । ଆମେ ଆଶ୍ୱସ୍ତିର ନିଃଶ୍ୱାସ ମାରିଲୁ । ମେଙ୍ଗେଲ୍ ଚୌକିରୁ ଉଠି ଏବଂ ପୋଷାକର ବୋତାମ୍ ସବୁ ଲଗେଇ ସାରି ମୋ' ଆଗରେ ଛିଡ଼ା ହୋଇଗଲା । ତା'ପରେ ଆମକୁ ଶୁଣାଇ ଦେଲା, ''ଆଜି ଦିନ ୩ଟା ବେଳେ ଶବବାହୀ ଗାଡ଼ି ଏଠାରେ ପହଞ୍ଚିବ । ମୁଁ ଚାରିଟା ବେଳେ ପହଞ୍ଚିବି ।'' ଆମେମାନେ ବିସ୍ମୟ ଦୃଷ୍ଟିରେ ପରସ୍ପରକୁ ଅନେଇଲୁ । ଶବବାହକ ଗାଡ଼ି ଦିନ ୩ଟାରେ କାହିଁକି ଆସିବ ? ସାଧାରଣତଃ ତାହା ସନ୍ଧ୍ୟାପରେ ଆସେ, ଶବ ଗୁଡ଼ିକ ନେଇଯିବା ପାଇଁ । ଦିନ ୪ଟାରେ ବା ମେଙ୍ଗେଲ୍ ଏଠାକୁ କ'ଣ କରିବାକୁ ଆସିବ ? ଆମ ପାଟିରୁ କଥା ବାହାରିଲା ନାହିଁ । ''ଶବବାହକ ଗାଡ଼ି ଯେ ଆମରି ପାଇଁ ଆସିବ, ଏ ବିଷୟରେ ଆମେ ନିଶ୍ଚିତ ହୋଇଗଲୁ । ଆମକୁ ନିଶ୍ଚୟ ଗ୍ୟାସ୍‌କୁ ନିଆଯିବ । ଆମେ ସଫାସଫି କାମ ଆରମ୍ଭ କରିଦେଲୁ । କିନ୍ତୁ ଆମ ହାତରେ କୌଣସି କାମ କରିହେଲା ନାହିଁ । ହାତରୁ ଜିନିଷପତ୍ର ଗୁଡ଼ା 'ଗୁଳ୍‌ଗାଳ୍' ଗଳି ପଡୁଥିଲା । ସମୟ ବି ସେମିତି ଅସରନ୍ତି ବୋଧ ହେଉଥିଲା । ଅତି ଖରାପ୍ ପରିସ୍ଥିତି ପାଇଁ ଅପେକ୍ଷା କରିବା ସହଜ କଥା ନୁହେଁ । ସେ କଥା ପ୍ରକାଶ କରିବା ଅନାବଶ୍ୟକ ।

ଦିନ ଗୋଟାଏ ବେଳେ ପୋଲାଣ୍ଡରୁ କ୍ରାକୋରୁ ଆସିଥିବା ଦୁଇଟି ତରୁଣୀ ଅକ୍ଷମଶାଳାରେ ପହଞ୍ଚିଲେ । ସେ ଦୁହେଁ ଆମକୁ କହିଲେ ଯେ, ସର୍ଦ୍ଦାର ଆମ ଦୁଇଜଣଙ୍କୁ ଏଠାକୁ ପଠାଇଦେଇ ଚାଲିଯାଇଛି । ସେ ଜର୍ମାନୀର କାମ କରିବ ବୋଲି ତରତର ହୋଇ ଚାଲିଗଲା । ''ଡାକ୍ତର ମେଙ୍ଗେଲ୍ ସେମାନଙ୍କୁ ପରୀକ୍ଷା କରିବ ।'' ସେ ଦୁହିଁଙ୍କ କଥା ଶୁଣି ଆତଙ୍କରେ ମୁଁ ପ୍ରାୟ ସଜ୍ଞାହୀନ ହୋଇଗଲି । କମ୍ପିତ କଣ୍ଠରେ ସେ ଦୁହିଁଙ୍କୁ ପଚାରିଲି । ''ମାତ୍ର ତୁମ ଦୁଇଜଣଙ୍କୁ ପଠାଇଛନ୍ତି ନା ଆଉ କାହାକୁ ?''

ନା ଖାଲି ଆମେ ନୁହେଁ, ଆହୁରି ବହୁ ସଂଖ୍ୟାରେ ଝିଅ ମଧ୍ୟ ଏଠାକୁ ଆସିବେ । ଆଉସ୍‌ଭିତ୍‌ଜ୍ ପରିତ୍ୟାଗ କରୁଥିବା ପରିବହନ ଗାଡ଼ିକୁ ଧରିବା ପାଇଁ ଆମେ ତରତର ହୋଇ ଆଗେ ଚାଲି ଆସିଛୁ ।''

''କ୍ରମେ ବହୁସଂଖ୍ୟକ ତରୁଣୀ ଅକ୍ଷମଶାଳାରେ ପହଞ୍ଚିଲେ । ସେମାନେ ଆଉସ୍‌ଭିତ୍‌ଜ୍ ପରିତ୍ୟାଗ କରିବେ ବୋଲି ବିଶ୍ୱାସ କରି ଭାରି ଖୁସ୍ ମିଜାଜରେ ଥାନ୍ତି । ବଡ଼ ପାଟିରେ କଥା କହୁଥାନ୍ତି ଓ ହସୁଥାନ୍ତି । ସେମାନଙ୍କୁ ଯେ ପ୍ରତାରିତ କରାଯାଇଛି ଓ ସେମାନଙ୍କ ପାଇଁ ଯେ ଶବବାହକ ଗାଡ଼ି ଘଣ୍ଟାଏ ଭିତରେ ପହଞ୍ଚିବ ତାହା ସେମାନେ ସ୍ୱପ୍ନରେ ସୁଦ୍ଧା ଭାବିପାରୁ ନଥିଲେ । ସେହି ''ବାୟାଣୀ''ଗୁଡ଼ିକଙ୍କ ପାଇଁ ମୃତ୍ୟୁ ଦଣ୍ଡ ସ୍ଥିରୀକୃତ ହୋଇ ସାରିଥିଲା ଏବଂ ସେହି ଆଦେଶକୁ ଅକ୍ଷମଶାଳାରେ ହିଁ କେବଳ କାର୍ଯ୍ୟକାରୀ ହେବାକୁ ବାକି ଥିଲା । ଉତ୍ତେଜିତ ହୋଇ ମୁଁ ଭାବିବାକୁ ଲାଗିଲି ''କ'ଣ କରାଯିବ ?'' ଭାବିଲି ସେମାନଙ୍କୁ ଏଠାକୁ ବାସ୍ତବରେ କାହିଁକି ଅଣାଯାଇଛି; ତାହା କହି ଦେବି କି ? ସେମାନଙ୍କୁ ଧମକ ଦେଇ କହିବି କି, 'ରେ ନିର୍ବୋଧମାନେ, ତୁମେ ଚୁପ୍ ହୁଅ, ହସ ବନ୍ଦକର । ତୁମେମାନେ ଜୀବନ୍ତ ମୁର୍ଦ୍ଦାର । ଅଳ୍ପ କେଇ ଘଣ୍ଟା ପରେ ଟିକେ ପାଉଁଶ ଛଡ଼ା ତୁମମାନଙ୍କର ଆଉ କିଛି ହେଲେ ଅବଶିଷ୍ଟ ନଥିବ ।' ଯଦି ମୁଁ ସେୟା କରେ ତା' ପରେ ଆମେ କର୍ମଚାରୀ ମାନେ ମଧ ଗ୍ୟାସ୍‌କୁ ଯିବୁ । ସେମାନେ ବି ଯିବେ । ହୁଏତ ଝିଅଗୁଡ଼ିକ ଛାନିଆରେ ଦୌଡ଼ି ପଳାଇବାକୁ ଚେଷ୍ଟା କରିବେ । କିନ୍ତୁ ଶେଷସୁଦ୍ଧା ସେମାନେ ବି ଧରା ହୋଇ ଆସିବେ । ସେମାନଙ୍କର ନମ୍ବର ଲେଖା ସରିଛି । କେଉଁ ଆଡ଼େ ପଳାଇବାର ଉପାୟ ନାହିଁ ।''

''ମତେ ବିଶ୍ୱାସ କର । ଆମେ କ'ଣ କରିବା ଉଚିତ ସେ ସମ୍ପର୍କରେ ଆମ ଭିତରେ ବିଚାର ବିମର୍ଷ ହେଲା । ସେହି ନିଷ୍ଠୁର ସତ୍ୟକୁ ଆମେ ସେମାନଙ୍କ ଆଗରେ ପ୍ରକାଶ କରି ନଥିଲୁ । ଆମେ ଯେ ଆମ ନିଜ ଜୀବନ ଭୟରେ ସେପରି କରି ନଥିଲୁ ତାହା ନୁହେଁ, ସେହି ତରୁଣୀମାନଙ୍କ ପକ୍ଷରେ କିଭଳି ମୃତ୍ୟୁ ଶ୍ରେୟସ୍କର, ତାହା ଠିକ୍ କରି ନପାରି ଆମେ ଦ୍ୱନ୍ଦ୍ୱରେ ପଡ଼ିଥିଲୁ । ସେମାନେ କିଛି ଜାଣି ନଥିବାରୁ ଖୁସ୍ ମିଜାଜ୍‌ରେ ଅଛନ୍ତି । ସେମାନେ ତାହା ଜାଣିବା ପୂର୍ବରୁ ହୁଏତ ''ମୃତ୍ୟୁ'' ସେମାନଙ୍କୁ ଟାଣି ନେଇଯିବ । ସେମାନଙ୍କ ସାମନାରେ ଥିବା ନିଷ୍ଠୁର ସତ୍ୟଟିକୁ ଯଦି ଆମେ ପ୍ରକାଶ କରି ଦେଉ, ତେବେ ହୁଏତ ସେମାନେ ବଞ୍ଚି ରହିବାକୁ ସଂଗ୍ରାମ କରିବେ । ସେ ଉଦ୍ୟମ କଲେ, କେବଳ ନିଃସଙ୍ଗତା ଲାଭ ହେବ ତାହାର ଅବଶ୍ୟମ୍ଭାବୀ ପରିଣତି । କାରଣ ସେମାନଙ୍କ ବନ୍ଧୁଗଣ ନିଜ ନିଜ ଜୀବନକୁ ରକ୍ଷା କରିବା ଉଦ୍ଦେଶ୍ୟରେ କୌଣସି ସାହାଯ୍ୟ କରିବେ ନାହିଁ ।

ଅକ୍ଷମଶାଳା ସାମ୍ନାରେ ଶହେ ପଚାଶ ଜଣ ତରୁଣୀ ପହଞ୍ଚିଗଲେ । ହାଜିରା ଦେବାକୁ ସେମାନେ ପାଞ୍ଚ[illegible]ିଆ ଧାଡ଼ିରେ ଛିଡ଼ା ହୋଇଗଲେ ଏବଂ ଡାକ୍ତର ଆସିବାକୁ ଅପେକ୍ଷା କରି ରହିଲେ । ୧ [illegible] ପି ଆମେ କ'ଣ କରିବୁ ଠିକ୍ କରିପାରୁ ନଥିଲୁ । ସେମାନଙ୍କୁ ସତ କଥାଟା କହିଦେବାକୁ ଆମର ବିବେକ ଆମକୁ ବାଧା ଦେଉଥିଲା । ଆଜି ଭାବୁଛି, ଆମେ ନିଜ ନିଜ ପ୍ରାଣ ବଞ୍ଚେଇବାକୁ ବୋଧହୁଏ ଭାବୁଥିଲୁ ଯେ ଅପ୍ରତ୍ୟାଶିତ ମୃତ୍ୟୁ ଅପେକ୍ଷା ସଜ୍ଞାନ ମୃତ୍ୟୁ ଅଧିକ ସ୍ପୃହଣୀୟ ।''

''କ୍ଲେର୍ ନାମକ ଏକ ଅତର୍ଲିକୁ ସାଙ୍ଗରେ ଧରି ଡକ୍ଟର ମେଙ୍ଗେଲ୍ ଠିକ୍ ଦୁଇଟା ବେଳେ ସେଠାରେ ପହଞ୍ଚିଗଲା । ସେ ଯୁବତୀମାନଙ୍କ ଧାଡ଼ିକୁ ଅନେଇଲା ଏବଂ ଆମକୁ ସେହି ପାପ ଓ ଅପରାଧରେ ଅଂଶୀଦାର କରିବାକୁ ଚାହୁଁଥିବା ଭଳି ମୁଦ୍ରାରେ ଆମ ଆଡ଼କୁ ମଧ୍ୟ ଅନେଇଲା । ସେହି ମୁହୂର୍ତ୍ତରେ ଆମେ ପୁଣି ଭାବିଲୁ ଯେ ସେହି ଝିଅମାନଙ୍କୁ ସତ କଥାଟା କହି ନଦେବା ଆମର ଗୁରୁତର ଅପରାଧ ହେଉଛି । ମୃତ୍ୟୁଟା ସହଜ ହେବ କି କଷ୍ଟଦାୟକ ହେବ ପ୍ରତ୍ୟେକ ବ୍ୟକ୍ତି ତାହା ସ୍ଥିର କରିବା ପାଇଁ ଅଧିକାରୀ ଅଟେ । ସେମାନଙ୍କ ଭାଗ୍ୟରେ କ'ଣ ଅଛି, ତାହା ଜଣାଇଦେବା ଆମର ଦାୟିତ୍ୱ ଅଟେ ।''

''ଚେକ୍ କରିବାକୁ ସେମାନଙ୍କୁ ଏଠାକୁ ନେଇ ଆସ ।'' ମେଙ୍ଗେଲ୍ ଅର୍ଡର ଦେଲା । ଯେଉଁ ଝିଅଟି ଆଉସ୍‌ଭିଚ୍‌ଜ୍ ପରିତ୍ୟାଗ କରିବାକୁ ତରତର ହୋଇ ଆସିଥିଲା ସେ ହିଁ ସର୍ବ ପ୍ରଥମେ ପ୍ରବେଶ କରି ମୋ' ସାମନାରେ ଛିଡ଼ା ହୋଇଗଲା । ମୁଁ ତାକୁ ପଦେ କଥା ବି କହି ନଥିଲି । ମୁଁ ତା'ର ହସ୍‌ପିଟାଲ୍ କାର୍ଡରେ ଆବଶ୍ୟକୀୟ ଲେଖାଲେଖି କରିଦେଇ ମେଙ୍ଗେଲ୍ କରୁଥିବା ସେହି ପ୍ରତାରଣା ଓ ଅପରାଧରେ ଭାଗୀଦାର ହେଉଥିଲି ଏବଂ ମେଙ୍ଗେଲ୍‌ର ମଣିଷ ଶିକାରକୁ ସହଜ ସାଧ୍ୟ କରି ଦେଉଥିଲି । ସେ ଝିଅଟି କାହାକୁ କିଛି ସନ୍ଦେହ ନ କରି ଭିତରକୁ ପଶିଗଲା । ତା ପରେ ଗୋଟାଏ ମଣିଷ 'ଦୁମ୍' କରି ପଡ଼ିଯିବାର ଗୋଟେ ଶବ୍ଦ ମୁଁ ଶୁଣିବାକୁ ପାଇଲି । ତା'ପରେ ୨ୟ, ୩ୟ, ୪ର୍ଥ .... କୋଡ଼ିଏ ପର୍ଯ୍ୟନ୍ତ । ସବୁଥର ସେହି ଗୋଟିଏ ଘଟଣା - ଖଣ୍ଡେ କାର୍ଡ, ଦରଜା ଖୋଲିବାର ଶବ୍ଦ ଓ ତା' ପଛେ ପଛେ 'ଦୁମ୍' ଶବ୍ଦ । ଶବଗୁଡ଼ିକ ଅପେକ୍ଷାଗାରର ପଛପଟରେ ଜମା ହେଉଥିଲା ।

ଜଣେ ନାତ୍‌ସୀ ଆତଙ୍କବାଦୀ ତାହାର କୁକୁରକୁ ନେଇ ଅକ୍ଷମଶାଳା ସାମନାରେ ଉପସ୍ଥିତ ରହି ''ଶାନ୍ତି- ଶୃଙ୍ଖଳା'' ରକ୍ଷା କରୁଥିଲା । ଶାନ୍ତ ଚିତ୍ତ ଓ ଯଥେଷ୍ଟ ପ୍ରତ୍ୟୟ ସହକାରେ ଝିଅଗୁଡ଼ିକ ଲାଇନ୍ ଦେଇ ଅକ୍ଷମଶାଳା ଭିତରକୁ ପ୍ରବେଶ କରୁଥିଲେ । ମୁଁ ସବୁବେଳେ ମୁହଁ ତଳକୁ କରି ରହୁଥିଲି ଯେପରିକି କେହି ମୋ'ର ମୁହଁକୁ ଦେଖି ନ ପାରନ୍ତି । ମୁଁ କେବଳ ଏତିକି ଦେଖୁଥିଲି ଯେ କାର୍ଡ ପାଇଁ ଗୋଟିଏ ହାତ ଲମ୍ବି ଆସୁଥିଲା । ସେମାନେ ଯେ କାହିଁକି ସେଭଳି ଶାନ୍ତ ଦିଶୁଥାନ୍ତି, ମୁଁ ତାହାର କାରଣ କିଛି ବୁଝିପାରୁ ନଥିଲି ।

ଅକ୍ଷମଶାଳାରେ ମେଙ୍ଗେଲ୍ ଦେଖି ସାରିବା ପରେ ସେମାନଙ୍କ ଭିତରୁ ଜଣେ ହେଲେ ସୁଦ୍ଧା ଆଉ ଫେରୁ ନଥିଲେ, ଏକଥା କ'ଣ ସେମାନଙ୍କୁ ବିସ୍ମିତ କରୁ ନଥିଲା ? କାର୍ଡ ପାଇଁ ହାତ ବଢ଼ାଉଥିବା ଝିଅମାନଙ୍କ ମଧ୍ୟରୁ କାହାରି କ୍ଷଣକ ଭିତରେ ମଧ୍ୟ ଉତ୍କଣ୍ଠା ବା ଆତଙ୍କର ଚିହ୍ନ ଲକ୍ଷ୍ୟ କରି ନଥିଲି । ମୁଁ ପ୍ରାୟ ଶହେ ଖଣ୍ଡ କାର୍ଡ ଦେଇ ସାରିବା ପରେ କାର୍ଯ୍ୟଧାରାରେ ହଠାତ୍ ବିରତି ହେଲା ।

''ଲାଇନ୍‌ରେ ଛିଡ଼ା ହୋଇଥିବା ଗୋଟେ ଝିଅ ନାତ୍‌ସୀ ଆତଙ୍କବାଦୀକୁ ପଚାରିଲା, ''ଡାକ୍ତରୀ ପରୀକ୍ଷା ପରେ କେହି ଜଣେ ମହିଳା ନ ଫେରିବାର କାରଣ କ'ଣ ?'' ସେ ତାକୁ ଉତ୍ତର ଦେବା ପରିବର୍ତ୍ତେ ବନ୍ଧୁକ କୁନ୍ଦାରେ ତା ମୁଣ୍ଡକୁ ଭୁସି ଦେଲା । ତା'ପରେ ଆଉ ଜଣେ କହିଲା, ''ନା ଆମେ ତା ଭିତରକୁ ଯିବୁ ନାହିଁ, ଆମକୁ 'ଫେନେଲ୍' ଇନ୍‌ଜେକ୍‌ସନ୍ ଦେଇଦେବ ।'' ଏହାପରେ ପ୍ରବଳ ପାଟିଗୋଳ ଆରମ୍ଭ ହୋଇଗଲା । ସତକୁ ସତ ଝିଅମାନେ ଆଉ ଅକ୍ଷମଶାଳା ଭିତରକୁ ଯିବା ପାଇଁ ମନା କରିଦେଲେ । ସେମାନଙ୍କ ଭିତରୁ ଜଣେ ଦୌଡ଼ି ପଳାଇବାକୁ ଚେଷ୍ଟା କରିବାରୁ ଆତଙ୍କବାଦୀ ଜଣକ ସଙ୍ଗେ ସଙ୍ଗେ ତାକୁ ଗୁଳି କରିଦେଲା । ଗୁଳି ଶବ୍ଦ ଶୁଣି ଅଧିକ ଆତଙ୍କବାଦୀ କୁକୁର ନେଇ ସେଠାକୁ ଚାଲି ଆସିଲେ ଏବଂ ସେମାନଙ୍କୁ ପୂରା ଘେରାଉ କରିଦେଲେ । ପ୍ରତି ଝିଅକୁ ସେମାନେ ପିଟୁଥିଲେ ଏବଂ କାନ୍ଦୁଥିବା ଅବସ୍ଥାରେ ଦୁଇଟା ଆତଙ୍କବାଦୀ ତାକୁ ଘୋଷାଡ଼ି ନେଉଥିଲେ ମେଙ୍ଗେଲ୍ ସାମନାକୁ । ମୁଁ କାର୍ଡ ଦେବା ବନ୍ଦ କରିଦେଲି । ତାହା ଆଉ ଦେବା ଆବଶ୍ୟକ ହେଲା ନାହିଁ ।

''ମୁଁ ମୋ ସିଟ୍‌ରୁ ଡିଆଁ ମାରି ଅକ୍ଷମଶାଳାର ଗୋଟାଏ କୋଣରେ ଲୁଚି ଗଲି । ଝିଅଗୁଡ଼ିକ ମରିବାକୁ ଚାହୁ ନଥିଲେ ଓ ଆତଙ୍କବାଦୀଙ୍କ ହାତରୁ ନିଜକୁ ମୁକ୍ତ କରିବାକୁ ଚେଷ୍ଟା କରୁଥିଲେ । ଆତଙ୍କବାଦୀମାନେ ସେମାନଙ୍କୁ କୁକୁର ଲଗାଇ ଦେଉଥିଲେ । ସେମାନଙ୍କ ଅପେକ୍ଷା ଯେଉଁମାନେ ମରିବା କଥା ନ ଜାଣି ମୃତ୍ୟୁ ବରଣ କରୁଥିଲେ, ତାହା ଭିନ୍ନ ପ୍ରକାରର ଥିଲା । କେଉଁ ମୃତ୍ୟୁଟା ଅଧିକ ଯନ୍ତ୍ରଣାଦାୟକ ତାହା କିଏ କହିବ ? ଅବଶ୍ୟ ପ୍ରଥମେ ଯେଉଁମାନେ ମରିଥିଲେ ସେମାନେ ଶାନ୍ତିପୂର୍ଣ୍ଣ ଭାବେ ମରିଛନ୍ତି ।

ଦିନ ତିନିଟା ବେଳେ ଶବବାହକ ଗାଡ଼ି ପହଞ୍ଚିଗଲା ଏବଂ ଘଣ୍ଟାକ ଭିତରେ ସବୁ କାମ ଶେଷ ହୋଇଗଲା । ତଥାପି ଆମେ ଆଶଙ୍କା କରୁଥିଲୁ ଯେ ମେଙ୍ଗେଲ୍‌ର ସେହି ନାରକୀୟ ହତ୍ୟାକାଣ୍ଡର ଆମେ ଚାକ୍ଷୁଷ ସାକ୍ଷୀ ହୋଇଥିବାରୁ ଆମକୁ ଗ୍ୟାସ୍‌କୁ ନ ପଠାଇ ସେ ଛାଡ଼ିବ ନାହିଁ । କିନ୍ତୁ ମେଙ୍ଗେଲ୍ ଶାନ୍ତ ଚିତ୍ତରେ ହସ ହସ ହୋଇ ହାତରେ ଧରିଥିବା କାର୍ଡକୁ ଟେବୁଲ୍ ଉପରେ ରଖିଦେଇ କହିଲା, ''Herzanfall (ହାର୍ଟ ଆଟାକ୍)'' ।

ମିସେସ୍ ହେଲେନା ସେହି ଲୋମହର୍ଷଣକାରୀ ବିବରଣୀ ଦେବା ଶେଷ କଲେ ।

ଆମ ପାଟିରୁ କଥା ବାହାରିଲା ନାହିଁ । କିଛି ସମୟ ପରେ ସେ ପୁଣି କହିଲେ, ''ସେମାନଙ୍କ ପାଇଁ ଯେ ମୃତ୍ୟୁ ଅପେକ୍ଷା କରୁଥିଲା, ଏହା ସେମାନଙ୍କୁ ନ କହି ମୁଁ ଠିକ୍ କରିଛି ନା ଭୁଲ୍ କରିଛି, ତାହା, ଆଜି ମୁଁ ଜାଣିପାରୁ ନାହିଁ । ତୁମ୍ଭେମାନେ କ'ଣ ଭାବୁଛ ?

ଆମେ କେହି କିଛି ଉତ୍ତର ଦେଇ ପାରି ନଥିଲୁ ।

■■■

## - ୩୦ -

# ବନ୍ଧୁମିଳନ

ଦିନ ଦିନ ଧରି ପ୍ରବଳ ଥଣ୍ଡା ଓ ଅନବରତ ବର୍ଷା ଆଉସ୍‌ଭିଚ୍‌ରେ ଆଦୌ ଅସ୍ୱାଭାବିକ ନଥିଲା । ବାହାରେ ନିରବଚ୍ଛିନ୍ନ ବୃଷ୍ଟିପାତର ମଧୁର ଶବ୍ଦ ଓ ଘର ଭିତରେ ଚାଲିଥିବା ସଙ୍ଗୀତ ଆସରରେ ବ୍ୟାଘାତ ସୃଷ୍ଟି ନ କରିବା ପାଇଁ ମୁଁ ଧୀରେ ଧୀରେ ଅକ୍ଷମଶାଳାର ଦରଜା ଖୋଲିଲି । ବାହାର ସମ୍ପୂର୍ଣ୍ଣ ଅନ୍ଧକାର ଏବଂ ନିସ୍ତବ୍ଧ । ଷ୍ଟେସନ୍‌ର ଆଲୁଅ ମଧ ଲିଭିଥିଲା । କେତେଦିନ ତଳେ ଶେଷ ବନ୍ଦୀ ପରିବହନ ଟ୍ରେନ୍‌ଟି ସେଠାରେ ପହଞ୍ଚିବା ପରେ ଆଉ ଗାଡ଼ି ଆସି ନଥିଲା । ଆମେ ଭାବୁଥିଲୁ ଆଉ ବନ୍ଦୀ ଆସିବେ ନାହିଁ ।

ମୁଁ ଗୋଟାଏ କୋଣରେ ବସିଯାଇ ସଙ୍ଗୀତ ଉପଭୋଗ କଲି । ସେଦିନ ରବିବାର । ସର୍ବତ୍ର ଶାନ୍ତି ବିରାଜମାନ କରୁଥିବାରୁ ଇରେନା ଗୋଟିଏ ମନୋରଞ୍ଜନ ସନ୍ଧ୍ୟା ବ୍ୟବସ୍ଥା କରିଥିଲା । ବିନା ପୁରୁଷରେ ନାଚ ଯୋଗାଡ଼ ହୋଇଥିଲା । ପୁରୁଷର ଅନୁପସ୍ଥିତିରେ ନାଚିବା ମଧ ସମ୍ଭବ ଥିଲା ।

ଇରେନା ଜଣେ ଅଭିନେତ୍ରୀ ଥିଲା । ଯଦିଓ ମୂଳତଃ ସେ ପୋଲାଣ୍ଡର ଅଧିବାସୀ, ସେ ଆଉସ୍‌ଭିଚ୍‌କୁ ଚାଲାଣ ହେବା ବେଳକୁ ଚଉଦବର୍ଷ କାଳ ପ୍ୟାରିସ୍‌ର ବାସିନ୍ଦା ହୋଇ ସାରିଥିଲା । ସେ ଜଣେ ଡେଙ୍ଗା, ସିଧା ଏବଂ ବେଶ୍ ଶକ୍ତିମାନ୍ ମହିଳା । ମୋ'ର ମନେ ଅଛି ଯେତେବେଳେ ମୁଁ ତାକୁ ପ୍ରଥମେ ଦେଖିଲି, ସେ ଯେ ଜଣେ ଅଭିନେତ୍ରୀ, ତାହା ମୁଁ ବିଶ୍ୱାସ କରିପାରି ନଥିଲି । ଯେଉଁ ମହିଳାମାନେ ତାକୁ ଭଲ ଭାବରେ ଜାଣିଥିଲେ ସେମାନେ କହୁଥିଲେ ଯେ ଇରେନା ଜଣେ ମଞ୍ଚ ଅଭିନେତ୍ରୀ ଥିଲା । ସେମାନେ କହୁଥିଲେ ଯେ ରଙ୍ଗମଞ୍ଚରେ ଆବିର୍ଭାବ ବେଳେ ସେ ଏତେ ପରିବର୍ତ୍ତନ ହୋଇଯାଉଥିଲା ଯେ ତାକୁ ଚିହ୍ନିବା ଅସମ୍ଭବ ହୋଇ ପଡୁଥିଲା । ଜଣେ 'ଚରିତ୍ର ଅଭିନେତ୍ରୀ' ଭାବରେ ତା' ଅଭିନୟ ବିସ୍ମୟକର ଥିଲା ।

ଆଉସ୍‌ଭିଚ୍‌ରେ ମଝିରେ ମଝିରେ ଆମେ ବନ୍ଧୁମିଳନର ବ୍ୟବସ୍ଥା କରୁଥିଲୁ । ମୋର

ମନେ ଅଛି ଆଉସ୍‌ଭିଟ୍‌ଜ୍‌ରେ ପହଞ୍ଚିବାର କେତେମାସ ପର୍ଯ୍ୟନ୍ତ ସେଭଳି ବନ୍ଧୁମିଳନ ମୋତେ ବଡ଼ ଅରୁଚିକର ମନେ ହେଉଥିଲା । ଦିନରାତି ଚବିଶ ଘଣ୍ଟା ଶବଦାହୀ ଚୁଲ୍ଲାର ଆଲୋକରେ ଆକାଶ ଲାଲ ପଡ଼ିଥିବା ବେଳେ ଗୀତ ଗାଇବା ଏକ ଅସମ୍ଭବ ବ୍ୟାପାର ଥିଲା । ସମଗ୍ର ପରିବେଶ କେବଳ ମୃତ୍ୟୁ ଯନ୍ତ୍ରଣା ଓ ହାହାକାର ସମୁଦ୍ରରେ ଭାସୁଥିବା ବେଳେ ମଣିଷ ଗୀତ ନାଚ କରିବ କେମିତି ?

ବହୁଦିନ ଆଗରୁ ଆସିଥିବା ବନ୍ଦୀମାନେ କହନ୍ତି, ''କ୍ରମେ ତୁମେମାନେ ଏ ପରିସ୍ଥିତି ସହ ଅଭ୍ୟସ୍ତ ହୋଇଯିବ । ସେତେବେଳେ ବୁଝିବ ।''

ଦିନେ ସନ୍ଧ୍ୟାରେ ମୁଁ ଅକ୍ଷମଶାଳାର ବ୍ୟାରାକ୍‌ରୁ ଫେରିବା ବାଟରେ ଦଳେ ଶବ ବାହିକା ମହିଳାଙ୍କୁ ଭେଟିଲି । ଶବଗୁଡ଼ିକୁ ଟ୍ରକ୍‌ରେ ବୋଝେଇ କରିବା ଥିଲା ସେମାନଙ୍କର କାମ । ସେମାନଙ୍କ ମଧ୍ୟରୁ ଜଣେ ଶବଗଦା ପାଖରେ, ୨ୟ ମହିଳାଟି ଟ୍ରକ୍ ପାଖରେ, ୩ୟ ଜଣକ ଗୋଟେ ଛୋଟ ଷ୍ଟୁଲ୍ ଉପରେ ଓ ୪ର୍ଥ ମହିଳାଟି ଟ୍ରକ୍ ଡାଲା ଉପରେ ଛିଡ଼ା ହୋଇଥାନ୍ତି । ଶବର ହାତ, ଗୋଡ଼ ଓ ମୁଣ୍ଡର ଚୁଳକୁ ଧରି ଝୁଲାଇ ଝୁଲାଇ ସମସ୍ତଙ୍କ ହାତ ଦେଇ ଶବଗୁଡ଼ିକ ଟ୍ରକ୍‌ରେ ବୋଝେଇ ହେଉଥିଲା । ମୃତ ବ୍ୟକ୍ତିଙ୍କ ପ୍ରତି ସେମାନଙ୍କର ଉଦାସୀନତା ଦେଖି ମୁଁ ବିସ୍ମିତ ହୋଇଗଲି । ମୁଁ ଭାବୁଥିଲି- ଏଠାକୁ ଆସିବା ପୂର୍ବରୁ ସେମାନେ ଏକ ସ୍ୱାଭାବିକ ନାରୀ ଜୀବନ ବିତଉଥିବେ- କାହାକୁ ଭଲ ପାଉଥିବେ ଏବଂ ସେମାନଙ୍କୁ ମଧ୍ୟ କେହି ନିଶ୍ଚୟ ଭଲପାଉଥିବ । ଅଥଚ ପ୍ରତି ମିନିଟ୍‌ରେ ମୁଁ ଗୋଟାଏ ମାତ୍ର ଶବ୍ଦ ଶୁଣୁଥିଲି - ମଣିଷ କଚାଡ଼ି ହୋଇପଡ଼ିବାର 'ଦୁମ୍' ଶବ୍ଦ ଏବଂ ଗୋଟିଏ ମହିଳାର ହୁସିଆରୀ ଆଦେଶ ''ହଁ ଜଲ୍‌ଦି ଜଲ୍‌ଦି । ହେଳା କରନା ।''

ସେମାନଙ୍କ ମଧ୍ୟରୁ କେହି ଜଣେ ମହିଳା ଗୀତଟିଏ ଆରମ୍ଭ କରିଦେବା ସଙ୍ଗେ ସଙ୍ଗେ ଅନ୍ୟମାନେ ମଧ୍ୟ ସେଥିରେ ଯୋଗ ଦେଲେ- ''କପେ ଅଟା ବଦଳରେ ସେ ଘଣ୍ଟାଏ ଚୁମା ଦେଲା (For a cup of flour he kissed for an hour) ଜର୍ମାନୀ ମାର୍ଚ୍ଚିଂ ସଙ୍ଗୀତ ବି ଗାଉଲେ । ମୁଁ ଅଣ ନିଃଶ୍ୱାସୀ ହୋଇ ସେମାନଙ୍କ ପାଖରେ ପହଞ୍ଚିଲି ।

''ତୁମେମାନେ ସେହି ନର କଙ୍କାଳମାନଙ୍କ ସାମନାରେ କେମିତି ଗୀତ ଗାଉଛ ?''

ସେମାନେ କେମିତି ବିହ୍ୱଳିତ ହୋଇ ମୋ ଆଡ଼େ ଅନେଇଲେ । ମୁଁ କ'ଣ ପଚାରୁଥିଲି ସେଥିରୁ ଲେଶ ମାତ୍ର ସେମାନେ ବୁଝୁଥିଲେ କି ନା ସନ୍ଦେହ । ଜଣେ କହିଲା, ''ତୁମେ ଅଭ୍ୟସ୍ତ ହୋଇ ଯିବ ।'' ପରେ ଆଉ ଜଣେ କହିଲା, ''ଏ ପରିସ୍ଥିତି ସହ ନିଜକୁ ଅଭ୍ୟସ୍ତ ନ କଲେ ତୁମ ପ୍ରାଣ ବାହାରିଯିବ ।''

ସତକୁ ସତ କ୍ରମେ ସେହି ପରିସ୍ଥିତିରେ ମୁଁ ଅଭ୍ୟସ୍ତ ହୋଇଗଲି । ଆଉସ୍‌ଭିଟ୍‌ଜ୍‌ରେ ପହଞ୍ଚିବାର ଆଠ ମାସରେ ମୁଁ ମୃତ ମଣିଷ ପ୍ରତି କେତେକାଂଶରେ ଉଦାସୀନତା ଅନୁଭବ

କଲି । ରାସ୍ତାରେ ଗଲାବେଳେ ବାଟରେ ପଡ଼ିଥିବା ଶବ ଦେଖି ମୁଁ ଆଗଭଳି ତାକୁ ଆଡ଼େଇ ନଯାଇ ଗୋଟାଏ କାଠଗଡ଼ ଭଳି ଡେଇଁଗଲି । ଅନ୍ୟମାନଙ୍କ ସହ ଗୀତ ଗାଇଲି ହସ କଥାରେ ହସିଲି ଓ ନିଜେ ମଧ ହସ କଥା କହିବା ବେଳେ ବିବେକର ଦଂଶନ ଅନୁଭବ କଲି ନାହିଁ । ଏପରିକି ବ୍ୟାରାକ୍‌ରେ ମୂଷା ପଲ ମୋ ପାଖରେ ଦୌଡ଼ା ଦୌଡ଼ି କରି ବିରାଡ଼ିଙ୍କ ଭଳି ଷ୍ଟୋଭ୍ ପାଖରେ ଉଷୁମ୍ ଟାଣିଲେ ବି ସେଥିପ୍ରତି ସମ୍ପୂର୍ଣ୍ଣ ଉଦାସୀନ ରହିବାକୁ ଲାଗିଲି । ଆଉସ୍‌ଭିଚ୍‌ଜ୍‌ରେ ଘଟୁଥିବା ସମସ୍ତ ଭୟାବହ ଘଟଣାବଳୀକୁ ହଜମ କରିଦେଇ ମୁଁ ସେଠାରେ ବାସ କରିପାରିଲି । ମୁଁ ଉପଲବ୍ଧି କଲି ଯେ ସମସ୍ତ ପ୍ରକାର ପ୍ରତିକୂଳ ପରିସ୍ଥିତି ସହ ଖାପ ଖୁଆଇ ଚଳିବାର ସାମର୍ଥ୍ୟ ଅର୍ଜନ କରିପାରିଲିଣି । ଏହା ଭଲ କି ମନ୍ଦ ତାହା ନିର୍ଣ୍ଣୟ କରିବା ମୋ' ପକ୍ଷରେ ସହଜ ନଥିଲା ।

ଛାତରେ ଗୋଟିଏ ଛୋଟ ବଲ୍‌ବ ଜଳୁଥିଲା । ଆମେ ସେହି ସ୍ୱଚ୍ଛ ଆଲୋକରେ ସର୍ବତ୍ର ଖେଳେଇ ହୋଇ ବସିଥିଲୁ । କେତେକ ଟେବୁଲ୍ ଉପରେ ତ ଓ ଅନ୍ୟ କେତେକ ଚଟାଣରେ ବସିଥିଲେ । କ୍ୱିଟା ଏବଂ ଅନ୍ୟ ଚେକ୍ ମହିଳା ''ପବନ ପ୍ରତିକୂଳରେ ଗତି କରୁଥିବା'' ମଣିଷମାନଙ୍କ ସମ୍ପର୍କରେ ଯୁବ ସଙ୍ଗୀତ ଗାନ କରୁଥିଲେ । ସେହି ସଙ୍ଗୀତର ଅର୍ଥ ହେଲା ''ସ୍ରୋତର ପ୍ରତିକୂଳରେ ସନ୍ତରଣ କରୁଥିବା ବଳବାନ୍ ଲୋକମାନେ ତୃପ୍ତି ଲାଭ କରନ୍ତି ।'' ଫରାସୀ ତରୁଣୀମାନେ ପ୍ୟାରିସ୍ ସହର ସମ୍ପର୍କରେ ସଙ୍ଗୀତ ଗାଇଲେ । ମୁଁ ଋଷିୟାନ୍ ଗୀତ ଗାଇବାରେ ଧୁରନ୍ଧର ଥିଲି । ଆଉସ୍‌ଭିଚ୍‌ଜ୍‌ର ରକ୍ତବର୍ଣ୍ଣ ଆକାଶକୁ ଅନାଇ ବିସ୍ମୃତ ହୋଇ ଆମେମାନେ ଗୀତ ଗାଉଥିଲୁ । ସମସ୍ତେ ମିଶି ଏକ ସଙ୍ଗରେ ଏକ ଜର୍ମାନ୍ ବନ୍ଦୀ ସଙ୍ଗୀତ ମଧ ଗାଇଲୁ । ସଙ୍ଗୀତ ଆସରର ପରିଚାଳିକା ଥିଲେ ଜଣେ ହଙ୍ଗେରୀ ମହିଳା । ସେ ବ୍ୟାରାକ୍‌କୁ ଆସିବାବେଳେ ତାଙ୍କର ବେହେଲାଟି ନେଇ ଆସିବାକୁ ସମର୍ଥ ହୋଇଥିଲେ । ସେ ହଙ୍ଗେରୀୟ ଓ ଜୀପ୍‌ସୀ ମେଲୋଡ଼ି ସ୍ୱରରେ ବେହେଲା ବଜେଇଲେ । ଆମେମାନେ ମନ୍ତ୍ରମୁଗ୍ଧ ହୋଇ ତାହା ଶୁଣୁଥିଲୁ । ହଠାତ୍ ଅକ୍ଷମଶାଳାର ଦରଜା ସଶବ୍ଦ ଖୋଲିଗଲା ଏବଂ ଆମ ସାମନାରେ ଛିଡ଼ା ହୋଇଗଲା ଜଣେ ହିଟ୍‌ଲର୍- ସେହି ନିଶ, ସେହି ଚୁଳ ଏବଂ ଏକ ଖଳନାୟକ ବର୍ବରର ମୁଖ ମଣ୍ଡଳ । ଆମେ ତ ଛାନିଆରେ ଛିଡ଼ା ହୋଇପଡ଼ିଲୁ । ଏପିରିକି ନର୍ସ ମାରୁସିଆ ଅର୍ଡର ବି ଦେଇଦେଲା– ''ହାଜର ହାଜର'' । କିନ୍ତୁ ହିଟଲର୍ ଦୀର୍ଘ ପଦକ୍ଷେପ ଓ ପ୍ରସାରିତ ହସ୍ତରେ ମୋ ସାମନାରେ ଆଣ୍ଠେଇ ପଡ଼ି ଧୀର ଗଳାରେ କହିଲା, ''ମୋ ସହ ଜାଗା ବଦଳାଇ ଦିଅ ।''

ସେତେବେଳେ ଯାଇ ଆମେ ହସି ଉଠିଲୁ । ସେ ଅନ୍ୟକେହି ନୁହେଁ, ସ୍ୱୟଂ ଇରେନା । କଳା ବୁଟ୍ ପଲିସ୍ ବୋଳି ହୋଇ ସେ ନକଲି ହିଟ୍‌ଲର୍ ସାଜିଥିଲା । ସେ ମୋତେ ପରିହାସ କରୁଥିଲା । କାରଣ ମୁଁ ସବୁବେଳେ କହୁଥିଲି ଯେ ହିଟ୍‌ଲର ଅପେକ୍ଷା

ଆମେ ଭଲ ଅବସ୍ଥାରେ ଅଛୁ । କାରଣ ଯୁଦ୍ଧ ଶେଷ ପର୍ଯ୍ୟନ୍ତ ଆମେ ହୁଏତ ବଞ୍ଚିଯିବା କିନ୍ତୁ ଯୁଦ୍ଧ ଶେଷ ହେବା ଆଗରୁ ହିଟ୍‌ଲର୍ ଶେଷ ହୋଇ ଯାଇଥିବ ।

ବେହେଲାର ତାଳେ ତାଳେ ଅନ୍ୟମାନେ ନାଚୁଥିଲେ । ଓର୍ଲି ମୋ ପାଖରେ ଛିଡ଼ା ହୋଇଥିଲା । ଦେଖିଲି ସେ ବଡ଼ ବିବ୍ରତ ଏବଂ ମଳିନ ଦିଶୁଥିଲା ।

ମୁଁ ତାକୁ ପଚାରିଲି ''କ'ଣ, କିଛି କୁଆଡ଼େ ଘଟିଲା କି ?

''ଚୁପ୍ ଚାପ୍ ବାହାରକୁ ଚାଲ । ଯେମିତି କେହି ନ ଜାଣନ୍ତୁ ।'' ଓର୍ଲି କହିଲା ।

ଆମେ ଦୁହେଁ ଅକ୍ଷମଶାଳା ବାହାରକୁ ଗଲୁ । ବର୍ଷା ଅନବରତ ହେଉଥିଲା । ପ୍ଲାଟ୍‌ଫର୍ମ ମଧ୍ୟ ଆଲୋକିତ । ନାତ୍‌ସୀ ଆତଙ୍କବାଦୀମାନେ ଟ୍ରେନ୍ ପାଖରେ ଛିଡ଼ା ହୋଇଥିଲେ । ବନ୍ଦୀ ପରିବହନ ଗାଡ଼ି ଆସିବା ବନ୍ଦ ଥିବାରୁ ଆମେ ଟିକେ ଖୁସି ଥିଲୁ । କିନ୍ତୁ ତାହା ପୁଣି ଆରମ୍ଭ ହୋଇଥିଲା । ସବୁ ନୀରବରେ ହେଉଥିଲା । ଏପରିକି କନ୍ଦାକଟା ବା ଚିତ୍କାର ଶୁଭୁ ନଥିଲା । ଉଲଗ୍ନ ପୁରୁଷ ବନ୍ଦୀମାନେ ଗାଡ଼ିରୁ ଓହ୍ଲାଇଲେ । ସେମାନେ କେବଳ ଅସ୍ଥିଚର୍ମ ସର୍ବସ୍ୱ ଜୀବନ୍ତ ନରକଙ୍କାଳ ଗୁଡ଼ିକ । ସେମାନଙ୍କର ଚାଲିବା ଶକ୍ତି ନଥିଲା; କୌଣସି ମତେ ଚାଲୁଥିଲେ ।

ଓର୍ଲି କହିଲା, ''ସେମାନେ ସମସ୍ତେ ଋଷିଆନ୍ ବନ୍ଦୀ । ବନ୍ଦୀ ଶିବିରରେ ଖଟି ଖଟି ସେମାନେ ଅକର୍ମଣ୍ୟ ହୋଇଯାଇଛନ୍ତି । ତେଣୁ ସେମାନଙ୍କୁ ଗ୍ୟାସ୍‌କୁ ପଠାଇ ଦେବାକୁ ଅଣା ଯାଇଅଛି ।''

ସେମାନେ ସେହି ବର୍ଷା ଭିତରେ ଚାଲୁଥା'ନ୍ତି । କିଏବା ଝୁଲି ପଡୁଥାଏ । ସମସ୍ତେ ଗ୍ୟାସ୍ ଚ୍ୟାମ୍ବର୍ ଭିତରେ ପ୍ରବେଶ କଲେ । ପ୍ଲାଟ୍‌ଫର୍ମରେ ଜଳୁଥିବା ଲାଇଟ୍ ଲିଭିଗଲା । ଖାଲି ଗାଡ଼ିଗୁଡ଼ିକ ଫେରିଗଲା । ଆମେ ସେମିତି ବାହାରେ ଛିଡ଼ା ହୋଇଥିଲୁ ।

''ଆମେ ଝିଅମାନଙ୍କୁ କିଛି କହିବା ନାହିଁ, କିମ୍ବା ସେମାନଙ୍କ ଆନନ୍ଦକୁ ନଷ୍ଟ କରିବା ନାହିଁ'', ଓର୍ଲି କହିଲା । ଆମେ ଆଉ ଅକ୍ଷମଶାଳାକୁ ଫେରିଲୁ ନାହିଁ । ଗାଇବା କିମ୍ବା ନାଚିବାର ମାନସିକ ଶକ୍ତି ଆମର ନଥିଲା । ସବୁ କଥା ସବୁ କାର୍ଯ୍ୟ କ'ଣ ସବୁବେଳେ କରିହୁଏ ?

■■■

– ୩୧ –

## ସେହି ବୃଦ୍ଧାମାନେ

୧୯୪୪ ମସିହାର ଶେଷ ଆଡ଼କୁ ଆଉସ୍‌ଭିତ୍‌ଜ୍‌ର ଆକାଶରେ ଋଷିଆର ଯୁଦ୍ଧ ବିମାନ ଘନ ଘନ ଉଡ଼ିବାକୁ ଲାଗିଲା । ତା' ଫଳରେ କେବଳ ରାତିରେ ନୁହେଁ ଦିନରେ ମଧ୍ୟ ସତର୍କ ଘଣ୍ଟି (ସାଇରନ୍) ବାରମ୍ବାର ବାଜିଲା । ଦିନେ ଅପରାହ୍ଣରେ ସାଇରନ୍ ବାଜିବା

ଘଟଣା ମୋର ଭଲ ଭାବରେ ମନେ ଅଛି । ସେଦିନ ସାଇରନ୍ ବାଜିବା ସଙ୍ଗେ ସଙ୍ଗେ ଜଣେ ନାତ୍‌ସୀ ଆତଙ୍କବାଦୀ ଛାନିଆ ହୋଇ ଅକ୍ଷମଶାଳାରେ ଲୁଚିଯିବା ପାଇଁ ଆସିଥିଲା । ଅବଶ୍ୟ ଆମ ପାଖରେ ଲୁଚୁଥିଲା ବୋଲି ତାକୁ ସଙ୍କୋଚ ଲାଗୁଥିଲା । ସେ ଆମକୁ ବୁଝାଉଥାଏ, "ଋଷିୟାନ୍‌ମାନେ ଅକ୍ଷମଶାଳା ଉପରେ କଦାପି ବୋମା ପକାଇବେ ନାହିଁ ବୋଲି ଆଶାକରି ମୁଁ ଏଠାକୁ ଲୁଚିବାକୁ ଆସିଲି ।" ସେ ବିଚରା ମରିବାକୁ ଖୁବ୍ ଡରୁଥିଲା । ଋଷିୟା ପକ୍ଷରୁ ବୋମାମାଡ଼ ହେଉଥିଲା ଶୁଣି ଆମକୁ ଭାରି ଖୁସି ଲାଗୁଥିବାରୁ ଆମେ ମୁହଁକୁ ତଳକୁ କରି ହସୁଥିଲୁ । ଅବଶ୍ୟ ସେଦିନ ବାହାରେ କାର୍ଯ୍ୟ କରୁଥିବା କେତେକ ମହିଳା ବୋମା ମାଡ଼ରେ ମୃତ୍ୟୁବରଣ କରିଥିଲେ । ସନ୍ଧ୍ୟାରେ ଶବବାହୀ ଗାଡ଼ି ସେହି ଶବଙ୍କୁ କ୍ୟାମ୍ପ ପାଖକୁ ଆଣିଥିଲା ।

ଅକ୍ଟୋବର ଶେଷରେ ମହିଳା କ୍ୟାମ୍ପ ପୁରୁଣା ଜୀପ୍‌ସୀ କ୍ୟାମ୍ପକୁ ସ୍ଥାନାନ୍ତରିତ ହୋଇଯାଇଥିଲା । ଅକ୍ଷମଶାଳା ଏକ ବଡ଼ ବ୍ୟାରାକ୍‌ରେ ଚାଲିଲା । ତା ପଛକୁ ଥିବା ରୁମ୍‌ଟି ବେଶ୍ ଆରାମ୍‌ଦାୟକ ଏବଂ ସେଥିରେ ବେଶ୍ କେତେକ ଫର୍ଣ୍ଣିଚର ମଧ୍ୟ ଥିଲା । ତାହା ଆମମାନଙ୍କ ରହିବା ପାଇଁ ଉଦ୍ଦିଷ୍ଟ ଥିଲା । ସେଠାରେ ମାଗଦା ପରିବର୍ତ୍ତେ ଗୋଟିଏ ଋଷିଆନ୍ ଝିଅ ସଫେଇ କାର୍ଯ୍ୟ କରୁଥିଲା । ଝିଅଟି ବେଶ୍ ତେଜୀୟାନ୍ ଓ ଖୁସ୍ ମିଜାଜ୍‌ର । ଜର୍ମାନ୍ ଡାକ୍ତରଙ୍କ ପାଇଁ ଆମେ କୌଣସି ମୁଣ୍ଡ ବ୍ୟଥାର କାରଣ ନଥିଲୁ । ଆମେମାନେ ସ୍ୱାଧୀନତାର ସ୍ୱାଦ ଅନୁଭବ କରୁଥିଲୁ । ତାହା ମୃତ୍ୟୁର ମଧ୍ୟ ହୋଇପାରେ ।

ମୁକ୍ତାଞ୍ଚଳରୁ ମାରୁସିଆ, ମାନ୍‌ସୀ ଓ କ୍ରିଟା ପ୍ରଭୃତିଙ୍କ ଉଦ୍ଦେଶ୍ୟରେ ଗୋଟେ ଗୋଟେ ଉପହାର ପୁଡ଼ିଆ ଆସୁଥିଲା । ଆମର ଆଉ ଖାଦ୍ୟର ଅଭାବ ରହିଲା ନାହିଁ । ବେଳେବେଳେ ମୁକ୍ତାଞ୍ଚଳରୁ ଶୁଭେଚ୍ଛୁମାନେ ଆମକୁ ଦେଖିବାକୁ ଆସୁଥିଲେ । ସେମାନେ ଆମ ପାଇଁ ପୋଷାକ ପତ୍ର ଓ ବ୍ୟାଣ୍ଡେଜ୍ ଆଣୁଥିଲେ । ଏପରିକି ଆମ ସହ ଘଣ୍ଟା ଘଣ୍ଟା ବିତାଉଥିଲେ । ସେମାନଙ୍କ ସହ ଆସୁଥିବା ନାତ୍‌ସୀ ଆତଙ୍କବାଦୀମାନେ ଆମକୁ ବିରକ୍ତ କରୁ ନଥିଲେ । ଆମ ଆଖି ଆଗରେ ଗୋଲାପୀ ଭବିଷ୍ୟତର ଚିତ୍ର ଝଲସି ଉଠୁଥିଲା ।

ସେହି ବର୍ଷ ନଭେମ୍ବର ମାସରେ ଆମେ ରୋଗୀ ଭର୍ତ୍ତି କାର୍ଯ୍ୟ ଶେଷ କରି ମଧ୍ୟାହ୍ନ ଭୋଜନରେ ବସିଥିଲୁ । ହଠାତ୍ ଅପ୍ରତ୍ୟାଶିତ ଭାବରେ ଡାକ୍ତର ମେଙ୍ଗେଲ୍ ଅକ୍ଷମଶାଳାରେ ପହଞ୍ଚିଗଲା । ତାକୁ ଦେଖି ଆମ ହାଲୁକ ଶୁଖିଗଲା । କାରଣ ଦୁଷ୍ଟଲୋକର ଆଗମନଟା କୌଣସି ଶୁଭ ଲକ୍ଷଣ ନୁହେଁ । ଆମେ ମଧ୍ୟ ବଡ଼ ଅପ୍ରସ୍ତୁତ ଅବସ୍ଥାରେ ଥିଲୁ ।

ମେଙ୍ଗେଲ୍ ଏତିକି ମାତ୍ର କହିଦେଇ ଗଲା ଯେ ନୂତନ ପରିବହନ ଗାଡ଼ିରେ ଯେଉଁ ମହିଳାମାନେ ଆସିବେ ସେମାନଙ୍କୁ ଏଠାରେ ରଖିବ । ମୁଁ ଆସିବା ପର୍ଯ୍ୟନ୍ତ ସେମାନେ ଅକ୍ଷମଶାଳାରେ ଥିବେ । ମୁଁ ସେମାନଙ୍କୁ ଦେଖିବି । ଅଳ୍ପ କେଇଘଣ୍ଟା ପରେ ମୁଁ ଫେରିବି ।

କିଛି ସମୟ ପରେ ପରେ ଓର୍ଲି ଆସି ପହଞ୍ଚିଗଲା ଏବଂ ତା ପଛରେ ସତୁରି ଜଣ ବୃଦ୍ଧା ମଧ୍ୟ ଚାଲିଥିଲେ । ସେମାନେ ସ୍ଲୋଭାକିଆ ଗାଡ଼ିରେ ଆସିଥିଲେ ଏବଂ ସେମାନଙ୍କୁ ଏକ ଇହୁଦୀ ଜରା ନିବାସ (Oldage Home)କୁ ଅଣାଯାଇଥିଲା । ମୋର ଜୀବଦ୍ଦଶାରେ ମୁଁ ଏଭଳି ବୃଦ୍ଧାଙ୍କୁ ପୂର୍ବରୁ କେବେ ଦେଖି ନଥିଲି । ଆମେ ସେମାନଙ୍କର ନାମ ରେଜିଷ୍ଟରରେ ଲେଖିବା ବେଳେ ଜାଣିଲୁ ଯେ କନିଷ୍ଠତମ ବୃଦ୍ଧାଙ୍କର ବୟସ ଅଡ଼ଷଠି ବର୍ଷ । ସେମାନେ ସମସ୍ତେ ପାଦ ପର୍ଯ୍ୟନ୍ତ କଳା ଲମ୍ବା ସ୍କର୍ଟ ପିନ୍ଧିଥିଲେ । ଅତୀତରେ ସେଭଳି ବୟସ୍କ ଲୋକଙ୍କୁ ସିଧା ଗ୍ୟାସ୍ ଘରକୁ ପଠାଇ ଦେଉଥିଲେ । କିନ୍ତୁ ସେଦିନ ସେହି ବୃଦ୍ଧାମାନଙ୍କୁ ହସ୍‌ପିଟାଲରେ ରଖିବାକୁ ଆମକୁ ନିର୍ଦ୍ଦେଶ ଦିଆଯାଇଥିଲା । ଅବିଶ୍ୱାସ୍ୟ ଦୃଷ୍ଟିରେ ଆମେ ପରସ୍ପରକୁ ଅନାଅନି ହେଲୁ । କୌଣସି ଏକ ବିସ୍ମୟଜନକ ଘଟଣା ଘଟିବାକୁ ଯାଉଥିଲା । କିନ୍ତୁ ସେହି ଘଟଣାଟି କ'ଣ ହୋଇପାରେ ଆମେ କିଛି କଳ୍ପନା କରିପାରୁ ନଥିଲୁ ।

କେତେକ ବୃଦ୍ଧା ବସିବାକୁ ମଧ୍ୟ ସମର୍ଥ ନ ଥିଲେ । ସେମାନେ ଷ୍ଟ୍ରେଚର୍‌ରେ ପଡ଼ି ରହି ମେଙ୍ଗେଲ୍‌କୁ ଅପେକ୍ଷା କରିଥିଲେ । ଓର୍ଲି ମଧ୍ୟ ଆମ ଭଳି ବିସ୍ମିତ ହୋଇଯାଇଥିଲା । ଏଭଳି ବ୍ୟତିକ୍ରମର କାରଣ ସେ ମଧ୍ୟ ବୁଝିପାରୁ ନଥିଲା ।

ସେ ଆମକୁ କହୁଥିଲା, ''ହେଟା ବାଘ ରୂପ ବଦଳେଇ ମେଣ୍ଢା ଛୁଆର ଅଭିନୟ କରୁଛି ।''

ସେତେବେଳେ ମୋ ମନରେ ଯେଉଁ ଅଶୁଭ ଚିନ୍ତା ଉଙ୍କି ମାରୁଥିଲା, ତାହା ମୁଁ ସ୍ୱୀକାର କରୁଛି । ମୁଁ ଭାବୁଥିଲି ''କେତେ ଅନିନ୍ଦ୍ୟ ସୁନ୍ଦରୀ ସ୍ୱାସ୍ଥ୍ୟବତୀ, କର୍ମକ୍ଷମ ତରୁଣୀମାନଙ୍କୁ ନିର୍ବିଚାରରେ ଗ୍ୟାସ୍ ଚ୍ୟାମ୍ବରକୁ ପଠାଇ ଦିଆଯାଉଥିଲା । ଅଥଚ ଅତ୍ୟନ୍ତ ବୃଦ୍ଧ, ମୁମୂର୍ଷୁ ଅକର୍ମଣ୍ୟା ବୃଦ୍ଧାମାନଙ୍କୁ ବା କାହିଁକି ବଞ୍ଚାଇ ରଖାଯାଇଛି ?'' ମୁଁ ବୁଝି ପାରୁ ନଥିଲି କାହିଁକି ମୋ ମନରେ ସେ ପାପ କଥା ଆସୁଥିଲା । ଜୀବନକୁ ଉପହାର ରୂପେ ପାଇ ସେହି ବୃଦ୍ଧାମାନଙ୍କର କ'ଣ ବଞ୍ଚିବାର ଅଧିକାର ନଥିଲା ।

ଆମେ ସେମାନଙ୍କର ନାମ ଲେଖାଲେଖି କାମ ଶେଷ କଲୁ । ମେଙ୍ଗେଲ୍ ପହଞ୍ଚିବା ସଙ୍ଗେ ସଙ୍ଗେ ଓର୍ଲି ହାଜର ହେଲା । ମେଙ୍ଗେଲ୍ କିଛି ନ କହି ହାତ ହଲାଇ ଦେଲା ଏବଂ ବୃଦ୍ଧାମାନଙ୍କର ନାମ ଲେଖାଥିବା ରେଜିଷ୍ଟରରେ ଆଖି ବୁଲାଇବା ବେଳେ କୋଣରେ ବସିଥିବା ବୃଦ୍ଧା ଜଣକ ତା' ଉଦ୍ଦେଶ୍ୟରେ କହିଲା, ''ଆମ ଭଳି ବୃଦ୍ଧାମାନଙ୍କର ନିରାପତ୍ତା ଲାଗି ତୁମର ବ୍ୟସ୍ତତା ଯୋଗୁଁ ଈଶ୍ୱର ତୁମର ମଙ୍ଗଳ କରିବେ ।''

ମେଙ୍ଗେଲ୍ ଚମକି ପଡ଼ି ଆମ ଆଡ଼କୁ ଅନେଇଲା । ସେ ଆମ ମୁହଁ କାଳେ ଦେଖି ପକାଇବ, ଆମେ ତଳକୁ ଅନେଇ ଛିଡ଼ା ହେଲୁ ।

ତା'ପରେ ସେହି ବୃଦ୍ଧାର ଉଦ୍ଦେଶ୍ୟରେ ଚଢ଼ାଗଳାରେ କହିଲା, ''ମୋତେ ଭଲ

ଭାବରେ ଜାଣିବା ପୂର୍ବରୁ କାହିଁକି ଆଶୀର୍ବାଦ କରୁଛୁ ?'' ବୃଦ୍ଧା ଜଣକ ମେଙ୍ଗେଲ୍‌ର କର୍କଶ ସ୍ୱରରେ ଡରିଯାଇ ଚୁପ୍ ରହିଲା ।

ବହୁତ ଗୁଡ଼ିଏ ଷ୍ଟ୍ରେଚରରେ ବୃଦ୍ଧାମାନେ ଶୋଇଥିଲେ । ସେମାନେ ଦୀର୍ଘ ପଥ ଯାତ୍ରା କରି ଭୀଷଣ ଅସୁସ୍ଥ ଥିଲେ ।

ସେମାନଙ୍କୁ ଗୋଟିଏ ଲେଖା ଫେନଲ୍ ଇଞ୍ଜେକ୍‌ସନ୍ ଦେଇଦିଅ । କାହିଁକି ସେମାନେ ଅଧିକ ସମୟ କଷ୍ଟ ପାଇବେ ? ମେଙ୍ଗେଲ୍ ମୁରୁକି ହସି ଓର୍ଲିକୁ ସେହି ଅର୍ଡର ଦେଇସାରି ତା'ର ଉତ୍ତରକୁ ଅପେକ୍ଷା କଲା ।

''ସେ ଇଞ୍ଜେକ୍‌ସନ୍ ମୋତେ ଦେଇ ଆସେନା । ସେ କାର୍ଯ୍ୟରେ ଆପଣ ଜଣେ ସ୍ପେସାଲିଷ୍ଟ୍ ।'' ଓର୍ଲିର ଜବାବ ।

''ଓର୍ଲି ମୁଁ ତତେ ଗୋଟିଏ ସଦୁପଦେଶ ଦେଉଛି ।''

''ଏଠାରେ ଯାହା ଦେଖି ଆସିଲୁ । ସବୁ ଭୁଲି ଯିବୁ ।''

ଓର୍ଲି ବିଳମ୍ବ ନ କରି ଜବାବ୍ ଦେଲା, ''କଦାପି ନୁହେଁ ।''

■■■

- ୩୨ -

# ଇଲିଆ ଇଉରେନ୍‌ବର୍ଗଙ୍କ ଭାଷଣ

୧୯୪୪ ନଭେମ୍ବର ମାସରେ ହାନ୍‌ସୀ ନାମକ ଜନୈକ ଅଷ୍ଟ୍ରିଆ ବାସୀ କମ୍ରେଡ୍ ଆମକୁ ଦେଖା କରିବାକୁ ଆସିଥିଲେ । ଆମର ଗୁପ୍ତ ଫାସିଷ୍ଟ୍ ବିରୋଧୀ ପ୍ରତିରୋଧ ବାହିନୀ ତାଙ୍କୁ ଦାୟିତ୍ୱ ଦେଇଥିଲା, ଯେପରିକି ସେ ଟ୍ରେନ୍ ପ୍ଲାଟ୍‌ଫର୍ମରେ କାର୍ଯ୍ୟ କରୁଥିବା କମାଣ୍ଡୋମାନଙ୍କ ପାଖରେ ରହିବେ ଏବଂ ନୂତନ ଆଗନ୍ତୁକମାନଙ୍କୁ ସେମାନଙ୍କର ବିପଦ ସମ୍ପର୍କରେ ସତର୍କ କରାଇଦେବେ । ସେହି କାର୍ଯ୍ୟ କରୁ କରୁ ସେ ନାତ୍‌ସୀ ଆତଙ୍କବାଦୀଙ୍କ ହାତରେ ଧରାପଡ଼ି ଗ୍ୟାସ୍‌କୁ ଯିବାର ବ୍ୟବସ୍ଥା ମଧ୍ୟ ହୋଇଯାଇଥିଲା । କାରଣ କେତେଜଣ ସନ୍ଦୀହାନ୍ ବନ୍ଦୀ ହାନ୍‌ସୀଙ୍କ ସତର୍କବାଣୀର ସତ୍ୟତା ସମ୍ପର୍କରେ ଆତଙ୍କବାଦୀଙ୍କୁ ପଚାରି ଦେବାରୁ ହାନ୍‌ସୀ ବିପଦରେ ପଡ଼ିଯାଇଥିଲେ । ଯାହାହେଉ ସେ ଗ୍ୟାସ୍‌ରୁ ଖସି ଯାଇଥିଲେ ଏବଂ ଆମ ପାଖରେ ପହଞ୍ଚି ଯାଇଥିଲେ । ସେ ତାଙ୍କର ସ୍ୱଭାବ ସୁଲଭ ଖୁସ୍ ମିଜାଜ୍‌ର ଥିଲେ ଏବଂ ତାଙ୍କ ମନରେ କେତେକ ନିର୍ଦ୍ଦିଷ୍ଟ ଫଳପ୍ରଦ ଯୋଜନା ମଧ୍ୟ ଥିଲା । ସେ ମୋ ପାଇଁ ଗୋଟେ ସୁନ୍ଦର ଗରମ କୋଟ ଆଣିଥିଲେ । ମୁଁ ରୋଷ୍ଟକ୍‌ରେ ୧୯୪୫ ମସିହାରେ ସେହି କୋଟକୁ ବିକ୍ରି କରି କିଛି ରୁଟି ଓ ବାକ୍ସେ ଲହୁଣୀ ଯୋଗାଡ଼ କରିଥିଲି ।

ସ୍ୱାଭାବିକ ଭାବେ ଆମେ ସେହି କ୍ୟାମ୍ପର ଭବିଷ୍ୟତ ସମ୍ପର୍କରେ ତାଙ୍କ ସହ ବହୁ

ଆଲୋଚନା କରିଥିଲୁ । ସେ ଆମ ପାଇଁ ଖୁବ୍ ମଜା ମଜା ଖବର ଆଣିଥିଲେ । ସେ ଆମକୁ ଖବର ଦେଇଥିଲେ ଯେ ରୁଷିୟାର ଲାଲ ଫୌଜ ପ୍ରୁସିଆର ସୀମା ଅତିକ୍ରମ କରିଗଲେଣି ଏବଂ ଜର୍ମାନୀ ମାଟିରେ ସେତେବେଳେ ଯୁଦ୍ଧ ଚାଲିଥିଲା । ସେଥିପାଇଁ ଜର୍ମାନମାନେ ଗ୍ୟାସ୍ ହତ୍ୟା ବନ୍ଦ କରିଦେଇଥିଲେ । ହାନ୍‌ସୀ କହୁଥିଲେ, ''ଜର୍ମାନ୍ ମାନେ ମଧ୍ୟ ସେ ଦଶା ଭୋଗିବେ ବୋଲି ସେମାନେ ଆଶଙ୍କା କରୁଥିଲେ ।'' ମନେ ହେଉଥିଲା, ସେହି ମର୍ମରେ ଋଷିୟାନ୍ ମାନେ ଜର୍ମାନୀକୁ ଏକ ଚରମପତ୍ର ଦେଇଥିଲେ ।

ମେଙ୍ଗେଲ୍ କାହିଁକି ସେ ଅକର୍ମଣ୍ୟ ବୃଦ୍ଧା ମାନଙ୍କୁ ଗ୍ୟାସ୍‌କୁ ପଠାଇ ନଥିଲା ତାହାର କାରଣ ମୁଁ ବୁଝିଗଲି । ୧୯୪୧ ମସିହାରେ ସେହି ଜର୍ମାନ୍ ଶାସକଟି ନିଜ ଟ୍ରକ୍‌ରେ ବଡ଼ ବଡ଼ ଧଳା ଅକ୍ଷରରେ ବର୍ଲିନ୍-ମସ୍କୋ ଲେଖିଦେଇ ପୃଥିବୀର ଅନ୍ୟାନ୍ୟ ଶାସକମାନଙ୍କୁ ଆତଙ୍କିତ କରିଦେଇଥିଲା ।

ଯଦିଓ ଯୁଦ୍ଧ ସେ ପର୍ଯ୍ୟନ୍ତ ଶେଷ ହୋଇ ନଥିଲା ତଥାପି ଜର୍ମାନୀର ପରାଜୟ ଅବଧାରିତ ହୋଇଥିବାରୁ ସେମାନେ ବିଜେତାମାନଙ୍କୁ ଖୁସ୍ କରିବାକୁ ଚେଷ୍ଟା କରୁଥିଲେ । ଦିନେ ଦିବସର ଶେଷ ପ୍ରହରରେ ଓର୍ଲି ଅକ୍ଷମଶାଳାରେ ପହଞ୍ଚିଗଲା ଏବଂ କହିଲା, ''ଗେଟ୍ ପାଖରେ କାହାକୁ ଜଗାଇ ଦିଅ ।'' ତା'ପରେ ପୁଣି କହିଲା, ''ମୁଁ ତୁମମାନଙ୍କୁ ଜର୍ମାନୀର ପ୍ରଚାର ମନ୍ତ୍ରୀ ଗୋବେଲ୍‌ସସ୍‌ର ସମ୍ବାଦ ପତ୍ର 'ଡାସ୍ ରାଇଖ' (Das Reich) ଖଣ୍ଡେ ଦେବି । ଯେଉଁଥିରେ ଇଲିଆ ଇଉରେନ୍‌ବର୍ଗଙ୍କର ଗୋଟିଏ ବିବୃତି ପୁନଃ ମୁଦ୍ରିତ ହୋଇଛି ।''

ମୁଁ ତ ପ୍ରଥମେ ଭାବିଲି, ''ମୁଁ କିଛି ଭୁଲ ଶୁଣୁ ନାହିଁ ତ !'' ''ଇଲିଆ ଇଉରେନ୍‌ବର୍ଗଙ୍କର ବିବୃତିକୁ ଗୋବେଲ୍‌ସସ୍ ଛାପିଛି ? ଆମକୁ ଉସକେଇବା ପାଇଁ ନୁହେଁ ତ ?'' ଓର୍ଲି କହିଲା, ''ପଢ଼ ଜାଣିବ ।''

ବିବୃତିର ଏକ ସଂକ୍ଷିପ୍ତ ସମ୍ପାଦକୀୟରେ ସମ୍ପାଦକ ଲେଖିଥିଲେ, ''ଜର୍ମାନୀ ଭିତରେ ପ୍ରବେଶ କରିଥିବା ରୁଷିଆର ସୈନ୍ୟମାନଙ୍କ ଉଦ୍ଦେଶ୍ୟରେ ଏକ ବାର୍ତ୍ତା ଋଷିଆନ୍ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହୋଇଅଛି । ଜର୍ମାନୀ ଯଦି ପରାଜିତ ହୁଏ, ତାହାର ସୈନ୍ୟମାନଙ୍କ ଭାଗ୍ୟରେ କ'ଣ ଘଟିବ, ତାହା ଜର୍ମାନ୍‌ମାନଙ୍କୁ ଜଣାଇଦେବା ଆମର ଉଦ୍ଦେଶ୍ୟ ଏବଂ ବଲ୍ସେଭିକ୍ ସୈନ୍ୟମାନଙ୍କ ବିରୁଦ୍ଧରେ ଲଢ଼ିବା ପାଇଁ ସେମାନଙ୍କ ଭିତରେ ପୌରୁଷକୁ ଜାଗ୍ରତ କରିବା ଆମର ଉଦ୍ଦେଶ୍ୟ । ଆମ ପାଇଁ ଫେରିବାର ସମସ୍ତ ରାସ୍ତା ରୁଦ୍ଧ ।''

ସେହି ଭୂମିକା ପରେ ଇଲିଆ ଇଉରେନ୍‌ବର୍ଗଙ୍କର ବିବୃତି ପ୍ରକାଶିତ ହୋଇଥିଲା । ମୁଁ ମୋର ସ୍ମୃତି ପଟରୁ ସେହି ବିବୃତିଟି ସଂକ୍ଷେପରେ ଏଠାରେ ଅବତାରଣା କରୁଅଛି ।

ମୁଁ ବହୁବାର ତାହା ପାଠ କରିଥିବାରୁ ମୋର ମନେହୁଏ ମୁଁ ପ୍ରାୟ ନିର୍ଭୁଲ ଭାବରେ ସେ ବିବୃତିର ସାରାଂଶ ଏଠାରେ ଉଲ୍ଲେଖ କରୁଅଛି ।

ଇଲିଆ ଇଉରେନ୍‌ବର୍ଗ ଲେଖିଥିଲେ, ''ଲାଲ୍ ଫୌଜର ସୈନିକ ଗଣ ! ତୁମ୍ଭେମାନେ ହିଟ୍‌ଲରର ଜର୍ମାନୀ ଭିତରେ ପ୍ରବେଶ କରିଅଛ । ତୁମ୍ଭେମାନେ ବର୍ଲିନ୍ ପଥର ଯାତ୍ରୀ । ପ୍ରତିଶୋଧ ନିଅ । ସୋଭିଏତ୍ ୟୁନିୟନ୍‌ର ଲୋକମାନେ ଯେଉଁ ଅକଥନୀୟ ଅତ୍ୟାଚାର ସହିଛନ୍ତି, ଅନ୍ୟାନ୍ୟ ବିଜିତ ରାଷ୍ଟ୍ରର ନିର୍ଦ୍ଦୋଷ ଜନସାଧାରଣ ଯାହା ସହିଛନ୍ତି, ଜର୍ମାନମାନେ କରିଥିବା ସମସ୍ତ ନିର୍ଯାତନାର ପ୍ରତିଶୋଧ ନିଅ ।

''ତୁମ ହୃଦୟରେ ଯଦି ଜର୍ମାନୀମାନଙ୍କ ପ୍ରତି ଦୟା ଉଦ୍ରେକ ହୁଏ, ତେବେ ମନେ ପକାଅ ତୁମର ଜନନୀମାନଙ୍କ କଥା, ଯେଉଁମାନଙ୍କର କେଶ ଧରି ରାସ୍ତାରେ ଘୋଷଡ଼ାଯାଇଥିଲା, ତୁମ ଭଉଣୀମାନଙ୍କ କଥା ଯେଉଁମାନଙ୍କୁ ନିର୍ମମ ଭାବରେ ଧର୍ଷଣ କରାଯାଇଥିଲା, ତୁମ ସନ୍ତାନମାନଙ୍କ କଥା, ଯେଉଁମାନଙ୍କୁ ବଡ଼ୀ ଖୁଣ୍ଟରେ ଗୁଞ୍ଜି ଦିଆଯାଇଥିଲା, ନିର୍ମମ ନିଷ୍ଠୁର ଭାବରେ ତାହାର ପ୍ରତିଶୋଧ ନିଅ । ପ୍ରତିଶୋଧର ମଦିରା ଆକଣ୍ଠ ପାନ କର ।'' ଇତ୍ୟାଦି ।

ଆମମାନଙ୍କ ମନ ମଧ୍ୟ ପ୍ରତିଶୋଧ ପିପାସାରେ ଅଥୟ ହୋଇ ଉଠିଲା । ଆମ ପରି ଯୁବକ ଯୁବତୀ ଜୀବନଗୁଡ଼ିକୁ ନିଃଶେଷ କରିଦେବା, ନିଜର ଆତ୍ମୀୟମାନଙ୍କୁ ହତ୍ୟା କରିବା, ଅହୋରାତ୍ର ଆଉସ୍‌ଭିଚ୍‌ଜ୍‌ର ଲାଲ୍ ଆକାଶ, ପୋଡ଼ା ମଣିଷ ମାଂସର ଗନ୍ଧରେ ଭାରାକ୍ରାନ୍ତ ବାୟୁମଣ୍ଡଳର କର୍ତ୍ତାମାନଙ୍କ ବିରୁଦ୍ଧରେ ପ୍ରତିଶୋଧ ନେବାକୁ ଆମେମାନେ ଉଦ୍ୟୁକ୍ତ ହୋଇପଡ଼ିଲୁ ।

ଆମେ ଆଲୁଅ ଜାଳିଦେବା ପରେ ଦେଖିଲୁ ଓର୍ଲି ସେଠାରେ ନାହିଁ । ସେ ଚୁପ୍‌ଚାପ୍ ଅକ୍ଷମଶାଳାକୁ ପଳାଇଯାଇ ଗୋଟିଏ କୋଣରେ ଟେବୁଲ୍ ଉପରେ ମୁଣ୍ଡ ଦେଇ ବସିଥିଲା । ହତାଶା ଓ ଦୁଃଖରେ ସେ କାନ୍ଦୁଥିଲା । ଆମେ ତା' ପାଖରେ ପହଞ୍ଚିଯିବାରୁ ସେ କହିଲା, ''ମୋ'ର ଦୁଃଖର କାରଣ ବୁଝି ପାରୁଛ ? ସେମାନେ ସମସ୍ତେ ଆମରି ମଣିଷ । ମୋର ଜର୍ମାନୀ ଜାତି ଆଜି ପରାଜିତ । ମୋର ଭାଇ ଭଉଣୀ ପିତାମାତା ସମସ୍ତେ ଏଠାରେ ଅଛନ୍ତି ।

ଆମେ ବା ତାକୁ କି ଆଶ୍ୱାସନା ଦେବୁ ? ସେ ପୁଣି କହିଲା, ''ମୋର ବକ୍ଷ ବିଦୀର୍ଣ୍ଣ ହୋଇଯାଉଛି ।''

■■■

– ୩୩ –

# ନବବର୍ଷ ଆଗମନି ଉତ୍ସବ

କାନ୍ଥରେ ଝୁଲୁଥିବା ଦର୍ପଣ ସାମନାରେ ସେଦିନ ଲମ୍ବା ଧାଡ଼ି । ପ୍ରତ୍ୟେକେ ସେଦିନ ସୁନ୍ଦର ଦିଶିବାକୁ ଉତ୍ସୁକ ଥିଲେ । ଆମ ଭିତରେ ପ୍ରବଳ ଉଦ୍ଦୀପନା ଯେପରିକି ଆମେ ଗୋଟାଏ ବଡ଼ ବଲ୍ ନାଚକୁ ବାହାରିଥିଲୁ । ନବବର୍ଷକୁ ଆମକୁ ସ୍ୱାଗତ କରିବାକୁ ହେବ ।

୧୯୪୪ର ଡିସେମ୍ବର ମାସରୁ ଆମେ ସେଥିପାଇଁ ମନକୁ ପ୍ରସ୍ତୁତ କରି ସାରିଥିଲୁ । ଆମ ଭିତରେ କୌଣସି ସନ୍ଦେହ ନଥିଲା । ୧୯୪୫ ମସୀହା ତା ସାଙ୍ଗରେ ନେଇ ଆସିବ ଜର୍ମାନୀର ଶୋଚନୀୟ ପରାଜୟ ଓ ରୁଷିୟା ସୈନ୍ୟମାନଙ୍କ ଦ୍ୱାରା ଆଉସ୍‌ଭିତ୍‌ଜ୍ ଅଧିକାର । ଅବଶ୍ୟ ଆମମାନଙ୍କ ଭବିଷ୍ୟତ ସମ୍ପର୍କରେ ଆମେ କିଛି ଅନୁମାନ କରି ପାରୁ ନଥିଲୁ । ଅର୍ଥାତ୍ ଆମେ ସେତେବେଳକୁ ଥିବା କି ନଥିବା ତାହା ଜାଣିବା ସମ୍ଭବ ନଥିଲା । ଆଜିଠାରୁ ସେକଥା ସବୁ ଅନୁମାନ କରିବା ଅନାବଶ୍ୟକ ଥିଲା । ଆମେ କେବଳ ଏତିକି ସ୍ଥିର କରିଥିଲୁ ଯେ ''ସାରା ବିଶ୍ୱର ଶହ ଶହ କୋଟି ଲୋକଙ୍କ ଭଳି ଆମେ ମଧ୍ୟ ନୂଆ ବର୍ଷକୁ ସ୍ୱାଗତ କରିବୁ ।''

ଅକ୍ଷମଶାଳାକୁ ଏକ ଉତ୍ସବର ରୂପ ଦେବାକୁ ଆମେ ସଜାସଜି କରିଥିଲୁ । କୋଠରୀର ମଧ୍ୟ ସ୍ଥଳରେ ଟେବୁଲ୍ ରଖି ତାକୁ ଧଳା ଟେବୁଲ୍ କ୍ଲଥ୍‌ରେ ଆଚ୍ଛାଦିତ କରିଦେଲୁ । ପୂର୍ବରୁ କେତେଦିନ ଧରି ଲୁସି ପ୍ରସ୍ତୁତ କରିଥିବା ସୁଖାଦ୍ୟ ମଧ୍ୟ ପ୍ଲେଟ୍‌ରେ ସଜାଇ ଦେଲୁ । ଲୁସି ଏରିଆ କିଚେନ୍‌ର ସୁପରିନ୍‌ଟେଣ୍ଡେଣ୍ଟ୍ ଥିଲା । ଅନ୍ୟ ଝିଅମାନେ ଯାହା ପାରୁଥିଲେ ସଂଗ୍ରହ କରି ଲୁସିକୁ ଯୋଗାଇ ଦେଇଥିଲେ । ଆମେମାନେ ମଧ୍ୟ ରୁଟି କିଛି ଜମା କରି ରଖିଥିଲୁ ଯେପରିକି ''ନୂଆବର୍ଷରେ କେହି ଖାଦ୍ୟାଭାବ ଅନୁଭବ କରିବେ ନାହିଁ ।'' ପ୍ରତ୍ୟେକଙ୍କ ପାଇଁ ଟେବୁଲ୍‌ରେ ସ୍ୱତନ୍ତ୍ର ପ୍ଲେଟ୍ ରହିଥିଲା । ପ୍ରତି ପ୍ଲେଟ୍‌ରେ ଥିଲା ନାମାଙ୍କିତ ଗୋଟେ କାର୍ଡ ଓ ପାଇନ୍ ଗଛର ଏକ ଚିତ୍ରିତ ଡାଳ ଏବଂ ସ୍ମାରକୀ ଉଦ୍ଦେଶ୍ୟରେ ଏକ ତାରକା ଚିହ୍ନ । ଏତଦ୍ ବ୍ୟତୀତ ପ୍ରତ୍ୟେକଙ୍କ ପାଇଁ ରହିଥିଲା ଗୋଟିଏ ଲେଖା ଉପହାର । ମୁଁ ଓର୍ଲିଠାରୁ ଏକ ଉପହାର ପାଇଥିବାର ମନେ ଅଛି ଏବଂ ତା' ପାଇଁ ମଧ୍ୟ ମୁଁ ଏକ ଉପହାର ଯୋଗାଡ଼ କରିଥିଲି । ସେଥିପାଇଁ ଅବଶ୍ୟ ମୋତେ ବହୁ ଆୟାସ କରିବାକୁ ପଡ଼ିଥିଲା ଏବଂ ଖଣ୍ଡିଏ ସୁନ୍ଦର ସିଲ୍‌କ ସ୍କାର୍ଫ ଯୋଗାଡ଼ ହୋଇଥିଲା ।

ମୋ' ସିଟ୍ ପାଖରେ ଟେବୁଲ୍ ଉପରେ ଥୁଆ ହୋଇଥିଲା ଏକ ସୁନ୍ଦର ପ୍ୟାକେଟ୍ । ସେଥିରେ ଲେଖାଥିଲା - ''ପ୍ରିୟ ସାରା ପାଇଁ ଓର୍ଲିର ଉପହାର ।'' ଅକ୍ଷମଶାଳା ଦ୍ୱାର

ଦେଶରେ ଜଗୁଆଳୀ କାର୍ଯ୍ୟ କରୁଥିବା ଝିଅଟି ବ୍ୟତୀତ ଅନ୍ୟ ସମସ୍ତେ ଏକତ୍ରିତ ହେଲେ । ଅତିଥି ସତ୍କାରିକା ଭୂମିକାରେ ଥିଲା ଲୁସି । ସେ ହସି ହସି ପ୍ରତ୍ୟେକଙ୍କୁ ପ୍ରତ୍ୟେକଙ୍କ ସିଟକୁ ପାଛୋଟି ନେଲା । ଟେବୁଲ୍ ମଝିରେ ଥୁଆ ହେଲା ଗୋଟିଏ ସୁରା ବୋତଲ । ଆମେ ବିସ୍ମିତ ହୋଇ ଭାବିଲୁ, ''ଏ ଜିନିଷ ସେ କେଉଁଠାରୁ ଆଣିଲା ?'' ଲୁସି କ୍ଷୁଦ୍ର ରାଜ୍ୟ ଲକ୍ସେମ୍‌ବର୍ଗର ଏକମାତ୍ର ପ୍ରତିନିଧି ଥିବାରୁ ଆମେ ତାକୁ ଲକ୍ସେମବର୍ଗର ରାଷ୍ଟ୍ରଦୂତ ବୋଲି ସମ୍ବୋଧନ କରୁଥିଲୁ । ପତଳା ଡେଙ୍ଗା ଓ ହସ ହସ ମୁଖ ଥିବା ଲୁସି ସମସ୍ତଙ୍କର ଅତ୍ୟନ୍ତ ପ୍ରିୟ ଥିଲା । ସେଦିନ ସେ ଯାହା ପ୍ରଦର୍ଶନ କଲା, ସେଥିରେ ଆମେ ମୁଗ୍ଧ ହୋଇଗଲୁ । ସେ ଏତେ ଚତୁରୀ ବୋଲି ଆମର ଧାରଣା ନଥିଲା ।

ଆମେମାନେ ଏହିଭଳି ଭାବରେ ବସିଥିବା ସମୟରେ ଗେଟ୍ ପାଖରେ ଜଗିଥିବା ଝିଅଟି ଦୌଡ଼ି ଆସି ଆମକୁ କହିଲା, ''ଦେଖିବ ଆସ, ସମଗ୍ର କ୍ୟାମ୍ପରେ ଅଦ୍ଭୁତ ରୂପ ।'' ଆମେ ସମସ୍ତେ ବାହାରକୁ ଦୌଡ଼ିଲୁ । ସମଗ୍ର କ୍ୟାମ୍ପଟି ଗୋଟାଏ ଭୂତ ସହର ଭଳି ଦିଶୁଥିଲା । ସର୍ବତ୍ର କେବଳ ବରଫ, କୁହୁଡ଼ି ଓ ନିସ୍ତବ୍ଧତାର ରାଜୁତି ।

''ମନେ ଅଛି, ପୂର୍ବରୁ, ନବବର୍ଷ ପୂର୍ବ ରାତ୍ରିରେ କ୍ୟାମ୍ପ କେଉଁ ରୂପ ଧାରଣ କରୁଥିଲା । ସବୁଆଡ଼େ ମଦ୍ୟପ ଜର୍ମାନ୍‌ମାନଙ୍କର ଗର୍ଜନ ଓ ସଙ୍ଗୀତ । ସାରା ରାତି କେବଳ ଚିତ୍କାର ଓ ଗୁଳିର ଆବାଜ । ଅନବରତ ବାଜୁଥିବା ଅର୍କେଷ୍ଟ୍ରାର ତାଳେ ତାଳେ ଜର୍ମାନ୍ ପୋଲିସ୍‌ର ନାଚ ଓ ଗୀତ ସକାଳ ପର୍ଯ୍ୟନ୍ତ ଲାଗି ରହୁଥିଲା । ଆଜି ସେମାନେ କାହାନ୍ତି ? କ'ଣ କୁଆଡ଼େ ଲୁଚିଛନ୍ତି ? ନା କୁଆଡ଼େ ପଳେଇଗଲେ ?

ସେହି ନିର୍ଜନତା ଏବଂ ମୃତ୍ୟୁସମ ନିସ୍ତବ୍ଧତା ଆମକୁ ଆଦୌ ଭଲ ଲାଗୁ ନଥିଲା । ସେପରି ସ୍ଥଳେ ଗେଟ୍‌ରେ ଜଗୁଆଳି ରଖିବା ଅନାବଶ୍ୟକ ଥିଲା । କେହି ତ କୁଆଡ଼େ ନଥିଲେ । ଆମେମାନେ ଖାଇ ବସିଲୁ । ଆମ ପ୍ଲେଟ୍ ପାଖରେ ଥିବା ତାରା ପ୍ରତୀକକୁ ପ୍ରଶଂସା ନକରି ରହି ପାରିଲୁ ନାହିଁ । ଓର୍ଲି ମୋତେ ଦ୍ୱିରଙ୍ଗ ବିଶିଷ୍ଟ ସ୍ୱେଟର ଦେଇଥିଲା । ଭୋଜନ ପରେ ନାଚ, ଗୀତ ଓ ବିଭିନ୍ନ ଭାଷାରେ କବିତା ଆବୃତ୍ତିର ଲହରୀ ଛୁଟିଲା । ତାହା ବେଶ୍ ଉଚ୍ଚ ସ୍ୱରରେ ମଧ୍ୟ ପ୍ରଦର୍ଶିତ ହେଉଥିଲା । ୧୯୪୧ ମସିହା ପରେ ତାହା ଥିଲା ଏକ ବିସ୍ମୟ ଜନକ ନବବର୍ଷ ଉତ୍ସବ । ବସ୍ତି ଭିତରେ ପ୍ରତି ନବବର୍ଷରେ ଆମେ ମୃତ୍ୟୁର ନିକଟବର୍ତ୍ତୀ ହେଉଥିଲୁ । ଆଶାବାଦର ସାମାନ୍ୟ ସୂଚନା ମଧ୍ୟ ନଥିଲା । ନବବର୍ଷରେ ଆମେମାନେ ପରସ୍ପର ଶୁଭେଚ୍ଛା ବିନିମୟ ମଧ୍ୟ କରିପାରୁ ନଥିଲୁ । ମୃତ୍ୟୁ ଦୂତ ଅହରହ ଦ୍ୱାର ଦେଶରେ ଆଘାତ କରୁଥିଲା ଏବଂ ସେଥିରୁ ମୁକ୍ତି ପାଇବାର କୌଣସି ଉପାୟ ଆମକୁ ଦିଶୁ ନଥିଲା । ଏବେ କିନ୍ତୁ ହାସ୍ୟୋଜ୍ଜ୍ୱଳ ଝିଅଗୁଡ଼ିକୁ ମୁଁ ଅଦମ୍ୟନୀୟ ଆନନ୍ଦରେ ଅନାଉଥିଲି । ମୁଁ ବୁଲି ବୁଲି ସମସ୍ତଙ୍କୁ ସ୍ନେହ ଚୁମ୍ବନ ଦେଉଥିଲି । ମୁଁ ଦୃଢ଼

ଭାବରେ ବିଶ୍ୱାସ କରୁଥିଲି ଯେ ଆମେ ଯୁଦ୍ଧର ଅଗ୍ନି ପରୀକ୍ଷାରୁ ନିଶ୍ଚୟ ଉତ୍ତୀର୍ଣ୍ଣ ହୋଇଯିବୁ ଏବଂ ଶେଷରେ ଆମେ ନିଶ୍ଚୟ ସୁଖଶାନ୍ତି ଲାଭ କରିବୁ ।

ହଠାତ୍ ଅକ୍ଷମଶାଳାର ଦରଜା ଖୋଲିଗଲା ଏବଂ ଜଣେ ନାତ୍‌ସୀ ଆତଙ୍କବାଦୀ ତା' ଭିତରକୁ ପଶିଗଲା । ତାକୁ ଦେଖି ଆମେମାନେ ପ୍ରାୟ ପଥର ପାଲଟିଗଲୁ । ତା'ର ବେଲ୍ଟରେ ଝୁଲୁଥିଲା ଗୋଟେ ପିସ୍ତଲ । ସେ ଯେ ଯେକୌଣସି ମୁହୂର୍ତ୍ତରେ ପିସ୍ତଲ ବାହାର କରି ଆମମାନଙ୍କୁ ଗୁଳି କରିବ ବୋଲି ଆମେ ଆଶଙ୍କା କଲୁ । ଅସମ୍ଭବ କୋଳାହଳ ଭିତରେ ସେହି ଅପ୍ରତ୍ୟାଶିତ ନୀରବତା ଆମ କାନକୁ ଯେମିତ ଝାଇଁ ଝାଇଁ କରି ଦେଉଥିଲା । ସୁସଜ୍ଜିତ ଟେବୁଲ୍ ଓ ତା' ମଝିରେ ଥିବା ସୁରା ବୋତଲକୁ ଉହାଡ଼ରେ ରଖିବା ପାଇଁ ଆମେ ସମସ୍ତେ ଟେବୁଲ୍ ଆଗରେ ଛିଡ଼ା ହୋଇଗଲୁ । ଆତଙ୍କବାଦୀ ଜଣକ ଆମ ଆଡ଼କୁ ମାଡ଼ି ଆସିଲା । କିନ୍ତୁ ଅତ୍ୟଧିକ ମଦ୍ୟପାନ କରିଥିବାରୁ ସେ ଟଳମଳ ହେଉଥିଲା ।

''କାହିଁକି ଚୁପ୍ ଚାପ୍ ହୋଇଗଲ ? ନାଚ ଗୀତ ବନ୍ଦ କଲ କାହିଁକି ?'' ସେ ଚିଲେଇ ବାକୁ ଲାଗିଲା ''ମୁଁ ତୁମ ଉତ୍ସବରେ ଯୋଗ ଦେବାକୁ ଆସିଛି ।'' ''ହିଟ୍‌ଲରର ମୁର୍ଦ୍ଦାବାଦ୍; ଷ୍ଟାଲିନ୍ ଜିନ୍ଦାବାଦ୍ । ଖୁବ୍ ବଡ଼ ପାଟିରେ ସେ ସ୍ଲୋଗାନ୍ ଦେଉଥିଲା । ଆମେ କିଂ କର୍ତ୍ତବ୍ୟ ବିମୂଢ଼ ହୋଇ ପରସ୍ପରକୁ ଅନେଇଲୁ । ଆମର ଆଶଙ୍କା ତାହା ଗୋଟାଏ ମାୟାଜାଲ । ସେ ପୁଣି କହିଲା, ''ଭୟକର ନାହିଁ, ଏଠାକୁ କେହି ଆସିବେ ନାହିଁ, କେହି କୁଆଡ଼େ ନାହାନ୍ତି ।'' ସେ ଟେବୁଲ୍ ପାଖରେ ବସି ପଡ଼ିଲା । ଆମେ ବି ବସିଗଲୁ, ଆମେ ଉତ୍ସବ ବନ୍ଦ କଲୁ ନାହିଁ । ଲୁସି ସମସ୍ତଙ୍କ ଉଦ୍ଦେଶ୍ୟରେ ପାନପାତ୍ରରେ ସୁରା ଢାଳିଲା ଏବଂ ଗ୍ଲାସକୁ ଟେକି ଆସନ୍ନ ସ୍ୱାଧୀନତା ଉଦ୍ଦେଶ୍ୟରେ କହିଲା, ''ହିଟ୍‌ଲେର ମୁର୍ଦ୍ଦାବାଦ୍, ଷ୍ଟାଲିନ୍ ଜିନ୍ଦାବାଦ୍ ।'' ଅର୍କେଷ୍ଟ୍ରା ପରିଚାଳନା କରୁଥିବା ହଙ୍ଗେରୀୟ ମହିଳା ଜଣକ ତାହାର ବେହେଲା ବାହାର କରି ମର୍ମସ୍ପର୍ଶୀ ସ୍ୱରରେ ଜୀପ୍‌ସୀ ସଙ୍ଗୀତ ସ୍ୱରରେ ବେହେଲା ବଜାଇବାକୁ ଆରମ୍ଭ କଲା ଏବଂ ସମବେତ ଗାୟିକାମାନେ ଗାଉଥିବା ରୁଷୀୟ, ଫରାସୀ ଓ ପୋଲାଣ୍ଡ ଗୀତ ସହ ମିଳାଇ ବେହେଲା ବଜାଇଲା । ତା' ପରେ ଆମେମାନେ ଓବେରେକ୍‌ସ୍, ପୋଲକାଶ, ୱାଲ୍‌ଟୋଜ ଏବଂ ଟାଙ୍ଗୋସ୍ ପ୍ରଭୃତି ଯେତେ ନାଚ ମନେ ପଡ଼ିଲା ନାଚିଲୁ । ଆମର ସେହି ଅନିମନ୍ତ୍ରିତ ଅତିଥି ମଧ୍ୟ ନାଚିଲା । ତାହାର ପ୍ରତି ପଦପାତରେ କହୁଥିଲା, ''ହିଟ୍‌ଲର୍ ମୁର୍ଦ୍ଦାବାଦ ।''

ପୁରୁଷ ସାଥୀମାନଙ୍କୁ ଭେଟିବା ଥିଲା, ସନ୍ଧ୍ୟାରେ ମୁଖ୍ୟ କାର୍ଯ୍ୟକ୍ରମ । ପୁରୁଷ ଓ ମହିଳା ବ୍ଲକ୍ ମଝିରେ ଥିବା ବିଦ୍ୟୁତ୍ ବାହୀ ତାର ବାଡ଼ ନିକଟକୁ ରାତି ବାରଟାରେ ଆମକୁ ଯିବାକୁ ପଡ଼ିବ ନବବର୍ଷକୁ ସ୍ୱାଗତ ଜଣାଇବା ପାଇଁ । ଅବଶ୍ୟ ସେହି ବନ୍ଧୁମିଳନ ବ୍ୟବସ୍ଥା ଆମେ ବହୁ ପୂର୍ବରୁ କରି ସାରିଥିଲୁ । ସମ୍ଭବ ହେଲେ ରାତି ବାରଟାକୁ ଆମେ ସେଠାକୁ

ଯିବୁ । ଜର୍ମାନୀ ଆତଙ୍କବାଦୀଟି ହେଲା ଆମର ପ୍ରଧାନ ସମସ୍ୟା । ଆମେ ତାକୁ କ'ଣ କରିବୁ । ଆମେ ଭାବୁଥିଲୁ ''ଯଦି ସେ ହଠାତ୍ ପ୍ରକୃତିସ୍ଥ ହୋଇ ଆମକୁ ଗୁଳି କରିବାକୁ ଆରମ୍ଭ କରେ, ତେବେ କ'ଣ କରିବା ?'' ଅବଶ୍ୟ ସେତେବେଳେ ସେ ହୋସ୍‌ରେ ନଥିଲା । ଥରକୁ ଥର ସେ ପକେଟରୁ ମଦ ବୋତଲ ବାହାର କରୁଥିଲା ଏବଂ ଢୋକେ ପିଇ ଦେଉଥିଲା । ଚିତ୍କାର କରୁଥିଲା, ''ହିଟ୍‌ଲର୍ ହାରିଲା, ହିଟ୍‌ଲର୍ ହାରିଲା'' ତା'ର ଶେଷ ବେଳ ପହଞ୍ଚିଗଲା । ସେ ଯାହାହେଉ, ଶେଷରେ ଆମକୁ ସେହି ବିପଦକୁ ମୁଣ୍ଡାଇ ଯିବାକୁ ପଡ଼ିଲା । ଓର୍ଲି ତା' ହାତ ଧରି ଗାର୍ଡ ରୁମ୍ ପର୍ଯ୍ୟନ୍ତ ନେବାକୁ ଚେଷ୍ଟା କଲା । କିନ୍ତୁ ସେ ଯିବାକୁ ରାଜି ନଥିଲା । କହିଲା, ମୁଁ ତୁମମାନଙ୍କ ସହିତ ଯିବି । ଆମେ ନିରୁପାୟ । ବାଧହୋଇ ତାକୁ ଆମେ ସାଙ୍ଗରେ ନେଲୁ ।

ସେଦିନ ଥଣ୍ଡା ରାତି । କୋମଳ ବରଫର ଆସ୍ତରଣ ସର୍ବତ୍ର । ଉଜ୍ଜ୍ୱଳ ଓ ନିସ୍ତବ୍ଧ ରାତ୍ରି । ଆମ ସାଙ୍ଗରେ ଚାଲୁଥିବା ଆତଙ୍କବାଦୀ ଛଡ଼ା ଅନ୍ୟ କେଉଁ ଆଡ଼େ କେହି ପୋଲିସ୍ ଦିଶୁ ନଥିଲେ । ଓର୍ଲି ଏବଂ ମାରୁସିଆ ତାହାକୁ ଦୁଇପଟୁ ଧରିଥିଲେ । ସେ ଯେପରି କେତେବେଳେ ହଠାତ୍ ପିସ୍ତଲ୍ କାଢ଼ି ନ ପାରେ ବା ଆମକୁ ସାଲ୍ୟୁଟ୍ ମାରିବାକୁ ସଲାମୀ ଗୁଳି ନ ଚଳାଏ । ସେଥିପାଇଁ ସତର୍କ ରହିବା ଥିଲା ଆମର ପ୍ରଧାନ ଲକ୍ଷ୍ୟ ।

କଣ୍ଟାତାର ବାଡ଼ ପାଖରେ ବରଫ ଜମା ହୋଇଥାଏ । ଆମେ ଅଣ୍ଟାଏ ବରଫରେ ପୋତି ହୋଇ ସେ ଆଡ଼କୁ ଚାଲିଲୁ । ଆମର ସାଥୀମାନେ ମଧ ତାରବାଡ଼ର ଆରପଟରେ ପହଞ୍ଚି ଯାଇଥିଲେ ।

ଆମ ସାଙ୍ଗରେ ଯାଇଥିବା ନାତ୍‌ସୀ ଆତଙ୍କବାଦୀକୁ ଦେଖି ବିସ୍ମିତ ହୋଇଗଲେ ଏବଂ ପଚାରିଲେ, ''ଏଇଟି କେଉଁ ଜାତିର ପକ୍ଷୀ ? ଏ ଆତଙ୍କବାଦୀକୁ କେଉଁଠୁ ପାଇଲୁ ।''

ତା' ସମ୍ପର୍କରେ ଯାହା ଯାହା ଘଟି ଯାଇଛି, ଆମେ ସେମାନଙ୍କୁ ବୁଝାଇ ଦେଲୁ । ଠିକ୍ ସେହି ସମୟରେ ଦୂରରେ ଘଣ୍ଟାରେ ବାଜିଲା -''ବାର'' । କେହି ଜଣେ ଆରମ୍ଭ କରିଦେଲା ଆନ୍ତର୍ଜାତିକୀ ସଙ୍ଗୀତ- ''ଆମେ ବିଜୟୀ ହେବୁ, ଆମେ ବିଜୟୀ ହେବୁ.... ।'' ଆମେ ମଧ ନିଜ ନିଜ ଭାଷାରେ ସେଥିରେ ଯୋଗ ଦେଲୁ, ''ଆମେ ବିଜୟୀ ହେବୁ, ଆମେ ବିଜୟୀ ହେବୁ.... ।'' ଏହିଭଳି ଭାବରେ ବିଭିନ୍ନ ଭାଷାଭାଷୀ କମ୍ରେଡ୍‌ମାନଙ୍କ କଣ୍ଠରେ ସେହି ଗୋଟାଏ କଥା ତାହା ବିଜୟର ସଙ୍ଗୀତ, ବିପ୍ଳବର ସଙ୍ଗୀତ ।

ତା' ପରେ ପରସ୍ପର ନବବର୍ଷର ଶୁଭେଚ୍ଛା ବିନିମୟ ହେଲା ଏବଂ ବିଦ୍ୟୁତ୍ ବାହିତ ତାର ବାଡ଼ରେ ହାତ ଗଳାଇ କରମର୍ଦ୍ଦନ କଲୁ । ନାତ୍‌ସୀ ଆତଙ୍କବାଦୀଟି ମଧ ବାଡ଼ ପାଖକୁ ଯିବା ପାଇଁ ଠେଲା ଠେଲି କଲା । ତାକୁ ଅଟକାଇବା ଆମ ପକ୍ଷରେ କଷ୍ଟକର

ହେଲା । ଆମର କେତେକ ବନ୍ଧୁ ମଜା କରି କହିଲେ, ''ଯାଉ, ଯାଉ ସେଠି ମରୁ ।''

ସେମିତି କହିବାଟା ସହଜ । କିନ୍ତୁ ସେ ଯେମିତି ତାରକୁ ନ ଛୁଏଁ - ଆମେ ଜାଣିଥିଲୁ । ତା' ପରେ ଉଭୟ ପକ୍ଷରୁ ସଙ୍ଗୀତ ଓ କବିତା ଆବୃତ୍ତି ଚାଲିଲା, ମୁଁ ରୁଷୀୟ ଗୀତଟି ଗାଇବାରୁ କରତାଳି, ହାସ୍ୟରୋଳ ଓ ଅଭିନନ୍ଦନର ସୁଅ ଛୁଟିଲା ।

ମୁଁ ଭାବୁଥିଲି, ବୋଧେ ସ୍ୱପ୍ନ ଦେଖୁଛି । ଏହା କ'ଣ ସତ ଯେ ଏ ସବୁ ବାସ୍ତବରେ ଘଟୁଛି ? ସେହି ବିଦ୍ୟୁତ୍ ବାହୀ ତାରବାଡ଼, ସାରା କ୍ୟାମ୍ପରେ ପ୍ରତିଧ୍ୱନିତ ହେଉଥିବା ଆନ୍ତର୍ଜାତିକୀ, ନାତ୍‌ସୀ ଆତଙ୍କବାଦୀର ଅବରୁଦ୍ଧ ମୁଖ ନିସୃତ ଧ୍ୱନି- ହିଟଲର୍ ମୁର୍ଦ୍ଦାବାଦ୍ ଓ ଷ୍ଟାଲିନ୍ ଜିନ୍ଦାବାଦ୍ ଶବ୍ଦ, ଆମମାନଙ୍କର ଆନନ୍ଦ ଓ ଆମେ ଅନୁଭବ କରୁଥିବା ସ୍ୱାଧୀନତାର ସ୍ୱାଦ । ସବୁ ସ୍ୱପ୍ନ ସତ୍ୟ ହେଲା, ସ୍ୱାଧୀନତା ଓ ଜର୍ମାନୀର ପରାଜୟ ।

୧୯୪୫ ମସିହାର ଶୁଭାରମ୍ଭ ମୁହୂର୍ତ୍ତ ଦିଶୁଥିଲା ସୁନ୍ଦର ଓ ମନୋମୁଗ୍ଧକର ।

■■■

## – ୩୪ –

# ମନ୍ତ୍ର ଚାଳିତ ସ୍ଲେଜ୍

ଅକ୍ଷମଶାଳାର ଗେଟ୍‌ରେ ଘନ ଘନ ବାୟୋନେଟ୍‌ର ଆଘାତରେ ଆମ ନିଦ ଭାଙ୍ଗିଗଲା । ନାତ୍‌ସୀ ଆତଙ୍କବାଦୀଙ୍କର ଅବିଶ୍ରାନ୍ତ ଗର୍ଜନ, ''ଖୋଲ୍ ଖୋଲ୍, ଜଲ୍‌ଦି ଖୋଲ୍ ।''

ଆମେ ବିଛଣାରୁ ଡେଇଁ ପଡ଼ିଲୁ । ଯାହା ହାତରେ ପଡ଼ିଲା ପିନ୍ଧି ପକାଇଲୁ । ଆମେ ଏତେ ଛାନିଆଁ ହୋଇ ଯାଇଥିଲୁ ଯେ କିଛି ଜିନିଷ ଆମ ହାତରେ ପଡୁ ନଥିଲା । ସେପଟରୁ ପୁନର୍ବାର ଗର୍ଜନ । ''ଖୋଲ୍ ଖୋଲ୍, ଜଲଦି ଖୋଲ୍ ।''

ଡାକ୍ତର କ୍ୟୁନିଗ୍ ଏବଂ କେତେଜଣ ନାତ୍‌ସୀ ଆତଙ୍କବାଦୀ ଅକ୍ଷମଶାଳାକୁ ପଶି ଆସିଲେ । ସେମାନଙ୍କ ପୋଷାକ, କାନ୍ଧରେ ପଡ଼ିଥିବା ବଡ଼ କାନ୍‌ଭାସ୍ ବ୍ୟାଗ ଓ ହ୍ୟାଟ୍ ଦେଖିଲେ ମନେ ହେଉଥିଲା ଯେପରିକି ସେମାନେ କୁଆଡ଼େ ବାହାରିଥିଲେ । ସେମାନେ ସଶସ୍ତ୍ର ମଧ୍ୟ ଥିଲେ ।

''ଆମକୁ ସମସ୍ତ କାଗଜପତ୍ର ରେକର୍ଡ, ରୋଗୀ ଚାର୍ଟ, ଆଡ୍‌ମିଶନ୍ ରେଜିଷ୍ଟର ଇତ୍ୟାଦି ଦେଇଦିଅ । କିଛି ଲୁଚାଅ ନାହିଁ'', ଧମକ ସ୍ୱରରେ ଡାକ୍ତର କ୍ୟୁନିଗ୍‌ଙ୍କ ନିର୍ଦ୍ଦେଶ । ଆମେ ସବୁ ଜିନିଷ ନେଇ ଆସିଲୁ । ଡାକ୍ତର ସେହି ରେକର୍ଡ ଉପରେ ଆଖି ବୁଲେଇ ନେଲା । ଆତଙ୍କବାଦୀମାନେ ସେଗୁଡ଼ିକୁ ବଡ଼ ବଡ଼ ଅଖାରେ ଭର୍ତ୍ତି କରି ମୋଟା ରସିରେ

ଅଖା ମୁହଁ ବାନ୍ଧି ଦେଲେ । ତା' ପରେ ଡାକ୍ତର ଆମ୍ଭମାନଙ୍କୁ ନିରୀକ୍ଷଣ କଲା । ସେ ଆମ ସମ୍ପର୍କରେ କ'ଣ କରିବ ବୋଲି ବୋଧହୁଏ ଭାବୁଥିଲା । ଆମେ ଆତଙ୍କିତ ହୋଇଥିବାର ଲକ୍ଷ୍ୟ କଲା । ଆମେ ମଧ୍ୟ ଡରକୁ ଲୁଚାଇବା ସମ୍ଭବ ହେଲା ନାହିଁ ।

କ୍ୟୁନିଗ୍ 'ଆଶ୍ୱାସନା' ଦେବା କଣ୍ଠରେ କହିଲା, ''ଡରନା, ଆମେ ତୁମମାନଙ୍କୁ ବଲ୍ ଶେଭିକ୍ (କମ୍ୟୁନିଷ୍ଟ)ମାନଙ୍କ ହାତକୁ କଦାପି ଟେକି ଦେବୁ ନାହିଁ ।''

ଶେଷରେ ସେମାନେ ପଳାଇଗଲେ ଓ ଅଖା ମଧ୍ୟ ନେଇଗଲେ ।

କ୍ରିଟା ବ୍ୟଙ୍ଗ କରି କହିଲା, ''କମ୍ୟୁନିଷ୍ଟମାନଙ୍କ କଥା କହି କ୍ୟୁନିଗ୍ ଆମକୁ ଆଶ୍ୱାସନା ହିଁ ଦେଇଗଲା ।''

ଆମେ ଅକ୍ଷମଶାଳାର ବାହାରକୁ ଆସିଲୁ । ବରଫ ଖଣ୍ଡ ଓ କୁହୁଡ଼ିର ଆସ୍ତରଣ ଆମ ପାଦତଳେ ଚକଟି ହୋଇଯାଉଥିଲା । ଦୂରରୁ ଘନଘନ ତୋପ ଆବାଜ ଶୁଭୁଥିଲା । ପ୍ରତି ମିନିଟ୍‌ରେ ରକେଟ୍‌ର ବିସ୍ଫୋରଣରେ ଆକାଶ ଆଲୋକିତ ହୋଇଯାଉଥିଲା । ଜର୍ମାନ୍‌ମାନେ କ୍ୟାମ୍ପରୁ ପଳାୟନ କରୁଥିଲେ । ପଳାୟମାନ ଗାଡ଼ିର ଶବ୍ଦ ମଧ୍ୟ ଆମେ ଶୁଣି ପାରୁଥିଲୁ ।

ତାହା ଥିଲା ୧୯୪୫ ମସିହା ଜାନୁୟାରୀ ୧୭ ତାରିଖ ଘଟଣା । ଆମର ଆଶା ଊର୍ଦ୍ଧ୍ୱଗାମୀ ହେଉଥିଲା । ସମ୍ଭବତଃ ଜର୍ମାନ୍‌ମାନେ ଆମ ବନ୍ଦୀମାନଙ୍କୁ ଛାଡ଼ି ପଳାଇ ଯାଉଥିଲେ । ବୋଧହୁଏ ତାହା ଥିଲା ଶ୍ରେଷ୍ଠ ସମାଧାନ ।

କିନ୍ତୁ ଓର୍ଲି ଆମକୁ ବୁଝାଇବାକୁ ଲାଗିଲା ''ନିଜକୁ ପ୍ରତାରିତ କର ନାହିଁ । ଜର୍ମାନ୍‌ମାନେ ଆମକୁ ବଲ୍‌ଶେଭିକ୍ ମାନଙ୍କ ହାତକୁ କଦାପି ଟେକି ଦେବେ ନାହିଁ । ହୁଏତ ସେମାନେ ଶେଷ ମୁହୂର୍ତ୍ତରେ ସମ୍ପୂର୍ଣ୍ଣ କ୍ୟାମ୍ପକୁ ବିସ୍ଫୋରଣରେ ଉଡ଼ାଇ ଦେବେ । ନଚେତ୍ ଅନ୍ୟ କେଉଁ କନ୍‌ସେନ୍‌ଟ୍ରେସନ୍ କ୍ୟାମ୍ପକୁ ଆମକୁ ନେଇଯିବେ । ସେମାନଙ୍କ କୁକର୍ମ ଓ ଅପରାଧର ଟିକିଏ ସୁଦ୍ଧା ଚାକ୍ଷୁଷ ପ୍ରମାଣ ରଖିବେ ନାହିଁ । ଆମକୁ ଦୀର୍ଘ ଯାତ୍ରା ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ ।''

ଆମେ ପଳାଇବା ପାଇଁ ରାଜି ହେବୁ କି ନା, ଭାବୁଥିଲୁ । ଆମେ ଜର୍ମାନ୍ ବାଲାଙ୍କ ସହ ପଳେଇବୁ କିମ୍ବା ଏରିଆରେ କେଉଁଠାରେ ଲୁଚିଯିବୁ ତାହା ମଧ୍ୟ ବିଚାର କରୁଥିଲୁ । ଅଧିକାଂଶ ଭାବୁଥିଲେ ଆତଙ୍କବାଦୀମାନେ କ୍ୟାମ୍ପ୍ ଛାଡ଼ିବା ସଙ୍ଗେ ସଙ୍ଗେ କ୍ୟାମ୍ପକୁ ବିସ୍ଫୋରଣରେ ଉଡ଼ାଇ ଦେବେ । ସେ କଥା ଯେଉଁମାନେ ବିଶ୍ୱାସ କରୁଥିଲେ ଓ ଚାଲିବାକୁ ସମର୍ଥ ଥିଲେ ସେମାନେ କାଳ ବିଳମ୍ବ ନକରି କ୍ୟାମ୍ପରୁ ବାହାରି ଆସି ଯାତ୍ରା ପାଇଁ ଅପେକ୍ଷା କଲେ । ମୁକ୍ତି ଆମର ଖୁବ୍ ନିକଟରେ ଥିଲା । ତଥାପି 'ମୃତ୍ୟୁଭୟ'ରେ ଆମେ ଆଶଙ୍କିତ ହୋଇଥିଲୁ ।

ଜାନୁୟାରୀ ୧୮ ତାରିଖ ସନ୍ଧ୍ୟାରେ ନାତ୍‌ସୀ ଆତଙ୍କବାଦୀ ଆମକୁ ତୁରନ୍ତ 'ଯାତ୍ରା' ଆରମ୍ଭ କରିବାକୁ ଅର୍ଡର ଦେଲା ଏବଂ କୁକୁର ଲଗେଇ ଆମକୁ ଘଉଡ଼ାଇବା ଆରମ୍ଭ କଲା । ଗେଟ୍ ପାଖରେ ଆମକୁ ସୁମାରି କରିବାକୁ ମଧ୍ୟ ଚେଷ୍ଟା କଲା, କିନ୍ତୁ ସମସ୍ତେ ବିଶୃଙ୍ଖଳିତ ହୋଇଯାଇଥିଲେ । ହାଜିରା ନେବାକୁ ସମୟ ନଥିଲା । ବିସ୍ଫୋରଣ ଶବ୍ଦ ପାଖେଇ ଆସୁଥିବାରୁ ସେମାନେ ନିଜେ ମଧ୍ୟ ଭୀତତ୍ରସ୍ତ ହୋଇଯାଇଥିଲେ । ଉନ୍ମାଦଙ୍କ ଭଳି ଅଥୟ ହେଉଥିଲେ ଏବଂ ପୂରା ଛାନିଆଁ ହୋଇଯାଇଥିଲେ । ଆମ୍ଭେମାନେ ଅସଙ୍ଗଠିତ ଭାବରେ ଛିଡ଼ା ହୋଇ ଅଜ୍ଞାତ ଯାତ୍ରା ପାଇଁ ଅପେକ୍ଷା କରିଥିଲୁ ଏବଂ ବିଶୃଙ୍ଖଳିତ ଶ୍ରେଣୀ ଧାଡ଼ିରେ ଆମେମାନେ ଚାଲିବାକୁ ଆରମ୍ଭ କରିବା ସଙ୍ଗେ ସଙ୍ଗେ ଆତଙ୍କବାଦୀମାନେ ସେମାନଙ୍କ କୁକୁର ସହ ଦୁଇପାଖରେ ଚାଲିବାକୁ ଲାଗିଲେ ।

ପ୍ରବଳ ଥଣ୍ଡାପବନ ବୋହୁଥିଲା ଓ ପାଦରେ ବରଫ ବାଜୁଥିଲା । ବୟସ୍କା ମହିଳାମାନେ ଘୋଷାଡ଼ି ହୋଇ ଚାଲୁଥିଲେ । କେତେକ ଅତ୍ୟନ୍ତ ଅସୁସ୍ଥ ଓ କ୍ଲାନ୍ତ ଶ୍ରାନ୍ତ ଥିଲେ । ମଝିରେ ମଝିରେ ଗୁଳି ଶବ୍ଦ ଶୁଭୁଥିଲା । ସମସ୍ତଙ୍କ ସହ ଚାଲି ପାରୁ ନଥିବା ମହିଳାମାନଙ୍କୁ ଆତଙ୍କବାଦୀମାନେ ଗୁଳି କରି ମାରିଦେଉଥିଲେ ଏବଂ ଶବ ଗୁଡ଼ିକୁ ରାସ୍ତାକଡ଼କୁ ଫୋପାଡ଼ି ଦେଉଥିଲେ । ଆମେ ସେହି ଶବ କୁଢ଼ ଭିତରେ ଚାଲୁଥାଉ । ଆମ ପୂର୍ବରୁ ବୋଧହୁଏ ଆହୁରି କେତେ ବନ୍ଦୀ ସେ ବାଟେ ଯାଇଥିଲେ । ଆମମାନଙ୍କୁ ମୃତ୍ୟୁ ଉପତ୍ୟକା ଭିତରେ ଚାଲିବାକୁ ହେଉଥିଲା ।

ଘଣ୍ଟାଏ ଚାଲିବା ପରେ ଆତଙ୍କବାଦୀମାନେ ଦଶ ମିନିଟ୍ ପାଇଁ ବିଶ୍ରାମ ଘୋଷଣା କରୁଥିଲେ । ଏହା ଘୋଷିତ ହେବା ସଙ୍ଗେ ସଙ୍ଗେ ଯେ ଯେଉଁଠି ଛିଡ଼ା ହୋଇଥାଉ, ସେହିଠାରେ ବରଫରେ ବସିଯାଉ । ସେଠାରେ ନିଦ ମଧ୍ୟ ହୋଇଯାଏ । ପୁଣି ଚାଲିବା ଆରମ୍ଭ ହେଲେ ଆମେ ସଙ୍ଗେ ସଙ୍ଗେ ଉଠିପାରୁ ନଥିଲୁ । ବଡ଼ କଷ୍ଟରେ ଉଠି ଚାଲିବାକୁ ପଡୁଥିଲା । ସେମିତି ସେମିତି ରାତି ପାହିଗଲା ତଥାପି ଆମର ଯାତ୍ରା ଶେଷ ହେବାର କୌଣସି ଲକ୍ଷଣ ଦିଶୁ ନଥିଲା ।

ସକାଳ ହେବା ପୂର୍ବରୁ ଆତଙ୍କବାଦୀ ଆମକୁ ଗୋଟାଏ ଗାଁ ଭିତରକୁ ଘଉଡ଼ାଇ ନେଲେ । ସେ ଗ୍ରାମଟି ଜନମାନବ ଶୂନ୍ୟ ଥିଲା । ତୁମେମାନେ ଏଠାରେ କେତେ ଘଣ୍ଟା ବିଶ୍ରାମ ନିଅ – ଆମକୁ ଜଣାଇ ଦିଆଗଲା ।

ଆମେ କୃଷି ଫାର୍ମରେ ରହିଲୁ ଏବଂ ନଡ଼ା ଉପରେ ଶୋଇ ପଡ଼ିଲୁ । କି ତୃପ୍ତି । ଯାହା ହେଉ ପୁନଃ ଯାତ୍ରା ଆରମ୍ଭ ପୂର୍ବରୁ ଆମକୁ ଟିକେ ବିଶ୍ରାମ ମିଳିଗଲା । ଯାତ୍ରା କେତେ ସମୟ ଚାଲିବ, ତାହା ଆମେ ଜାଣି ନଥିଲୁ । କିନ୍ତୁ ଆମେ ଭଲ ଭାବରେ ବିଶ୍ରାମ ନେବା ପୂର୍ବରୁ ନିର୍ଦ୍ଦେଶ ହେଲା, ''ଚାଲ, ଜଲଦି ଚାଲ ।''

ସେ ନଡ଼ା ଗଦା ଭିତରେ ଲୁଚି ରହିବାର ସୁବିଧା ଥିଲା । ଏପରିକି ଯୁଦ୍ଧ ଶେଷ ପର୍ଯ୍ୟନ୍ତ ମଧ୍ୟ ରହି ହୋଇଥାନ୍ତା ।

ମାରୁସିଆ ମୋତେ ହଲେଇ ଦେଇ କହିଲା ''ଉଠିପଡ଼'' ''କିନ୍ତୁ କାହିଁକି ?'' ମୁଁ ଚୁପ୍ ଚୁପ୍ ପଚାରିଲି । ''ମୁଁ ଏଇଠି ରହିଯିବି ।''

''ତୁମେ କ'ଣ ବାସ୍ତବରେ ସେଭଳି କିଛି ଚେଷ୍ଟା କରିବ ବୋଲି ଭାବୁଛ ?'' ମାରୁସିଆ ପଚାରିଲା ।

ମୁଁ କିଛି ଉତ୍ତର ଦେଲି ନାହିଁ । ସମସ୍ତେ ପଳାଇଗଲେ । ମୁଁ ଏକା ସେଠାରେ ପଡ଼ି ରହିଲି । କିଛି ସମୟ ପରେ ଖୁବ୍ ନିକଟରେ କୁକୁର ଭୁକିବା ଶବ୍ଦ ମୋତେ ଶୁଭିଲା । ମୁଁ ଧଡ଼ପଡ଼ ହୋଇ ଉଠି ସେଠାରୁ ପଳାଇଗଲି । କୁକୁର ମୁହଁରେ ଖଣ୍ଡ ଖଣ୍ଡ ହେବା ମୁଁ ଚାହୁଁ ନଥିଲି । ସେଭଳି ମୃତ୍ୟୁ ମୁଁ ଆଉସ୍‌ଭିଚ୍‌ଜ୍‌ରେ ସ୍ୱଚକ୍ଷୁରେ ଦେଖିଥିଲି ।

ମୁଁ ଖୁବ୍ ଶୀଘ୍ର ଯାତ୍ରୀ ଦଳକୁ ଧରିଦେଲି । ଅପରିଚିତା ମହିଳାମାନଙ୍କ ମେଳରେ ମୁଁ ସମ୍ପୂର୍ଣ୍ଣ ଏକା ହୋଇଗଲି । ମୋର ନିଜର ଶକ୍ତି ବ୍ୟତୀତ ଆଉ କାହା ଉପରେ ନିର୍ଭର କରିବାର କିଛି ନଥିଲା । ବାସ୍ତବରେ ମୁଁ ମଧ୍ୟ ସେଥିରେ ଖୁସି ଥିଲି । ଭାବିଲି ଏ ଝିଅ ଗୁଡ଼ିକ ମୋତେ କଦାପି ଛାଡ଼ି ଯିବେ ନାହିଁ । କିନ୍ତୁ ସେମାନେ ମଧ୍ୟ ମୋ' ଭଳି ବିପନ୍ନ ଥିଲେ । କେବଳ ମୋର ମନୋବଳରେ ମୁଁ ଠେଲି ହୋଇ ଚାଲିଲି । ଆଗକୁ ଆଗକୁ ଯିବା ମୋ' ପକ୍ଷରେ ଅସମ୍ଭବ ହୋଇ ଉଠୁଥିଲା । ମୋର ପାଦତଳର ଚମଡ଼ାଗୁଡ଼ିକ ସବୁ ଉଠିଯାଇଥିଲା । ମୋର ବୁଟ୍ ଭିତରେ ପାଦର ରକ୍ତ ପଚ୍ ପଚ୍ ହେଉଥିବା ମୁଁ ଅନୁଭବ କରୁଥିଲି ।

ପୂର୍ବ ଗ୍ରାମଟି ଛାଡ଼ିବା ବେଳେ ମୁଁ ଦେଖିଥିଲି ଦୁଇଟି ଉଲଗ୍ନ ଶବ । କିନ୍ତୁ କୌଣସି ଶବର ମୁଣ୍ଡ ନଥିଲା । କେଉଁ ଦୋଷରେ ସେମାନଙ୍କୁ ସେହି ଲୋମ ହର୍ଷଣକାରୀ ଦଣ୍ଡ ଦିଆଯାଇଥିଲା, ତାହା ମୁଁ ଅଧୀରତା ସହକାରେ ଭାବୁଥିଲି । ହୁଏତ ସେ ପଳାଇଯିବାକୁ ଚେଷ୍ଟା କରିଥିବ, ନଚେତ୍ କୌଣସି ନାତ୍‌ସୀ ଆତଙ୍କବାଦୀକୁ ଆହତ ବା ନିହତ କରିଥାଇପାରେ । ଅନ୍ୟ ମହିଳାମାନେ ମୋତେ ଅତିକ୍ରମ କରିଯାଉଥିଲେ । ମୁଁ ଲାଇନ୍‌ରେ ସବା ପଛରେ ପଡ଼ିଯାଇଥିଲି । ମୋ ପଛରେ ବନ୍ଧୁକ ଧରି ଆତଙ୍କବାଦୀମାନେ ଚାଲିଥିଲେ । କେଉଁ ମୁହୂର୍ତ୍ତରେ ମୋ ମୁଣ୍ଡ ସେମାନଙ୍କ ବନ୍ଧୁକରେ ଉଡ଼ିଯିବ । ସେମାନେ ଗର୍ଜୁଥାନ୍ତି ''ଜଲ୍‌ଦି, ଜଲ୍‌ଦି ।''

ମୁଁ ଜବାବ ଦେଲି, ''ପାରିବି ନାହିଁ, ମୋ'ର ପାଦତଳ ଫାଟି ଗଲାଣି ।'' ଯେଉଁ ଭୟ ମୋର ତଣ୍ଟି ଧରିଥିଲା; ତାହା ମୁଁ ଜଣାଇବାକୁ ଦେଲି ନାହିଁ । ଜଣେ ଆତଙ୍କବାଦୀ ଲେଫ୍‌ଟନାଣ୍ଟ ଦ୍ରୁତ ପଦକ୍ଷେପରେ ମୋ ଆଗକୁ ଚାଲି ଆସି ମୋତେ ପଚାରିଲା, ''ତୁ ବଞ୍ଚି ରହିବାକୁ ଚାହୁଁ ନା ? ତୋତେ ମାରିଦେବାକୁ ମୋତେ ବାଧ କରୁଛୁ ?''

''ନା ମୁଁ ମରିବାକୁ ଚାହେନା ! କିନ୍ତୁ ଦେଖୁଛି ମୋତେ......'' ମୁଁ କହିଲି । ଆତଙ୍କବାଦୀର ମୁହଁରୁ ବାହାରି ପଡ଼ିଲା ''ଆହା ବିଚରା'' ତା କଥା ଶୁଣି ମୁଁ ଏମିତି ସ୍ତମ୍ଭିତ ହୋଇଗଲି ଯେ ମୋ' ପାଦ ଆଉ ଆଗେଇଲା ନାହିଁ । ଭାବିଲି କ'ଣ ଏ ? ସେ ଗୋଟାଏ ଇହୁଦୀକୁ ''ଆହା'' କହୁଛି ଯେ କି ପାଦେ ଚାଲିବାକୁ ଅସମର୍ଥ !

ମୁଁ ତା ଆଡ଼କୁ ଚାହିଁଲି । ସେ ବି ମୋତେ ଅନେଇଲା, ''ଏଭଳି ଲୋକଟାକୁ ଆମେ କ'ଣ କରିବା ?'' ଯେପରିକି ସେ ମନେ ମନେ ସେହି କଥା ଭାବୁଥିଲା ।

ସେତିକିବେଳେ ଯେମିତି କିଏ ଗୋଟାଏ ମ୍ୟାଜିକ୍ କରିଦେଲା । ଦେଖାଗଲା ଦୁଇଟି ଘୋଡ଼ା ଟାଣୁଥିବା ଗୋଟିଏ ସ୍ଲେଜ୍ ଗାଡ଼ିଟି ରାସ୍ତାରେ ଯାଉଥିଲା । କୃଷକଟି ଗାଡ଼ିଟିକୁ ଚଳାଉଥିଲା । ପାଖରେ ବସିଥିଲା ଜଣେ ସ୍ଥୂଳକାୟା ମହିଳା । ଓଠ ଦୁଇଟି ଗୋଲାପୀ ରଙ୍ଗର । ସେ ଲୋମଶ ପୋଷାକ ପିନ୍ଧିଥିଲା ଏବଂ ଗରମ ସାଲ୍ ଘୋଡ଼ାଇ ହୋଇଥିଲା । ଗାଡ଼ିରେ କେତେଗୁଡ଼ିଏ ଦୁଧ ଭର୍ତ୍ତି ପାତ୍ର ମଧ୍ୟ ଥୁଆ ହୋଇଥିଲା ।

ଲେଫ୍‌ଟନାଣ୍ଟ ଜଣକ ଗାଡ଼ିକୁ ବନ୍ଦ କରିବାକୁ ନିର୍ଦ୍ଦେଶ ଦେଲା । ଗାଡ଼ି ଅଟକିଲା ।

''କୁଆଡ଼େ ଯିବୁ ?''

କୃଷକଟି ତା'ର ଗନ୍ତବ୍ୟ ସ୍ଥାନ ବିଷୟରେ କହିଥିଲା । ଦୁହେଁ ଜର୍ମାନ୍ ଅଧିବାସୀ ଥିଲେ ।

''ଏହି ବନ୍ଦୀ ଜଣକୁ ଗାଡ଼ିରେ ନେଇ ଯାଅ । ତାକୁ ସହରକୁ ନେଇଯିବୁ ଓ ପୋଲିସ୍ କାର୍ଯ୍ୟାଳୟରେ ଛାଡ଼ିଦେବୁ ।'' ଯାଆ ବୋଲି ସେ ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ କହିଲା, ''ପଳେଇବାକୁ ଚେଷ୍ଟା କରିବୁ ନାହିଁ ।'' ମୁଁ ଗାଡ଼ିରେ ବସିଲି, ଗାଡ଼ି ଚାଲିଲା ।

ଯାହାସବୁ ଘଟିଗଲା ମୁଁ ସେଥିରେ ଏଭଳି ମୁଗ୍ଧ ହୋଇଗଲି ଯେ ତାହା ସତ୍ୟ କି ସ୍ୱପ୍ନ ଜାଣିବା ପାଇଁ ନିଜ ଗାଲକୁ ଟିକେ ଚୁମୁଟି ଦେଲି । ସେହି ସମ୍ମୋହିତ ସ୍ଲେଜ୍ ଗାଡ଼ିଟି ଯେଉଁ ପରିସ୍ଥିତିରେ ସେଠାରେ ପହଞ୍ଚିଗଲା, ମୋତେ ଗାଡ଼ିରେ ପଠାଇବାକୁ ଯେଉଁ ଆତଙ୍କବାଦୀ ସେ ଗାଡ଼ିକୁ ଅଟକାଇଲା ଏହିଭଳି ଯେତେ ଘଟଣା ଘଟିଗଲା, ତାହା କେବଳ ସ୍ୱପ୍ନରେ ସମ୍ଭବ ।

କିଛି ସମୟ ପରେ ଗାଡ଼ିଟି ମହିଳା ଯାତ୍ରୀ ଦଳ ପାଖରେ ପହଞ୍ଚିଗଲା । ମାରୁସିଆ, କ୍ଲିଟା ଓ ଅନ୍ୟମାନେ ମୋତେ ଦେଖି ଚିତ୍କାର କରି କହିଲେ ''ସାରା ସାରା'' ଖୁସିରେ ହାତ ହଲାଉଥାନ୍ତି ସେମାନେ । ଭାବୁଥାନ୍ତି ଯେ ମୁଁ ରକ୍ଷା ପାଇଗଲି । ତାଳି ପଡ଼ିଥିବା ଡୋରିଆ ପୋଷାକ ପିନ୍ଧି ମୁଁ କୁଆଡ଼କୁ ବା ଯାଇପାରିବି ? ଗାଡ଼ିଟା ମହିଳାମାନଙ୍କ ଧାଡ଼ିକୁ ଟପିଗଲା । ମୁଁ ଆଗରେ ପହଞ୍ଚିଗଲି, ସବା ଆଗରେ ଚାଲିଥିଲେ କମାଣ୍ଡାଣ୍ଟ୍ ଓ ତା' କର୍ମଚାରୀ ଗଣ ।

ବନ୍ଧୁକ ଦେଖାଇ ଆତଙ୍କବାଦୀ ଜଣକ ଗାଡ଼ିକୁ ବନ୍ଦ କରିଦେଲା ।

ମୁଁ ଭାବିଲି, ''ମୋର ବୈକୁଣ୍ଠ ବାସ ଶେଷ ହୋଇଗଲା ।'' ମୁଁ କିଛି କହିଲି ନାହିଁ କି କିଛି ବୁଝାଇଲି ନାହିଁ । କୃଷକ ମହିଳା ଜଣାଇ ବୁଝାଇ ଦେଲା ଯେ ମୁଁ ମୋ ମନକୁ ଗାଡ଼ିରେ ଚଢ଼ି ନଥିଲି । ଲେଫ୍ଟନାଣ୍ଟ (Observation fuhrer) ତାଙ୍କୁ ଅର୍ଡର ଦେଇଥିବାରୁ ମୋତେ ମୁଖ୍ୟ କାର୍ଯ୍ୟାଳୟକୁ ନିଆଯାଉଥିଲା । ମୋ' ସମ୍ପର୍କରେ କ'ଣ କରାଯିବ ସେମାନଙ୍କ ଭିତରେ ସେ ବିଷୟରେ ଆଲୋଚନା ହେଲା । ଯେତେବେଳେ ପୋଲିସ୍ ସାହେବ ନିର୍ଦ୍ଦେଶ ଦେଇଛନ୍ତି, ତେବେ ନିଶ୍ଚୟ ତାହାର ଯଥେଷ୍ଟ କାରଣ ଥିବ, ତଥାପି ମୁଁ ଏକା ଏକା ଯିବା ଅନୁଚିତ ହେବ ବୋଲି ଭାବି ସେମାନେ ଜଣେ ଆତଙ୍କବାଦୀକୁ ମୋର ରକ୍ଷୀ ଭାବରେ ଗାଡ଼ିରେ ପଠାଇଲେ ।

ଆତଙ୍କବାଦୀ ଜଣକ ଯୁବକ ଥିଲେ । ସେ ମୋତେ ଖୁସି କରିବାକୁ ଚେଷ୍ଟା କଲା ଏବଂ ମୋର ପ୍ରକୃତ ପରିଚୟ ଜାଣିବାକୁ ଚାହିଲା ।

''ତୁମ୍ଭେ ନିଶ୍ଚୟ ଲେଫ୍ଟନାଣ୍ଟଙ୍କୁ ବହୁ ଦିନରୁ ଚିହ୍ନିଥିବ । ତୁମେ ତାଙ୍କୁ ଭଲ ପାଅ କି ?''

ମୁଁ ଢୁଳାଇବାର ଅଭିନୟ କରି ପାଟି ଖୋଲିଲି ନାହିଁ । ଗାଡ଼ିଟି ବେଶ୍ ଦ୍ରୁତ ଗତିରେ ଚାଲୁଥିଲା । ମୋତେ ଭାରି ଶୀତ ଲାଗିଲା ।

ରକ୍ଷୀ ପଚାରିଲା, ''ତୁମେ କ'ଣ ଘୋଡ଼େଇ ହେବ ? ତୁମେ ସମ୍ଭବତଃ ଖୁବ୍ କ୍ଷୁଧାର୍ତ୍ତ । ତୁମକୁ ଖାଇବାକୁ ଦେବାପାଇଁ ମୋ ପାଖରେ କିଛି ନାହିଁ ।

ଗାଡ଼ିଟି ଖୁବ୍ ଦ୍ରୁତ ଗତିରେ ଯାଇ ପୋଲିସ୍ କାର୍ଯ୍ୟାଳୟରେ ପହଞ୍ଚିଗଲା । କୃଷକ ଦମ୍ପତି ମୋ' ଜଞ୍ଜାଳରୁ ମୁକ୍ତ ହୋଇ ଖୁବ୍ ଖୁସି ହୋଇଗଲେ ଏବଂ ମୋତେ ସେଠାରେ ଛାଡ଼ି ଦେଇ ସେମାନଙ୍କ ଗନ୍ତବ୍ୟ ପଥରେ ଚାଲିଗଲେ । ମୁଁ ଏବଂ ମୋ'ର ସହାୟକ ଆତଙ୍କବାଦୀ କାର୍ଯ୍ୟାଳୟରେ ପହଞ୍ଚିଗଲୁ । ଖୁବ୍ ଭଦ୍ରତା ସହକାରେ ମୋତେ ଚେୟାରଟିଏ ଦିଆଗଲା । ମୁଁ ଟେବୁଲ୍ ପାଖରେ ବସିଗଲି । ପୋଲିସ୍‌ମାନେ ଅଫିସ୍ ଖାଲି କରି ଅନ୍ୟତ୍ର ପଳାଇବାକୁ ବଡ଼ ବ୍ୟସ୍ତ ଥିଲେ । ସବୁ କାଗଜପତ୍ର ପୋଡ଼ା ସରିଥିଲା । ବଡ଼ ବଡ଼ ବାକ୍ସଗୁଡ଼ିକ ସେଠାରେ ପହଞ୍ଚିଥିଲା । ଅଫିସ୍ ଖାଲି କରିବାକୁ ସେମାନେ ତତ୍ପର ଥିଲେ । ମୁଁ ଟେବୁଲ୍‌ରେ ମୁଣ୍ଡ ରଖି ଶୋଇ ପଡ଼ିଲି । ମୋତେ ଯେମିତି ଦେଖାଗଲା ସେହି ମସ୍ତକବିହୀନ ମୂର୍ଦ୍ଧାର ଗୁଡ଼ିକ ରାସ୍ତା ଦୁଇପାଖରେ ପଡ଼ିଥିବା ଅସଂଖ୍ୟ ମୂର୍ଦ୍ଧାର ଓ ଲାଲ୍ ରଙ୍ଗର ଆକାଶ । କିଏ ଜଣେ ମୋତେ ଖୁନ୍ଦିଦେବା ଭଳି ଲାଗିଲା, ମୁଁ ଛାନିଆରେ ଡେଇଁ ପଡ଼ିଲି । ଦେଖିଲି ମୋର ରକ୍ଷୀ ମହ ମହ ବାସନା ଥିବା ଖୋଳ ଭର୍ତ୍ତି ବାକ୍ସଟିଏ ଧରିଥିଲା ।

ବାକ୍ସଟିକୁ ଧରାଇଦେଇ କହିଲା ''ଖାଅ'' । ତା'ପରେ ଚାମଚଟିଏ ମଧ ବଢ଼ାଇ

ଦେଲା । ଏତେ ସୁସ୍ୱାଦୁ ଝୋଳ – ଖାଇବା ବେଳେ ଯେମିତି ସ୍ୱର୍ଗ ସୁଖ ଅନୁଭବ କଲି । ଶେଷ ଟୋପା ପର୍ଯ୍ୟନ୍ତ ଖାଇଦେଲି ।

ଅନ୍ଧାର ମାଡ଼ି ଆସୁଥିଲା । ତଥାପି ମହିଳାମାନଙ୍କର ଧାଡ଼ି ସେ ପର୍ଯ୍ୟନ୍ତ ସେଠାରେ ପହଞ୍ଚି ନଥିଲା । ସେତେବେଳକୁ ମୋତେ ଗାଡ଼ିରେ ବସାଇଥିବା ପୋଲିସ୍ ସାହେବ ବା ଅବ୍‌ଜର୍ଭେସନ୍ ପ୍ୟୁରର ପାଇଁ ଚିନ୍ତିତ ଥିଲି । ମୁଁ ଭାବୁଥିଲି ଯେ କ୍ରମେ ଏହା ସ୍ପଷ୍ଟ ହୋଇଯିବ ଯେ ମୁଁ କୌଣସି ବିଶିଷ୍ଟ ବ୍ୟକ୍ତି ନୁହେଁ । ମୋ' ପ୍ରତି ଦୟାପରବଶ ହୋଇ ଯେଉଁ ଆତଙ୍କବାଦୀ ପୋଲିସ୍ ସାହେବ ମୋତେ ଗାଡ଼ିରେ ବସାଇଦେଇଥିଲେ; ମୁଁ ତାଙ୍କୁ ଦେଖା ନକରି କିପରି ବା ଚାଲିଯିବି ? ସେହି କଥା ଭାବୁ ଭାବୁ ମୋ' ମୁଣ୍ଡ ଘୁରିଗଲା ।

ମହିଳାମାନଙ୍କର ଧାଡ଼ି ଦୂରରେ ଦେଖାଯିବା ବେଳକୁ ଅନ୍ଧାର ମାଡ଼ି ଆସିଥିଲା । ତାହା ଯେତେବେଳେ ପୋଲିସ୍ କାର୍ଯ୍ୟାଳୟ ନିକଟରେ ପହଞ୍ଚିଲା ମୁଁ ମୋର ସମସ୍ତ ମାନସିକ ଶକ୍ତି ଏକତ୍ରିତ କରି ମୋର ରକ୍ଷୀକୁ କହିଦେଲି "ମୁଁ ଯାଉଛି ସେମାନଙ୍କ ସହ ମିଶିଯିବି ।" ତାହାର ଉତ୍ତରକୁ ଅପେକ୍ଷା ନକରି କାର୍ଯ୍ୟାଳୟ ତ୍ୟାଗ କଲି ଓ ମହିଳାମାନଙ୍କ ଧାଡ଼ିରେ ମିଶିଗଲି ।

■■■

– ୩୪ –

## କ୍ୟାମ୍ପ୍ କମ୍ବଲ

ସେହି ଯନ୍ତ୍ରଣାଦାୟକ ଯାତ୍ରା କେତେଦିନ ଚାଲିଲା କହିବା କଷ୍ଟ । ଆମେମାନେ ଦିନରାତିର ପାର୍ଥକ୍ୟ ମଧ୍ୟ ଜାଣିପାରୁ ନଥିଲୁ । କୌଣସି ଖାଦ୍ୟ ନଥିଲା । ବରଫ ଖାଇ ତୃଷା ନିବାରଣ କରୁଥିଲୁ । ସେହି ଯାତ୍ରା ସମୟରେ ଆମର ଜଣେ ରକ୍ଷୀ ଖବର ଦେଲା ଯେ ବଲ୍‌ଶେଭିକ୍‌ମାନେ ପାଖକୁ ପାଖକୁ ମାଡ଼ି ଆସୁଛନ୍ତି । ତା' ପରଠାରୁ ଆମଯାତ୍ରାର ଗତି ବେଶ୍ ବଢ଼ିବାକୁ ଲାଗିଲା । ପ୍ରତ୍ୟେକ ଯାତ୍ରୀ ନିଜ ନିଜର ଅବଶିଷ୍ଟ ଶକ୍ତି ବିନିଯୋଗ କରି ଦୌଡ଼ୁଥାନ୍ତି । ସ୍ୱାଧୀନତା ଅତି ପାଖରେ ଥିବାରୁ କେହି ପଛକୁ ପଡ଼ିବାକୁ ଚାହୁଁ ନଥାନ୍ତି ।

ସେହିଭଳି ପରିସ୍ଥିତିରେ ସାଧାରଣତଃ ଯାହା ଘଟେ ସେଠାରେ ମଧ୍ୟ ସେୟା ହେଉଥିଲା । ତୁଣ୍ଡ ବାଇଦରେ ବହୁ ଜନରବ ଉଡ଼ୁଥାଏ । ଆମ କାନ୍ଧରେ ଯେମିତି ଡେଣା ଲାଗିଥିଲା ।

ଜଣେନିଆ ମୋ କାନ ପାଖରେ ଫୁସ୍ ଫୁସ୍ ହୋଇ କହିଲା, "ରୁଷିଆର ପ୍ରଧାନ

ସେନାପତି ଆଉସ୍‌ଭିଦ୍‌ଜରୁ ଆସିଥିବା ଏହି ବନ୍ଦୀମାନଙ୍କୁ ମୁକ୍ତ କରିବା ପାଇଁ ସୈନ୍ୟଦଳ ପଠାଇଛନ୍ତି । ଖୁବ୍ ଶୀଘ୍ର ସେମାନେ ଆସି ଏଠାରେ ପହଞ୍ଚିଯିବେ ।''

ତା' କଥା ଅବଶ୍ୟ ମୁଁ ବିଶ୍ୱାସ କରୁଥିଲି । ଏପରିକି ସେ କେଉଁଠୁ ସେ ଖବର ପାଇଲା, ମୁଁ ତାହା ମଧ୍ୟ ପଚାରିଲି ନାହିଁ । ବନ୍ଧୁକ ଆବାଜ ମୋ' କାନରେ ବାରମ୍ବାର ବାଜୁଥିଲା । ସ୍ୱାଧୀନତାର ଆଗମନକୁ ମୁଁ ଅପେକ୍ଷା କରିଥିଲି ।

ମୋ ପାଖରେ ଚାଲୁଥିବା ଝିଅ ଦୁଇଟି ଫୁସ୍ ଫୁସ୍ ହୋଇ କ'ଣ କଥା ହେଉଥିଲେ । ସେ ଦୁହିଁଙ୍କ ଶୁଖିଲା ମୁହଁ ଦେଖିଲେ ଜଣା ଯାଉଥିଲା ଯେ ତାହା କଦାପି ସୁସମ୍ବାଦ ନଥିଲା ।

ମୁଁ ପଚାରିଲି, ''କ'ଣ ହେଲା ?''

''ଅନତି ଦୂରରେ ରାସ୍ତାକଡ଼ରେ ଗୋଟିଏ ଛୋଟ ଜଙ୍ଗଲ ଅଛି । ସେଠାରେ ମେସିନ ଗନ୍ ଖଞ୍ଜା ଯାଇଛି । ସେହି ମେସିନ୍ ଗନ୍ ଆମ ଖବର ବୁଝିବ ।''

''କାହିଁକି ବାଜେ ଗପୁଛ ? ଆମେ ଶତାଧିକ ଅଛୁ । ସେମାନେ ଆମର କଦାପି କିଛି କରିପାରିବେ ନାହିଁ । ଆମ ସମ୍ପୂର୍ଣ୍ଣ ଧାଡ଼ିକୁ ମେସିନ୍ ଗନ୍ କଦାପି ଆହତ କରିପାରିବ ନାହିଁ । ଆମ ରକ୍ଷୀମାନଙ୍କର ସୋଭିଏତ୍ ସୈନ୍ୟକୁ ପ୍ରବଳ ଡର । ସେମାନେ ତାହା କଦାପି କରିବେ ନାହିଁ ।''

ତଥାପି ଆମର ଉତ୍କଣ୍ଠା ଦୂର ହେଉ ନଥିଲା । ପୂରା ଅନ୍ଧାର ହେବା ବେଳକୁ ଆମେ ଗୋଟାଏ ଛୋଟ ରେଳ ଷ୍ଟେସନ୍‌ରେ ପହଞ୍ଚିଗଲୁ । ସେଠାରେ ଚଉଡ଼ା ଚଉଡ଼ା ଡବା ବିଶିଷ୍ଟ ଗାଡ଼ି ଛିଡ଼ା ହୋଇଥିଲା । ସେଥିରେ କାଠ ବୁହାଯାଏ । ବରଫ ପଡ଼ି ଖସଡ଼ା ହୋଇଥିବା ସେହି ଡବା ଭିତରେ ଆମକୁ ଲଦି ଦିଆଗଲା । ଠେଲା ଠେଲି, ଚିପା ଚିପି, ଚିତ୍କାର ଓ ବନ୍ଧୁକର ଆବାଜରେ ସେଠାରେ ଏକ ଆତଙ୍କଜନକ ପରିସ୍ଥିତି ସୃଷ୍ଟି ହୋଇଥିଲା । ମୁଁ ମୋ' ସଙ୍ଗୀମାନଙ୍କଠାରୁ ଅଲଗା ହୋଇଗଲି । କେହି ଜଣେ ମୋତେ ପଛରୁ ଏଭଳି ଠେଲାଟାଏ ଦେଲା ଯେ ମୁଁ ଯାଇ ଡବା ଭିତରେ ପହଞ୍ଚିଗଲି । ଗାଡ଼ିକୁ ପ୍ରଥମେ ଚଢ଼ିଥିବା ମହିଳାମାନେ ବସି ପଡ଼ିବାକୁ ଚେଷ୍ଟା କଲେ, କିନ୍ତୁ ପାଖରେ ଥିବା ଅନ୍ୟ ମହିଳାମାନଙ୍କର ଠେଲା ପେଲା ଦେଖି ଦଳି ହୋଇଯିବା ଭୟରେ ପୁଣି ଛିଡ଼ା ହୋଇ ପଡ଼ିଲେ । ଆମେମାନେ ଏଭଳି ଖୁନ୍ଦା ଖୁନ୍ଦି ହୋଇଥିଲୁ ଯେ କେହି ହାତଗୋଡ଼ ଉଠାଇ ପାରୁ ନଥିଲେ । ସେଭଳି ଅବସ୍ଥାରେ ଗାଡ଼ି ଚାଲିଲେ ଆମେ ହୁଏତ କେହି ବଞ୍ଚିବୁ ନାହିଁ । ସେଭଳି ନିଶ୍ଚଳ ଅବସ୍ଥାରେ ଗୋଟିଏ ଜାଗାରେ ରହିଲେ ହୁଏତ ସମସ୍ତେ ବରଫ ପାଲଟି ଯିବୁ ବୋଲି ମୋ'ର ଆଶଙ୍କା ହେଲା । ମୁଁ ତ ଭାବିଲି, ସେଠାରେ ପହଞ୍ଚିବା ବେଳକୁ ଆମେମାନେ ବହୁ ମସ୍ତକ ବିଶିଷ୍ଟ ଗୋଟାଏ ବରଫ ମୂର୍ତ୍ତି ପାଲଟି ଯାଇଥିବୁ ।

ଟ୍ରେନ୍ ଛାଡ଼ିବା ପୂର୍ବରୁ ଦୁଇଜଣ ବୟସ୍କ ସୈନିକ ଗାଡ଼ିକୁ ଉଠିଲେ । ସେମାନେ

ହେଲେ ଆମର ରକ୍ଷୀ । ଓ୍ୱାଗନ୍‌ର ପଛରେ ଗୋଟିଏ ଛୋଟ ବେଞ୍ଚ ପକାଇ ସେମାନେ ବସିଗଲେ । ଆମ ଆଡ଼କୁ ଅନାଇଲେ ନାହିଁ । ସେମାନେ ହଙ୍ଗେରୀ ଭାଷାରେ ଚୁପ୍‌ଚାପ୍ କଥାବାର୍ତ୍ତା ହେଲେ । ଟ୍ରେନ୍ ବାହାରିଲା ଓ ଖୁବ୍ ଶୀଘ୍ର ଦ୍ରୁତ ଗତିରେ ଚାଲିଲା । ପବନରେ ଆମର ମୁଣ୍ଡ ଛିଡ଼ିଯିବା ଭଳି ଲାଗିଲା । ନିଆଁ ଉପରେ ଥୁଆ ହେବା ଭଳି ପାଦ ଯେମିତି ଜଳୁଥିଲା । କେହି କଥାବାର୍ତ୍ତା ହେଉ ନଥିଲେ, କାରଣ କିଛି ଶୁଣିବା ସମ୍ଭବ ନଥିଲା । ରେଲ୍ ଚକର ଘୂର୍ଣ୍ଣନ ଏବଂ ପବନର ଆବାଜ କେବଳ ସେହି ମୃତ୍ୟୁ ସଦୃଶ ନିସ୍ତବ୍ଧତାକୁ ଭଙ୍ଗ କରୁଥିଲା ।

ମୋ ପାଖାପାଖି ଦୁଇଟି ପୋଲାଣ୍ଡ ଝିଅ ଛିଡ଼ା ହୋଇଥିଲେ । ଜଣେ ଅନ୍ୟ ଝିଅଟିକୁ କହୁଥିଲା, ''ଜୋସିୟ୍, ମୁଁ ଗାଡ଼ିରୁ ଡେଇଁ ପଳାଇବାକୁ ଭାବୁଛି । ତୋ କଥା କ'ଣ ?'' ''ତୋ ପଛେ ପଛେ ମୁଁ ମଧ୍ୟ ଡେଇଁବି ।'' ସେମାନେ ଧୀରେ ଧୀରେ ଓ୍ୱାଗନ ଧାର ପାଖକୁ ଗଲେ । ଭୟରେ ମୋର ହୃତ୍‌ପିଣ୍ଡ ସ୍ପନ୍ଦନ ଯେମିତି ବନ୍ଦ ହୋଇଗଲା । ସେମାନେ ଜୟଯୁକ୍ତ ହୁଅନ୍ତୁ ବୋଲି ଆଶା କରୁଥିଲି । ଡବା ଉପର ଖୋଲାଥିଲା । ରକ୍ଷୀ ମାତ୍ର ଦୁଇଜଣ ଥିଲେ । ସେମାନେ ନିଜ ନିଜ ସମସ୍ୟାରେ ବ୍ୟସ୍ତ ଥିଲେ । ମୁଁ ସେମାନଙ୍କ ଆଡ଼କୁ ଆଦୌ ଅନାଉ ନଥିଲି । ମୁଁ କେବଳ ସେମାନଙ୍କ କଥା ମନଦେଇ ଶୁଣୁଥିଲି ।

''ରେ କୀଟ, ସେମିତି କୁଆଡ଼େ ଯାଉଛୁ ? ଜର୍ମାନ୍ ସୈନ୍ୟର ଗର୍ଜନ ! ତା' ପରେ ପରେ ମସ୍ତ ପାହାର । ଝିଅଟି ଗାଡ଼ି ଭିତରେ ପଡ଼ିଗଲା । ସେତିକିରେ ଶେଷ । ଜର୍ମାନ୍ ସୈନିକ ତାକୁ ପାଦରେ ଚକଟି ଦେଲା ।

ଜଣେ ପାଟିକରି କହିଲା, ''ଗୋଟାଏ ମଲାଣି ଭୟାଡ଼େ । କ'ଣ କରିବା ? ଗାଡ଼ିରେ ମୁର୍ଦ୍ଦାର ପାଇଁ ଥାନ କାହିଁ ?''

''ଫୋପାଡ଼ି ଦେ ।''

ଭୁସ୍ ଶବ୍ଦ ହେଲା । ଝିଅଟିର ମୃତଦେହ ଶୂନ୍ୟରେ ଉଡ଼ିଗଲା । କାହାରି ପାଟିରୁ ପଦେ କଥା ବାହାରିଲା ନାହିଁ । ସେହି ନାରକୀୟ ହତ୍ୟାକୁ ଦେଖି ମଣିଷ ସୁଲଭ ପ୍ରତିକ୍ରିୟା ପ୍ରକାଶ କରିବାକୁ ସେଠାରେ ଜଣେ ହେଲେ ନଥିଲେ । ଆମେମାନେ କାହିଁକି ନୀରବ ରହିଲୁ ? କେବଳ ମୃତ୍ୟୁଭୟ ଯେ ଆମ ମୁହଁ ବନ୍ଦ କରି ଦେଇଥିଲା, ତାହା ନୁହେଁ । ସେମାନେ ବା କେତେ ଜଣ ? ଆମେ ତ ଶତାଧିକ ଥିଲୁ । ତାହା ଥିଲା ଏକ ନିତିଦିନିଆ ରୁଟିନ୍ ବ୍ୟାପାର । ବନ୍ଦୀ ଶିବିରରେ ସେମାନେ ଥିଲେ ପିଟିବା ବାଲା, ଆମେ ପିଟା ସହିଲା ବାଲା । ଆତ୍ମରକ୍ଷା କରିବାକୁ ଆମର ଅଧିକାର ନଥିଲା । ବନ୍ଦୀ ଶିବିର ଆମମାନଙ୍କୁ ସେହିଭଳି କରିଦେଇଥିଲା । ମାନବ ସୁଲଭ ପ୍ରତିକ୍ରିୟା ଦେଖାଇବା କିମ୍ବା ଶତ୍ରୁକୁ ସମ୍ମୁଖୀନ ହେବାର ସ୍ୱାଭାବିକ ଗୁଣ ଆମମାନଙ୍କ ଠାରୁ ବହୁଦିନ ଆଗରୁ ଛଡ଼ାଇ ନିଆ ଯାଇଥିଲା ।

ଗାଡ଼ି ଚକର ଘୂର୍ଣ୍ଣନ ଶବ୍ଦ ଶୁଣି ଶୁଣି ସମୟ ଅତିବାହିତ ହୋଇ ଯାଉଥିଲା ।

କେତେ ବଡ଼ ବଡ଼ ଅଞ୍ଚଳ ଓ ଛୋଟ ସହର ଦେଇ ଆମ ଗାଡ଼ି ଅତିକ୍ରମ କରିଯାଉଥିଲା । ରାତି ଏତେ ଘନ ଅନ୍ଧାରରେ ଭରି ଯାଇଥିଲା ଯେ ସେହି ସ୍ଥାନଗୁଡ଼ିକୁ ଆମେ ଚିହ୍ନି ପାରୁ ନଥିଲୁ କିମ୍ବା ଆମେମାନେ କେଉଁଠାରେ ଥିଲୁ ତାହା ମଧ୍ୟ ଜାଣିପାରୁ ନଥିଲୁ ।

କିଛି ସମୟ ପରେ ମୋ' କାନରେ ବାଜିଲା କାହାର ଏକ ଆକୁଳ ନିବେଦନ । ଜଣେ ମହିଳା ଅଧିକ ସମୟ ଠିଆ ହୋଇ ନପାରିବାରୁ ବସିବାକୁ ଚେଷ୍ଟା କରୁଥିଲେ । କିନ୍ତୁ ଜଣେ ହତ୍ୟାକାରୀ ତା' ଉପରେ ବରଂ ଲମ୍ଫ ପ୍ରଦାନ କଲା । ଜଣେ ଜର୍ମାନୀ କାପୋ ପାଟିକରି ଡାକିଲା, ''ରେ ଜଗୁଆଳିମାନେ, ''ଇଆଡ଼େ ଗୋଟେ ମଲାଣି, କ'ଣ, ତାକୁ ଫୋପାଡ଼ି ଦେବୁ ?'' ଗାଡ଼ିରୁ ମୁର୍ଦ୍ଦାର ଫୋପାଡ଼ିବାର ପୁଣି ଗୋଟାଏ ଶବ୍ଦ ଶୁଭିଲା । ସେହି ଶବ୍ଦ ବାରମ୍ବାର ଶୁଣିବାକୁ ପାଇଲି । ମୁଁ ଦେଖିଲି ଜର୍ମାନ୍ ପୋଲିସ୍ ଓ କର୍ମକର୍ତ୍ତାମାନେ ଯାତ୍ରୀମାନଙ୍କୁ ନିୟମିତ ମାରିବାକୁ ଲାଗିଲେ । ଏବଂ ଗାଡ଼ି ବାହାରକୁ ଶବ ଫୋପାଡ଼ିବା କାର୍ଯ୍ୟ ନିୟମିତ ଚାଲିଲା । ଯେପରିକି ସେମାନେ ଗାଡ଼ି ଭିତରେ ବସିବାକୁ ଯଥେଷ୍ଟ ସ୍ଥାନ ପାଇବେ । ଆମେମାନେ କ'ଣ ସେହି ହତ୍ୟାରୁ ରକ୍ଷା ପାଇବୁ ? ଅବଶ୍ୟ ମୁଁ ସେହି କାପୋମାନଙ୍କଠାରୁ ବେଶ୍ ଦୂରରେ ଥିଲି । ମଝିରେ ବହୁ ସଂଖ୍ୟକ ମହିଳା ଥିଲେ । ମୋ ପାଦରେ ଭୀଷଣ ଯନ୍ତ୍ରଣା ହେଉଥିଲା । ଏକମାତ୍ର ସ୍ୱପ୍ନ ଥିଲା, ''କେମିତି ଟିକେ ବସି ଯିବି । ମୁହୂର୍ତ୍ତେ ପାଇଁ ହେଲେ ସୁଦ୍ଧା କେମିତି ଟିକେ ବସି ପଡ଼ନ୍ତି କି । କିନ୍ତୁ ତାହା ସମ୍ଭବ ନଥିଲା ।''

ଦୁଇଟି ଡବା ମଝିରେ ଥିବା ଗୋଟିଏ କୋଠରୀ ମୋର ଦୃଷ୍ଟି ଗୋଚର ହେଲା । ସେ କୋଠରୀ ଭିତରେ ଗୋଟାଏ ବେଞ୍ଚ୍ ମଧ୍ୟ ଥିଲା । ମୁଁ କେମିତି ସେହି କୋଠରୀ ଭିତରକୁ ପଶିବି ସେହି ଆକାଙ୍କ୍ଷା ମନରେ ତୀବ୍ର ହୋଇଉଠିଲା । ମୁଁ ସେଠାରେ ବସି ପଡ଼ିବାକୁ ଇଚ୍ଛା କଲି ଯେପରିକି ରକ୍ଷୀମାନେ ପ୍ରତି ମୁହୂର୍ତ୍ତରେ ମହିଳାମାନଙ୍କୁ ହତ୍ୟା କରୁଥିବା ଦୃଶ୍ୟ ଆଉ ମୋ ଆଖି ଉପରେ ନପଡୁ । ସେଠାରେ ଭୀତତ୍ରସ୍ତ ହୋଇ ରହିବା ଅପେକ୍ଷା ସେ କୋଠରୀ ଭିତରେ ପଶିଯିବା ବରଂ ଅଧିକ ସ୍ପୃହଣୀୟ । ସେହି ଦୁଃଖଜନକ ପରିସ୍ଥିତି ମୋତେ ଅଧିକ ନିର୍ଭୀକ କରିଦେଲା । ସେ କୋଠରୀକୁ ଯିବାକୁ ଚେଷ୍ଟା କରିବା ବେଳେ ଯଦି ରକ୍ଷୀ ଦଳ ମୋତେ ଦେଖି ପକାନ୍ତି, ତେବେ ହୁଏତ ମୁଁ ପଳାଇଯାଉଛି ବୋଲି ଭାବି ମୋତେ ଗୁଳି କରିଦେଇ ପାରନ୍ତି । ସେହି ଆଶଙ୍କା ସତ୍ତ୍ୱେ ମୁଁ ଧୀରେ ଧୀରେ ଡବାପଛକୁ ଚାଲିଗଲି ଏବଂ କିଛି ନ ଭାବି ପ୍ରଥମେ ଗୋଟିଏ ପାଦ ସେ କୋଠରୀ ଭିତରେ ରଖି ଅନ୍ୟ ପାଦଟିକୁ ମଧ୍ୟ ଥୋଇଲି । ମୁଁ କୋଠରୀ ଭିତରେ ପହଞ୍ଚିଗଲି ଏବଂ ବେଞ୍ଚ୍

ଉପରେ ବସି ପଡ଼ିଲି ଗୀର୍ଜା ମୂଷା ଭଳି । ମୋର ସର୍ବାଙ୍ଗ ଝାଳରେ ବୁଡ଼ିଗଲା । ମୁଁ ସଫଳ ହେଲି ଏବଂ ଗୋଡ଼କୁ ଲମ୍ବାଇ ଦେଲି । କେହି ମୋତେ ଫେରି ଯିବାକୁ ଡାକି ନଥିଲେ । ମୁଁ ନିଃଶବ୍ଦରେ ରହିଲି । ମୋତେ ଏତେ ଭଲ ଲାଗିଲା ଓ ଆରାମ ବୋଧ ହେଲା ଯେ ମୁଁ ବସି ବସି ଢୁଳାଇ ପଡ଼ିଲି । ଅତ୍ୟଧିକ ଥଣ୍ଡା ଯୋଗୁଁ ମୋ ନିଦ ଭାଙ୍ଗିଗଲା । ଥଣ୍ଡା ଓ ବରଫପାତରେ ମୋ' ମୁଣ୍ଡ ଯେପରି ଛିଣ୍ଡି ପଡୁଥିଲା । ମୁଁ ନିଜେ ଯେମିତି ବରଫ ହୋଇଯାଉଥିଲି । ଡବା ଭିତରେ ସମସ୍ତେ ଖୁନ୍ଦା ଖୁନ୍ଦି ହୋଇ ବସିଥିବାରୁ ସେଠାରେ ଉଷୁମ ଲାଗୁଥିଲା । କିନ୍ତୁ ମୁଁ ତ ଏକା କୋଠରୀ ଭିତରେ । ଅନ୍ୟ କୁଆଡ଼କୁ ଘୁଞ୍ଚିବାର ସୁବିଧା ମୋର ନଥିଲା । ତଦୁପରି ଡବାରେ ଥିବା ହଙ୍ଗେରୀୟ ସୈନ୍ୟ ଓ ଜର୍ମାନ ରକ୍ଷୀମାନେ ମୋତେ ଦେଖି ପକାଇବାର ଆଶଙ୍କା ମଧ୍ୟ ଥିଲା । ମୋ'ର ହାତକୁ ମୁଁ ଫୁଙ୍କୁଥିଲି । ପାଦକୁ ପାଦରେ ଘଷୁଥିଲି- ଟିକେ ଉଷୁମ  କରିବା ପାଇଁ କିନ୍ତୁ ସେଥିରେ କିଛି ଲାଭ ହେଉ ନଥିଲା । ତଥାପି ନିଦ ମୋତେ ମାଡ଼ି ବସୁଥିଲା । ମୁଁ ଶୋଇ ପଡ଼ିଥିଲି । କିନ୍ତୁ କୋଠରୀ କାନ୍ଥରେ କାହାର କରାଘାତରେ ମୋ' ନିଦ ଭାଙ୍ଗିଗଲା । ମୋତେ ଏକ କ୍ଷୀଣ ସ୍ୱର ଶୁଭିଲା ।

''ମା' ତୁମେ ଶୁଅନା । ତାହା ବଡ଼ ବିପଦ୍‌ଜନକ । କେତେବେଳେ ତୁମେ ହୁଏତ ନିଜେ ବରଫ ପାଲଟିଯିବ, ତାହା ଜାଣି ପାରିବ ନାହିଁ ।'' ସେ କଥା ଶୁଣି ତାହା ମୋତେ ସ୍ୱପ୍ନ ଭଳି ଲାଗିଲା କିମ୍ବା ମୋର ନିଜ କଥା ମୋତେ ଶୁଭୁଛି ବୋଲି ଭାବିଲି । ବହୁ କଷ୍ଟରେ ଆଖି ମେଲା କଲି ଏବଂ ଥରୁଥିବା ମୋ ମୁଣ୍ଡଟିକୁ ସାମାନ୍ୟ ଉପରକୁ ଟେକିବାକୁ ଚେଷ୍ଟା କଲି । କିନ୍ତୁ ତାହା ସମ୍ଭବ ହେଲା ନାହିଁ । ମୁଁ ପୁଣି ଢୁଳାଇଲି ।

''ମା' ଦୟାକରି ତୁମ ହାତ ଟିକେ ବଢ଼ାଇ ଦିଅ ।'' ପୁଣି ସେହି କରାଘାତ ଓ ପୁଣି ସେହି କ୍ଷୀଣ ସ୍ୱର ! ମା' ଦୟାକରି ମୋ ଆଡ଼କୁ ହାତ ବଢ଼ାଇ ଦିଅ ଓ ଏହି କମ୍ବଳ ଖଣ୍ଡିକ ନିଅ । ଶୀଘ୍ର ନିଅ ।'' ଯେମିତି ସ୍ୱର୍ଗପୁରର ସେହି ଅନୁରୋଧ । କିଛି ଭାବ ନାହିଁ, କେବଳ ହାତଟି ବଢ଼ାଇ ଦିଅ ।

ମୁଁ ହାତ ବଢ଼ାଇ ଦେଲି । ସତକୁ ସତ ଡବା ଭିତରକୁ କେହି ଜଣେ ଖଣ୍ଡେ ଧୂସର ରଙ୍ଗର କମ୍ବଳ ବଢ଼ାଇ ଦେଲା । ନାଃ, ତାହା ସ୍ୱପ୍ନ ନଥିଲା । ଥିଲା ଏକ ବାସ୍ତବ ସତ୍ୟ । ମୁଁ ବୁଝିଲି ଯେ ''ଡବା ଭିତରେ କେହି ଜଣେ ଅଛି ଯେ କି ମୋତେ ସାହାଯ୍ୟ କରିବାକୁ ଚାହେ; ମୋତେ ବଞ୍ଚାଇ ରଖିବାକୁ ଚାହେ ।'' ମୁଁ କମ୍ବଳରେ ହାତ, ପିଠି, ମୁଣ୍ଡ ସବୁ ଆବୃତ କରିଦେଲି । ଏଥର ମୁଁ କୋଠରୀକୁ ଆଘାତ କଲି ଓ କହିଲି, ମା' ମୋ ଜୀବନ ରଖିଦେଲ ତୁମେ । ବର୍ତ୍ତମାନ ମୁଁ ବେଶ୍ ଉଷ୍ମତା ଅନୁଭବ କରୁଛି । ତୁମର ଦରକାର ହେବ କି କମ୍ବଳ ଖଣ୍ଡିକ ?

''ନା, ନା'' ଜବାବ ଆସିଲା । ଆମ ମା ଝିଅଙ୍କର ଖଣ୍ଡେ କମ୍ବଳ ଅଛି । ଆମେ ଦୁହେଁ ତାହା ଘୋଡ଼ାଇ ହୋଇଛୁ । ବେଶ୍ ଉଷୁମ ଲାଗୁଛି ।

ମୁଁ ଭାବୁଥିଲି, ''କେମିତି ଏହା ସମ୍ଭବ ହେଲା ? ଗୋଟିଏ ଦିଗରେ ମନୁଷ୍ୟର ଚରମ ଅମାନୁଷିକତା ଓ ଅନ୍ୟ ଦିଗରେ ଚରମ ନିଃସ୍ୱାର୍ଥପରତା, ସ୍ନେହ, ପ୍ରେମ, ଦରଦ । ମୁଁ ଉପଲବ୍ଧି କଲି, କିଏ ମୋର ତ୍ରାଣକର୍ତ୍ତୀ ତାହା ତ ଜାଣିପାରିଲି ନାହିଁ । ମୁଁ ତ ସାରା ଜୀବନ ତାଙ୍କୁ ଜାଣିପାରିବି ନାହିଁ କିମ୍ବା ତାଙ୍କର ଋଣ ପରିଶୋଧ କରିପାରିବି ନାହିଁ । ସେହି କମ୍ବଳ ଖଣ୍ଡିକ ଜୀବନ ଓ ମୃତ୍ୟୁ ଭିତରେ ଥିବା ପାର୍ଥକ୍ୟ ମୋତେ ବୁଝାଇ ଦେଉଥିଲା ।

ମୁଁ ପୁନର୍ବାର କାନ୍ଥରେ କରାଘାତ କରି ପଚାରିଲି, ''ମା ଦୟାକରି ତୁମର ପରିଚୟ ଦିଅ । ମୁଁ ତୁମର ନାମ ଜାଣିବା ନିହାତି ଦରକାର ।'' କିନ୍ତୁ ସବୁ ଚୁପ୍ ଚାପ୍ । ମୁଁ ପୁନର୍ବାର ପଚାରିଲି, ''ମୋ କଥା ଶୁଣୁଛି କି ? ତୁମର ନାମ, ତୁମର ନାମ, ତୁମର ନାମ'' ବାରମ୍ବାର କହୁଥିଲି ।

ତୁମ ହାତ ବଢ଼ାଇ ଦିଅ ''ସେ ପଟରୁ ଅନୁରୋଧ ଆସିଲା । ମୁଁ ହାତ ବଢ଼ାଇ ଦେଲି । ଏଥର ମୋ' ହାତକୁ ଆସିଲା ଖଣ୍ଡେ ଶୁଖିଲା ରୁଟି । ମୁଁ ତାକୁ ଖଣ୍ଡ ଖଣ୍ଡ କରି ଖାଇବାକୁ ଲାଗିଲି । ତାହା ମୋର ପାଟିର ଲାଳରେ ମିଶି ନରମ ହେବାକୁ ଲାଗିଲା ।

ମୁଁ ପୁନର୍ବାର କହିଲି, ''ମା' ତୁମର ନାମ, ତୁମର ନାମ କୁହ ।''

''ତୁମର ନାମ, ତୁମର ନାମ'' – କେବଳ ପବନର ସୁ ସୁ ଶବ୍ଦ ମୋ କାନରେ ବାଜୁଥାଏ ।

■■■

– ୩୬ –

# ଜୀବନ ପଛରେ ଅନୁଧାବନ

ଆମେ ଦଳେ ପଙ୍ଗପାଳ ଭଳି ଉପର ଓଳି ରାଭେନ୍ସ ବ୍ରୁକରେ ପହଞ୍ଚିଗଲୁ । ଆଉସ୍‌ଭିଡ୍‌ଜ୍ ଶବ୍ଦଟି ସେତେବେଳେ ଉତ୍କଣ୍ଠା ଓ ଆତଙ୍କର ପ୍ରତିଶବ୍ଦ ଭାବରେ ବିବେଚିତ ହେଉଥିଲା । ସେଠାରେ ପୂର୍ବରୁ ଥିବା ବନ୍ଦୀଗଣ ଆମ ଆଡ଼କୁ ଅନେଇବାକୁ ମଧ ଭୟ କରୁଥିଲେ । କାରଣ ଆମେ ବାସ୍ତବରେ ସେଇଭଳି ଭୟଙ୍କର ଦିଶୁଥିଲୁ । ବିଶ୍ରାମହୀନ ମାର୍ଚ୍ଚିଂ, ଖୋଲା ରେଳ ଡବାରେ ଅନବରତ ଛିଡ଼ା ହୋଇ ରହିବାର ଭୟଙ୍କର ଯନ୍ତ୍ରଣା, କ୍ଷୁଧା, ତୃଷ୍ଣା ଏବଂ ଦୁର୍ଗନ୍ଧ ପରିବେଶ ଆମମାନଙ୍କ ଚେହେରାକୁ ବିକୃତ ଓ ଆତଙ୍କ ଜନକ

ଓ ନର୍କଗାମୀ ମଣିଷମାନଙ୍କର ଛାୟାଭଳି କରିଦେଇଥିଲା । ମୋର ପରିଚିତ ସାଙ୍ଗମାନଙ୍କୁ ଏକ ଆହତ ପକ୍ଷୀ ଭଳି ଖୋଜିବାକୁ ଲାଗିଲି । କିନ୍ତୁ ଜଣେ ସୁଦ୍ଧା ଚିହ୍ନା ଲୋକ ଦେଖାହେଲେ ନାହିଁ । ମୋ'ର ଦୃଢ଼ ଧାରଣା ହେଲା ଯେ ଆମକୁ ମାରିଦେବା ପାଇଁ ସେଠାକୁ ଅଣାଯାଇଥିଲା । ଆମମାନଙ୍କୁ ଗୋଟାଏ ବାରାକ୍‌ରେ ଭର୍ତ୍ତି କରିଦିଆଗଲା । ତିନିଥାକିଆ ଡେକ୍‌ରେ ନଅ ଜଣ ଲେଖାଏଁ ରହିବାକୁ ହେଲା । ବ୍ୟାରାକ୍‌ଟି ପୂରା ଅବ୍ୟବସ୍ଥିତ ପରିସ୍ଥିତିରେ ଥିଲା । ଆଉସ୍‌ଭିତ୍‌ଜ୍ ବନ୍ଦୀ ଶିବିରକୁ ଖାଲି କରାଯାଇଥିବା ସମ୍ବାଦରେ ନାତ୍‌ସୀ ଆତଙ୍କବାଦୀମାନେ ପୂରା ହଡ଼ବଡ଼େଇ ଯାଇଥିଲେ । ସେମାନଙ୍କ ମୁଣ୍ଡରେ କିଛି ପଶୁନଥିଲା । ଆମମାନଙ୍କର ପ୍ରଥମ ଆବଶ୍ୟକତା ଥିଲା ନିଦ୍ରା । ତାହା କ୍ଷୁଧା ଅପେକ୍ଷା ଅଧିକ ତୀବ୍ର ଥିଲା । ଆମେମାନେ ଖଟ ଉପରେ, ତଳେ ବା ଯେ କୌଣସି ସ୍ଥାନରେ ମଲା ଭଳି ପଡ଼ିଗଲୁ । ମୋର ମନେ ପଡୁଛି ଓ୍ୱାର୍ଡେନ୍ ଆମକୁ ଗଣିବାକୁ ଚେଷ୍ଟା କରୁଥିଲା । ସେ ହାଜର ହାଜର ଚିତ୍କାର କଲା, କେହି ନ ଉଠିବାରୁ ସର୍ଦ୍ଦାର ଶୋଇଥିବା ଲୋକଙ୍କ ମୁହଁରେ ପିଟିଲା । କିନ୍ତୁ କାହାର ନିଦ ଭାଙ୍ଗିଲା ନାହିଁ । ଶେଷରେ ସେ ଆମକୁ ଛାଡ଼ି ପଳାଇଲା । ଯାହା ହେଲେ ବି ତାହା ୧୯୪୫ର ଜାନୁୟାରୀ ମାସ ।

ଆମେ ରାଭେନ୍ସ ବ୍ରୁକ୍‌ରେ ପହଞ୍ଚିବା ଦିନୁ ଆମକୁ ଆହୁରି ଦୂରକୁ ନେଇଯିବା ପାଇଁ ସେମାନେ କଥାବାର୍ତ୍ତା ହେଉଥିଲେ । ସେଠାରେ ଆମମାନଙ୍କୁ ରଖିବା ପାଇଁ ସ୍ଥାନାଭାବ ଥିଲା । ସେଠାରେ ଯାହା ମିଳୁଥିଲା ସେତିକି ଖାଇ ଅଧିକ କେଇଦିନ ବିଶ୍ରାମ ନେବାକୁ ଆମେ ଚାହୁଥିଲୁ । ଏଠାକାର ଖାଦ୍ୟ ଆଉସ୍‌ଭିତ୍‌ଜ୍ ଖାଦ୍ୟ ଅପେକ୍ଷା ନିକୃଷ୍ଟତର ଥିଲା । ସକାଳେ ଶୁଖିଲା ପାଉଁରୁଟି ମଧ୍ୟାହ୍ନ ଓ ରାତି ପାଇଁ କିଛି ବିନା ତେଲ ଓ ବିନା ଚର୍ବିର ଝୋଳ । ସେ ଝୋଳକୁ ଅବିଶ୍ରାନ୍ତ ପିଇଲେ ବି କ୍ଷୁଧା ନିବାରଣ ହେଉ ନଥିଲା । ମୋତେ ଇର୍କା ପଚାରିଲା, ''ତୁମେ କେତେ ପ୍ଲେଟ୍ ଝୋଳ ଖାଇ ପାରିବ ?'' ମୋ ପାଇଁ ତାହା ଏକ କଠିନ ପ୍ରଶ୍ନ ଥିଲା । ତଥାପି ଉତ୍ତର ଦେଲି, ''କେତେ ଖାଇପାରିବି, ତା'ର ସୀମା ନାହିଁ ।'' ଇର୍କା କହିଲା, ''ତୁମେ ଜାଣିଛ କି ମୁଁ କ'ଣ କରିବି ? ଆଜି ସନ୍ଧ୍ୟାରେ ବ୍ୟାରାକ୍ ରୋଷେଇ ଘରୁ ଟିଣାଏ ଝୋଳ ଚୋରି କରିବାକୁ ହେବ । ଗୋଟିଏ ଟିଣରେ ପଚିଶି ଲିଟର ଝୋଳ ଆମେ ଖାଇବା, ହେବ ନା ? ଆମେ ଚାରିଜଣ ଟିଣାଏ ଖାଇ ଖାଲି ଟିଣକୁ ରୋଷେଇ ଘରେ ଫୋପାଡ଼ି ଦେବା ।''

---

ରାଭେନ୍ସ ବ୍ରୁକ୍:- ଏହା ବର୍ଲିନ୍ ସହରର ଉତ୍ତର ଦିଗକୁ ସତୁରି କି.ମି ଏବଂ ସାକ୍‌ସେନ୍ ହାଉସେନ୍‌ର କୋଡ଼ିଏ ମାଇଲ ଦୂରରେ ଅବସ୍ଥିତ ଏକ ବନ୍ଦୀ ଶିବିର । ଏହା ଗୋଟିଏ ରାସ୍ତା ପାଖ ଷ୍ଟେସନ୍ ଏବଂ ନାତ୍‌ସୀମାନଙ୍କ ଦ୍ୱାରା ସଙ୍ଗଠିତ ଇହୁଦୀ ଗଣ ସଂହାରର ଶିକାର ହୋଇଥିବା ଓ ମୁମୂର୍ଷୁ, ଅର୍ଦ୍ଧ ମୃତକୁ ଗଦା କରିବା ସ୍ଥାନ ଓ ଶେଷ ପରୀକ୍ଷା ସ୍ଥଳ ।

ମାରୁସିଆ ପଚାରିଲା, ଏହା କେମିତି ହେବ ? ଇର୍କା କହିଲା,''ଅତି ସହଜ ! ଆମେ ଗୋଟାଏ ବ୍ଲକ୍‌ରେ ଦରକାର ବୋଲି କହି ସନ୍ଧ୍ୟାବେଳେ ଦୁହେଁ ଯିବା ରୋଷେଇ ଶାଳକୁ । ରାନ୍ଧୁଣିଆକୁ ସିଧା ଗୋଟାଏ ବ୍ଲକ୍ ନମ୍ବର ଦେଇଦେବି । ସେ ବ୍ଲକ୍‌ର କୌଣସି ଅସ୍ତିତ୍ୱ ନାହିଁ । ସେ ଝୋଳ ଢାଳିଦେବ ଟିଣରେ । ଆମେ ଦୁଇଜଣ ତୁମକୁ ଝରକା ବାଟେ ଟିଣ ବଢ଼ାଇ ଦେବୁ । ଝରକା ପାଖରେ ଆମର ବେଡ୍, ଅସୁବିଧା କ'ଣ ?''

''ଯଦି ଧରାପଡ଼ିଯଉ, କ'ଣ ହେବ ?'' କ୍ଵିଟା ପଚାରିଲା, ''ହେବ କ'ଣ ?'' ଖୁବ୍ ବେଶୀରେ ସେ ଡଙ୍କାରେ ପାହାରେ ଖାଇବା । ଆଉ କ'ଣ ହେବ ! ତଥାପି ଚେଷ୍ଟା କରାଯାଉ ।''

ସନ୍ଧ୍ୟାରେ ଇର୍କା ଓ ମାରୁସିଆ ରୋଷେଇ ଶାଳକୁ ଗଲେ । ମୁଁ ଓ କ୍ଵିଟା ଝରକା ପାଖରେ ଅନେଇ ବସିଲୁ । ସେ ଦି' ଜଣକୁ ଅନେଇ ଅନେଇ ଆମେ ପ୍ରାୟ ମଟକା ମାରିଗଲୁ । କେତେବେଳେକେ ଆମେ ଦେଖିବାକୁ ପାଇଲୁ ଯେ ସେମାନେ ଗୋଟାଏ ବଡ଼ ଥର୍ମୋସ୍‌କୁ ଟେକି ଟେକି ଆଣୁଛନ୍ତି । ସେମାନେ ଆମ ଆଡ଼କୁ ଛୁଟିଲେ ଏବଂ ଅଳ୍ପ ସମୟ ମଧ୍ୟରେ କମ୍ବଳ ଘୋଡ଼ା ହୋଇଥିବା ଗୋଟିଏ ଥର୍ମୋସ୍ ଆମ ବେଡ୍ ଉପରେ ଥୁଆ ହୋଇଗଲା । ସେ ଅସରନ୍ତି ଖାଦ୍ୟ ଖାଇବାକୁ ଆମକୁ ରାତ୍ରି ଭୋଜନ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଲା । ଯେପରିକି ଆମେ ଅଯଥା ଅନ୍ୟ କାହାର ଦୃଷ୍ଟି ଆକର୍ଷଣ ନ କରୁ । ରାତ୍ରି ଭୋଜନ ଆରମ୍ଭ ହୋଇଗଲା । ଝୋଳ ନୁହେଁ, ବାର୍ଲି ତିଆରି ସେହି ପାଏସ୍‌କୁ ପ୍ଲେଟ୍‌ରେ ଢାଳି ଅସରନ୍ତି ଖାଇବା ଚାଲିଲା ଆମର ।

ଇର୍କା ପଚାରିଲା, ''ତୁ ଏମିତି କେତେ ବେଳ ଯାଏ ଖାଇବୁ ?'' କହିପାରିବି ନାହିଁ, ଉତ୍ତର ଦେଲି ।

କ୍ଵିଟା କହିଲା, ''ଆମେ ଏସବୁ ପାଏସ୍ ଖାଇ ଶେଷ କରିପାରିବା ବୋଲି ଆଦୌ ଆଶା କରିପାରୁ ନାହିଁ । ଭାବୁଛି ଅବଶିଷ୍ଟାଂଶ ଅନ୍ୟ କାହାକୁ ଦେଇଦେବା ।'' ଅନ୍ୟମାନେ କହିଲେ, ''ସେ ବୁଦ୍ଧି କରନା, ସମସ୍ତଙ୍କୁ ତ ଦେଇ ହେବ ନାହିଁ । ସେମାନେ କହିବେ, ଆମେ ଚୋରି କରୁଛୁ, ହୁଏତ ଆମକୁ ପିଟିବେ ନଚେତ୍ ୱାର୍ଡେନ୍ ପାଖରେ ଫେରାଦ ହେବେ । ଆମେ ରାତିରେ ଯାହା ଖାଇଥିଲୁ, ସକାଳ ହେବା ପୂର୍ବରୁ ଥର୍ମୋସ୍‌କୁ ରାସ୍ତାରେ ଫୋପାଡ଼ି ଦେଲୁ ।

ର୍ୟାଭେନ୍ସ ବ୍ରୁକ୍‌ରୁ ଦୈନିକ ପରିବହନ ଗାଡ଼ି ଛାଡୁଥିଲା । ଆମ ପାଳି ମଧ୍ୟ ଖୁବ୍ ଶୀଘ୍ର ପଡ଼ିବ ବୋଲି ଆମେ ଜାଣିଥିଲୁ ।

''ତମକୁ ଯଦି ଆଉ କେଉଁ ଆଡ଼କୁ ଯିବାକୁ ନ ପଡ଼ନ୍ତା ଭାରି ଭଲ ହୁଅନ୍ତା । ଥରେ ମାରୁସିଆ ମୋତେ କହିଲା, ନ ଯିବାଟା କେମିତି 'ଯୋଗାଡ଼' ହୁଅନ୍ତା ? ମୋତେ ତ

କିଛି ହେଲେ କାମ କରିବାକୁ ପଡ଼ିବ । ମୋ' ଦେହଟା ଭଲ ନଥିଲା । ମୋ ପାଦରେ ଘା' ହୋଇଥିଲା । ତାହା ସବୁ ବରଫାକ୍ରାନ୍ତ (ସ୍ନୋ ବାଇଟ୍) ହୋଇ ସୃଷ୍ଟି ହୋଇଥିଲା ଏବଂ ପଦଯାତ୍ରା କାଳରେ ଘଟିଥିଲା । ପରିବହନ ଗାଡ଼ିରେ ଯାତ୍ରା କରିବା ବଡ଼ ଯନ୍ତ୍ରଣା ଦାୟକ ଥିଲା । କେବଳ ସ୍ୱାସ୍ଥ୍ୟବାନ ଲୋକ ହିଁ ସେଥିରେ ତିଷ୍ଠିବ । ମୁଁ ପରିବହନ ଗାଡ଼ିକୁ ଖୁବ୍ ଭୟ କରୁଥିଲି । କିନ୍ତୁ ଲୁଚିବାର ସ୍ଥାନ କେଉଁଠାରେ ହେଲେ ନଥିଲା ।

ସେଦିନ ସନ୍ଧ୍ୟାରେ ମାରୁସିଆ ବାହାରେ ବୁଲି ବୁଲି ଭାରି ଖୁସି ମନରେ ଫେରିଲା । ପ୍ରଥମ କଥା ହେଲା ମୋ ପାଇଁ ସେ କାମଟିଏ ଯୋଗାଡ଼ କରି ଆସିଥିଲା । କ୍ୟାମ୍ପରେ ଚିରା ଲୁଗା ସିଲେଇ କରିବା କାମ । ତେଣୁ ଭାବିଲି ଯେ ମୁଁ ଯୁଦ୍ଧ ସମୟଟା ସେହିଠାରେ କଟେଇ ଦେଇ ପାରିବି । ରାଭେନ୍ସ ବ୍ରୁକ୍ ବନ୍ଦୀଶାଳାରେ କୌଣସି ଫ୍ରେଞ୍ଚ୍ ଝିଅ ବା ସୋନିଆ କିମ୍ୱା ଇଭାମାନେ ନଥିଲେ । ସେମାନେ ଆଉସ୍‌ଭିଚ୍ଚ୍‌ରେ ରହିଯାଇଥିଲେ । ମାରୁସିଆ ଦ୍ୱିତୀୟ ସୁସମ୍ବାଦଟି ଦେଲେ ଯେ ଓର୍ଲିଠାରୁ ଶୁଣିଲା ଆଉସ୍‌ଭିଚ୍ଚ୍ ବନ୍ଦୀ ଶିବିର ନାତ୍‌ସୀମାନଙ୍କ ନିୟନ୍ତ୍ରଣରୁ ମୁକ୍ତ ହୋଇଯାଇଛି ଏବଂ ତାହାକୁ ସୋଭିଏତ୍ ସୈନ୍ୟମାନେ ଦଖଲ କରି ଅଛନ୍ତି । ନାତ୍‌ସୀମାନେ ତାକୁ ଧ୍ୱଂସ କରିଦେବାକୁ ସମୟ ପାଇ ନଥିଲେ । ଆମେ ସେହି ସୁସମ୍ବାଦରେ ଏକ ସଙ୍ଗେ କହି ଉଠିଲୁ ହୁରା, ହୁରା (Hurah, hurah) ଆମ ସମସ୍ତଙ୍କ ଆଖିରୁ ଲୁହ ଝରି ପଡ଼ିଲା ।

ଆହାରେ ଆମେ କାହିଁକି ସେଠାରୁ ପଳାଇ ଆସିଲୁ ! ଆଉସ୍‌ଭିଚ୍ଚ୍‌ରେ ଅଟକି ଗଲୁ ନାହିଁ କାହିଁକି ? ଆମେ ମରିବାକୁ ଡରି ଯାଇଥିଲୁ । କିନ୍ତୁ ପଳାଇ ଆସିବା ବେଳେ ବାଟ ସାରା ଆମ ଜୀବନ ସୂତା ଖିଅକରେ ଝୁଲୁଥିଲା । ଆଗକୁ ଆମ ପାଇଁ କ'ଣ ଅଛି କିଏ କହିବ ? କେବଳ ଯନ୍ତ୍ରଣା ଓ ମୃତ୍ୟୁ ଭୟରେ ଜର୍ଜରିତ । କେତେ ପଳାୟନ ଆମକୁ ସହିବାକୁ ପଡ଼ିବ ? ପଳାୟନରେ ରାଜି ହୋଇଯିବା ଆମ ପକ୍ଷରେ ଗୁରୁତର ଭୁଲ ହୋଇଥିଲା । ସେଥିପାଇଁ ଆମକୁ ସେ କଷ୍ଟ ଭୋଗିବାକୁ ପଡୁଥିଲା ।

ତା' ପରଦିନ ସକାଳେ ମୁଁ କାମକୁ ଗଲି । କର୍ମଶାଳା ଗୋଟାଏ ବିରାଟ ହଲ । ମଝିରେ ଗୋଟାଏ ବଡ଼ ଟେବୁଲ୍ । ତା' ଉପରେ ଜମା ହୋଇଥାଏ ଗଦାଏ ଚିରାଲୁଗା । ଟେବୁଲ୍ ପାଖରେ କେତେକ ମହିଳା ଛୁଞ୍ଚି ସୂତା ଧରି କାର୍ଯ୍ୟରତ । କାର୍ଯ୍ୟଟି ଖୁବ୍ ସହଜ । ମାରୁସିଆ ମୋ' ପାଇଁ ସେତକ ଯୋଗାଡ଼ କରିଦେଇଥିଲା । କାର୍ଯ୍ୟାଳୟର କାପୋ (ମୁଖ୍ୟ କର୍ମୀ) ମୋତେ ଆନ୍ତରିକ ସ୍ୱାଗତ ଜଣାଇଲା । ଯାହା ହେଉ ଶେଷ ସୁଦ୍ଧା ମୁଁ କାର୍ଯ୍ୟଟି ପାଇ ଯାଇଥିଲି ଏବଂ ଆଶା କରୁଥିଲି ଯେ ଯୁଦ୍ଧ ଶେଷ ପର୍ଯ୍ୟନ୍ତ ମୁଁ ହୁଏତ ସେଠାରେ ତିଷ୍ଠି ଯିବି । ସନ୍ଧ୍ୟାବେଳେ ଅନ୍ୟ ଝିଅମାନେ ମୋତେ ଜଣାଇଲେ ଯେ ସେମାନେ ପରିବହନ ଗାଡ଼ିରେ ଯିବାକୁ ନାମ ଲେଖାଇଛନ୍ତି । ସେମାନେ ସେହି ଉପାୟରେ ଅନ୍ତତଃ

ଗୋଟିଏ ଜାଗାରେ ଏକତ୍ର ରହିପାରିବେ । ପରଦିନ ହାଜିରା ପରେ ସେମାନେ ବିଦାୟ ନେଇ ଚାଲିଗଲେ । ଅଲଗା ଅଲଗା ରହିବା ସେମାନଙ୍କ ପକ୍ଷରେ ସମ୍ଭବ ନଥିଲା । ମୁଁ ଏକୁଟିଆ ରହିଗଲି ।

ରାତିରେ କମ୍ବଳ ଭିତରେ ଶୋଇ ଭୀଷଣ କାନ୍ଦିଲି । ମୁଁ ସେଭଳି ଏକା ରହିବାରେ ଅଭ୍ୟସ୍ତ ନଥିଲି । ଶିବିରର ମଝି ପାର୍ଟିସନ୍ କାନ୍ଥ ଏତେ ପତଳା ଥିଲା ଯେ ଏ ଘରର ସେ ଘରର ସମସ୍ତେ ଦିଶୁଥିଲେ । ତେଣୁ ମୋତେ ଏକୁଟିଆ ଲାଗୁ ନଥିଲା । କାରଣ ସେ ପଟରେ ରହୁଥିବା ଝିଅଗୁଡ଼ିକ ପାଖରେ ଥିବା ଭଳି ଲାଗନ୍ତି । ସେମାନଙ୍କ ପରିବର୍ତ୍ତେ ଅପରିଚିତ ମହିଳାଗୁଡ଼ିକଙ୍କ ସାଙ୍ଗରେ ମୁଁ ଅଧିକ ଦିନ ତିଷ୍ଠି ପାରିବି ବୋଲି ଭାବି ପାରୁନଥିଲି । ତା' ପରଦିନ ହାଜିରା ପରେ ମୁଁ କର୍ମଶାଳାକୁ ଗଲି । ସନ୍ଧ୍ୟା ପର୍ଯ୍ୟନ୍ତ ଫେରିଲି ନାହିଁ । ର୍ୟାଭନ୍ସ ବ୍ରୁକ୍‌ରେ ଦିନ ଗୁଡ଼ିକ ସେହିଭଳି ଗଡ଼ି ଚାଲିଲା । ମୁଁ ସେଠାରେ ତିନି ସପ୍ତାହ ରହିଲି । ତା' ପରେ ଦିନେ ଆମେ କାମରେ ବସିବା ସଙ୍ଗେ ସଙ୍ଗେ ହଠାତ୍ ନାତ୍‌ସୀ ଆତଙ୍କବାଦୀ (SS Man) ଝଡ଼ ବେଗରେ ସେଠାରେ ପହଞ୍ଚିଲା । ତା ହାତରେ ଗୋଟାଏ ଚାବୁକ୍ ଥିଲା ।

''ସିଲେଇ କାମ ସରିଗଲା । ଏଠୁ ବାହାର'' ସେ ଚିତ୍କାର କଲା । ଆମେ କ'ଣ କରିବୁ କିଛି ସ୍ଥିର କରି ନପାରି ଛିଡ଼ା ହୋଇ ରହିଥିବାରୁ ଚାବୁକ୍‌ରେ ସେ ଆମ ମୁଣ୍ଡକୁ ପିଟିବାରେ ଲାଗିଲା । ପ୍ରାଣ ବିକଳରେ ସେଠାରୁ ପଳାଇ ଆସିଲୁ । ମୁଁ ଦି' ପାଦ ଆଗକୁ ଯାଇ ରାସ୍ତା ମଝିରେ ଛିଡ଼ା ହୋଇ ରହିଲି । ''କ'ଣ କରିବି, କିଛି ସ୍ଥିର କରିପାରୁ ନଥିଲି । କୁଆଡ଼କୁ ଯିବି ? କେଉଁଠି ଲୁଚିବି ?'' ମୁଁ ଭଲ ଭାବରେ ଜାଣିଥିଲି ଯେ ଶିବିରରେ ପହଞ୍ଚିବା ସଙ୍ଗେ ସଙ୍ଗେ ସେମାନେ ଗାଡ଼ିରେ ଯିବା ପାଇଁ ଘଉଡ଼ାଇବା ଆରମ୍ଭ କରିଦେବେ । ମୁଁ କ'ଣ କରିବି, କୁଆଡ଼େ ଯିବି ସେହି କଥା ଭାବି ହୃଦୟଟା ଯେମିତି ଭାଙ୍ଗି ପଡ଼ିଲା ଭଳି ଲାଗିଲା ।

ର୍ୟାଭେନ୍ସ ବ୍ରୁକ୍‌ରେ କାର୍ଯ୍ୟ କରୁଥିବା ଡକ୍ଟର ଫ୍ରମ୍‌କାଙ୍କ କଥା ମନେ ପଡ଼ିଗଲା । ସେ ଆଉସ୍‌ଭିତ୍‌ଜ୍‌ରେ ଆମ ସହ ବହୁତ ଦିନ ରହିଥିଲେ । ଆମେ ଆଉସ୍‌ଭିତ୍‌ଜ୍ ପରିତ୍ୟାଗ କରିବା ପୂର୍ବରୁ ତାଙ୍କୁ ର୍ୟାଭେନ୍ସ ବ୍ରୁକ୍ ପଠାଇଯାଇଥିଲା ।

ଡାକ୍ତର ଫ୍ରମ୍‌କା ଜଣେ ଅତ୍ୟନ୍ତ ଆଦର୍ଶ ସ୍ଥାନୀୟା ମହିଳା ଡାକ୍ତର ଥିଲେ । ମହନୀୟ ଗୁଣ ଓ ସାଧୁତା ପାଇଁ ତାଙ୍କର ବହୁତ ସୁନାମ ଥିଲା । ''ତାଙ୍କୁ ଖୋଜିବାକୁ ହେବ, ସେ ମୋତେ ନିଶ୍ଚୟ ସାହାଯ୍ୟ କରିବେ ।'' ମୁଁ ତାଙ୍କୁ ବ୍ଲକ୍‌ରୁ ବ୍ଲକ୍ ଖୋଜିବାକୁ ଲାଗିଲି ଏବଂ ଯାହାକୁ ଭେଟିଲି ତାଙ୍କୁ ଫ୍ରମ୍‌କାଙ୍କ ବିଷୟରେ ପଚାରୁଥିଲି । ଯାହା ହେଉ ଶେଷରେ ତାଙ୍କର ସମ୍ବାଦ ମିଳିଲା ।

କିନ୍ତୁ ତାଙ୍କ ଗେଟ୍ ପାଖରେ ଓ୍ୱାର୍ଡମ୍ୟାନ୍ ମୋତେ ଅଟକାଇ ଦେଇ କହିଲା, ''ଫ୍ଲମ୍‌କା ଅସୁସ୍ଥ, ତାଙ୍କୁ ନିମୋନିଆ, ସେ ଶଯ୍ୟାଶାୟୀ, ତୁମେ ବରଂ ଝରକା ପାଖକୁ ଯାଅ । ମୁଁ ତାଙ୍କୁ ସେଠାକୁ ପଠାଇ ଦେଉଛି ।''

ମୁଁ ଝରକା ପାଖରେ ଛିଡ଼ା ହେଲି ଏବଂ ଭାବିଲି ଯେ, ମୋ'ର ଶେଷ ଭରସା କୁଟା ଖିଅ ମଧ୍ୟ ବୁଡ଼ି ବୁଡ଼ି ଯାଉଛି । ଫ୍ଲମ୍‌କା ଆସିଲେ । ତାଙ୍କ ଚେହେରା ମଧ୍ୟ ବହୁତ ଖରାପ ହୋଇ ଯାଇଥିଲା । ମୁଁ ତାଙ୍କୁ ସଂକ୍ଷେପରେ ମୋ ମନର ସବୁକଥା ଶୁଣାଇ ଦେଲି ।

ସେ କହିଲେ, ''ମୁଁ ତ ଭୀଷଣ ଅସୁସ୍ଥ । ଗତ ଦୁଇ ସପ୍ତାହ ହେବ ବିଛଣାରେ । ତୁମକୁ ହସ୍‌ପିଟାଲ୍‌ରେ ରଖିଦେବା ମଧ୍ୟ ସମ୍ଭବ ନୁହେଁ । ତୁମ ପାଇଁ କ'ଣ କରି ପାରିବି, ଭାବିପାରୁ ନାହିଁ ।''

ମୁଁ ହତାଶ ହୋଇ ଚାରିଆଡ଼କୁ ଅନେଇଲି । କେଉଁଠାରେ ଟିକେ ଲୁଚିଯିବାକୁ ସ୍ଥାନ ପାଇବି କି ? ବ୍ଲକ୍‌କୁ ଫେରିବା ପାଇଁ ସାହସ କରିପାରିଲି ନାହିଁ । କାରଣ ସେଠି ଅଧିକ ସମୟ ରହିବା ମଧ୍ୟ ସମ୍ଭବ ହେବ ନାହିଁ । ଡାକ୍ତର ଫ୍ଲମ୍‌କା ମୋ ପାଇଁ ଭାରି ଚିନ୍ତା କରୁଥିଲେ । କିନ୍ତୁ ତାଙ୍କ କଥା ମୋତେ କୁହୁଡ଼ି ଭିତରେ ଆସିବା ଶବ୍ଦ ଭଳି କ୍ଷୀଣ ଶୁଭୁଥିଲା । ହଠାତ୍ ମୋ ମନ ଭିତରକୁ ଗୋଟାଏ ବିଚାର ଆସିବା ସଙ୍ଗେ ସଙ୍ଗେ ମୋ' ମନଟା ଖୁବ୍ ହାଲୁକା ଲାଗିଲା । ଯେପରିକି ଗୋଟାଏ ଟନ୍ ଓଜନର ବୋଝ ମୋ କାନ୍ଧରୁ ଖସି ପଡ଼ିଲା ।

''ମୁଁ କାହିଁକି ଏହି ପଚା ଦୁର୍ଗନ୍ଧ ଜୀବନ ପାଇଁ ଏତେ ଚିନ୍ତା କରୁଛି ? ମୋ' ପାଖରେ ଯଦି ଛୁଆଟାଏ ଥା'ନ୍ତା କିମ୍ବା ଅନ୍ତରଙ୍ଗ କେହିଥା'ନ୍ତେ; ମୋ ପକ୍ଷରେ ଏତେ ବ୍ୟସ୍ତ ବିବ୍ରତ ହେବାର କିଛି ମାନେ ହୁଅନ୍ତା । ମୁଁ ତ ଏକା, ଯାହା ହେବାର ଥିବ, ତାହା ଘଟିବ । ଭାଗ୍ୟରେ କ'ଣ ଅଛି ଦେଖାଯାଉ । କ'ଣ ବା ଆଉ ହେବ ?'' ସେତିକି ଭାବିବା ପରେ ମୋ'ର ମନ କେତେ ହାଲୁକା ହୋଇଯାଇଥିଲା, ତାହା ଏବେବି ମନେ ପଡୁଛି ।

ଦ୍ୱନ୍ଦ୍ୱ ମୁକ୍ତ ହୋଇ ମୁଁ ଯେପରି ମୁକ୍ତ ଆକାଶର ବିହଙ୍ଗ ଭଳି ଉଡ଼ି ବୁଲିବାକୁ ଲାଗିଲି ।

''ହଉ ଡାକ୍ତର ଫ୍ଲମକା ନମସ୍କାର ।'' ଏତିକି କହି ହସି ହସି ଚାଲିଲି ।

''ରହ, ରହରେ ପାଗଳି ! କୁଆଡ଼େ ଯାଉଛୁ ? ତୁ କ'ଣ ଠିକ୍ କଲୁ ମୋତେ କହ ଟିକିଏ ।'' ଫ୍ଲମ୍‌କା ମୋ ପାଇଁ ବ୍ୟସ୍ତ ହୋଇ ପଡ଼ିଲେ ।

ମୁଁ ତାଙ୍କୁ କିଛି ନ କହି କେବଳ ହାତ ହଲାଇ ବିଦାୟ ନେଲି । ଜୀବନ ସଂଗ୍ରାମ ମୋତେ ବିରକ୍ତ କରିଦେଇଥିଲା । ମୁଁ ବ୍ଲକ୍‌କୁ ଫେରି ଆସିଲି ଏବଂ ଘଣ୍ଟାଏ ପରେ ମୁଁ ପରିବହନ ଗାଡ଼ିରେ । ମୋତେ ଫାଳେ ରୁଟି ଓ ଖଣ୍ଡେ ଲହୁଣୀ ମିଳିଥିଲା । ତା' ପରେ ଆଉ କ'ଣ ମିଳିବ ସେ ବିଷୟରେ ମୋର ପରବାୟ ନଥିଲା ।

■■■

- ୩୭ -

# ମିଶର ଦେଶର ପ୍ଲେଗ୍

**ଅଣ୍ଡରଗ୍ରାଉଣ୍ଡ୍ ହାଙ୍ଗର** (ଭୂମିଗତ ବିମାନଶାଳା) ସହ ତାହା ଥିଲା ଏକ ବିରାଟ ବିମାନ ବନ୍ଦର । ତାହାର ଅନତି ଦୂରରେ ଅବସ୍ଥିତ ଥିଲା ବହୁତ ଗୁଡ଼ିଏ ବାରାକ୍ ଘର । ଏକଦା ବହୁସଂଖ୍ୟକ ଫରାସୀ ଶ୍ରମିକ ବେଠି ଖଟିବାକୁ ସେଠାକୁ ଅଣାଯାଇଥିଲେ । ସେମାନଙ୍କ ଉପରେ ରକ୍ଷଣାବେକ୍ଷଣ ଦାୟିତ୍ୱ ମଧ ଥିଲା । କିନ୍ତୁ ସେମାନେ କାଳେ କେତେବେଳେ ଅନ୍ତର୍ଘାତୀ କାର୍ଯ୍ୟ କରିବେ, ସେହି ଆଶଙ୍କାରେ ସେମାନଙ୍କୁ ଜର୍ମାନ୍ ହିଟଲର୍ ମିଲିଟାରୀ ଅନ୍ୟତ୍ର ନେଇ ଯାଇଥିଲେ । ତେଣୁ ବର୍ଷେ କାଳ ବାରାକ୍ ଗୁଡ଼ିକ ଖାଲି ପଡ଼ିଥିଲା । ରାଭେନ୍ସ ବ୍ରୁକ୍‌ରୁ ଆସିଥିବା ପରିବହନ ଗାଡ଼ିଗୁଡ଼ିକ ଆମକୁ ସେଠାକୁ ନେଇ ଆସିଥିଲା । ୧୯୪୫ ଫେବୃଆରୀ ମାସର ମଧ ଭାଗରେ ଆମ୍ଭେମାନେ ଯେତେବେଳେ ସେଠାରେ ପହଞ୍ଚିଲୁ କେବଳ ବାରାକ୍‌ର କର୍ମଚାରୀ ନୁହଁନ୍ତି; ଆଉସ୍‌ଭିଟ୍‌ଜ୍ କ୍ୟାମ୍ପରୁ ଆସିଥିବା କର୍ମକର୍ତ୍ତାମାନେ ମଧ ଆମକୁ ସ୍ୱାଗତ ଜଣାଇଲେ । କିନ୍ତୁ ସେମାନେ ଭାରି ରାଗିବା ଭଳି ଦିଶୁଥିଲେ । ଆଉସ୍‌ଭିଟ୍‌ଜ୍‌ର ସେ ୱାର୍ଡେନ୍, ସର୍ଦ୍ଦାର ଓ କିରାଣୀ ଦଳଙ୍କୁ ମୁଁ ପ୍ରଥମେ ଯେତେବେଳେ ଦେଖିଲି, ଭାବିଲି ବୋଧହୁଏ ମୋର ଅତ୍ୟନ୍ତ କ୍ଳାନ୍ତ-ଶ୍ରାନ୍ତ ଦେହ ଓ ମନରେ କିଛି ପ୍ରହେଳିକା ବା ସ୍ୱପ୍ନ ଦେଖୁଥିଲି; କିନ୍ତୁ ତାହା ନୁହେଁ । ସେମାନେ ସେହି ସୁବେଶିତ, ସୁଗଠିତ ଓ ପ୍ରାଚୁର୍ଯ୍ୟରେ ବଢ଼ିଥିବା ଆଉସ୍‌ଭିଟ୍‌ଜ୍‌ର ଆକର୍ଷଣୀୟ କର୍ମକର୍ତ୍ତା ଗଣ । ଆମ ପ୍ରତି କେବଳ ଘୃଣା ବ୍ୟଞ୍ଜକ ନୁହେଁ, ରୀତିମତ କ୍ରୋଧାନ୍ୱିତ ସେମାନଙ୍କ ମୁହଁର ମୁଦ୍ରା ।

କେତେଦିନ ପରେ ସେମାନଙ୍କ ଭିତରୁ ଜଣେ ମୋତେ କହିଲା, ''ତୁମେ ବିଶ୍ୱାସ କର, ତୁମେମାନେ ଏଠାକୁ ଆସିବାର ମାତ୍ର ସପ୍ତାହକ ପୂର୍ବରୁ ଆମକୁ ଏଠାକୁ ଅଣାଯାଇଥିଲା । ଆମେ ବ୍ୟାରାକ୍ ସଫା ସୁତୁରା କଲୁ । ଏକ ଆଦର୍ଶ କ୍ୟାମ୍ପ୍ କରିଦେଲୁ ଏହାକୁ । ତା' ପରଠାରୁ ସେମାନେ ଯାଇଛନ୍ତି ଏବଂ ଏଠାକୁ ନେଇ ଆସୁଛନ୍ତି ସବୁ ରୁଗ୍ଣା, ବୃଦ୍ଧା ଓ ଦେହରୁ ଦୁର୍ଗନ୍ଧ ବାହାରୁଥିବା ମହିଳାମାନଙ୍କୁ । ଏଭଳି ଗୋଟାଏ ଆଦର୍ଶ କ୍ୟାମ୍ପ୍‌କୁ ସେମାନଙ୍କୁ ଆଣିବା ଆଦୌ ଠିକ୍ ନୁହେଁ । ଜର୍ମାନ୍‌ମାନେ ଏହି ରଷ୍ଟ୍‌ରେ ଏହାକୁ ଏକ ଆଦର୍ଶ କ୍ୟାମ୍ପ୍ କରିବାକୁ ଚାହାନ୍ତି ।'' ଆଉସ୍‌ଭିଟ୍‌ଜ୍‌ର ସେହି ପୁରାତନ କର୍ମକର୍ତ୍ତାମାନେ ନିଜ ନିଜ ପାଇଁ ସୁନ୍ଦର ଓ ଆରାମ୍‌ଦାୟକ କୋଠରୀ ଗୁଡ଼ିକ ବାଛି ନେଇଥିଲେ ।

ବ୍ୟାରାକ୍‌ଗୁଡ଼ିକ ତାହାର ଗତାନୁଗତିକ ଶୈଳୀରେ ତିଆରି । ତାହାର ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ଏକ ସଙ୍କୀର୍ଣ୍ଣ କରିଡର୍ ଧାବିତ । ତାହାର ଉଭୟ ପାର୍ଶ୍ୱରେ କୋଠରୀ

ଗୁଡ଼ିକ ଅବସ୍ଥିତ । କରିଡରର ଶେଷଭାଗରେ ସ୍ନାନାଗାର ଓ ଶୌଚାଳୟ ଅବସ୍ଥିତ । ପ୍ରଧାନ ହଲ୍‌ରେ ୨୪ ଗୋଟି ତିନିଥାକିଆ ଡେକ୍‌ର – ପ୍ରତିପାର୍ଶ୍ୱରେ ବାରଗୋଟି ଲେଖା । କରିଡର ମଝିରେ ପଡ଼ିଥିଲା ଗୋଟିଏ ଟେବୁଲ୍ ଓ ଦୁଇଗୋଟି ବେଞ୍ଚ– ଦୁଇଜଣ ମହିଳାଙ୍କର ଶଯ୍ୟା । ହଲ୍‌ରେ ଯଥେଷ୍ଟ ସଂଖ୍ୟକ ଝରକା । କିନ୍ତୁ ଡେକର୍ ଗୁଡ଼ିକ ସେଗୁଡ଼ିକୁ ପ୍ରାୟ ଆବୃତ କରି ରହି ଥିବାରୁ ତାହା ସର୍ବଦା ବନ୍ଦ ଥାଏ । ତେଣୁ ସେ ବାଟରେ ଆଲୋକ ଆସିବା ଅସମ୍ଭବ । ବାସ୍ତରି ଜଣ ଶୁଅନ୍ତି ସେହି ଅତିରିକ୍ତ ଭିଡ଼ ରୁମ୍ ଭିତରେ । ତେଣୁ ସେଭଳି ସ୍ଥାନରୁ ଅତ୍ୟନ୍ତ ଦୁର୍ଗନ୍ଧ ବାହାରିବା ଓ ଅଳ୍ପ ଦିନ ଭିତରେ ଆମ ଉପରେ ପ୍ଲେଗ୍ ରୋଗର ଉକୁଣି ଆକ୍ରମଣ କରିବା ବିସ୍ମୟ ଜନକ କ'ଣ ?

ରୋଷ୍କ୍‌ରେ ମୁଁ ବୁଝିପାରିଲି ଯେ ଭଗବାନ ମିଶର୍‌ବାସୀଙ୍କ ପାଇଁ ଯେଉଁ ପ୍ଲେଗ୍ ରୋଗ ପଠାଇଥିଲେ ଉକୁଣୀ ସେମାନଙ୍କ ମଧ୍ୟରୁ ଅନ୍ୟତମ । ଏହା ଏଭଳି ଏକ କୀଟ ଯାହାର ଆକ୍ରମଣରୁ ମୁକ୍ତ ହେବା ଆମ ପକ୍ଷରେ ଅସମ୍ଭବ ଥିଲା । ସେହି ଉକୁଣୀ ଗୁଡ଼ିକ ଧଳା ବଡ଼ ବଡ଼ ଏବଂ ପିଠିରେ କଳା ଛକି ଚିହ୍ନ । ଦିନରାତି ସେମାନେ ଆମକୁ ଶୋଷୁଥିଲେ । ତାହା ଏଭଳି ଏକ ଶତ୍ରୁ ଯାହା ବିରୁଦ୍ଧରେ ସବୁବେଳେ ଲଢ଼ିବାକୁ ହେଉଥିଲା । ଆମେ ତାକୁ ଖୋଜି ବାହାର କରୁଥିଲୁ ଏବଂ ମାରୁଥିଲୁ । ରାତିରେ ବାଥରୁମ୍‌କୁ ଗଲେ, ସେଠାରେ ଦେଖୁଥିଲି ସେହି ଫିକା ଆଲୁଅରେ ଛିଡ଼ା ହୋଇ ମହିଳାମାନେ ସେମାନଙ୍କ ପୋଷାକରେ ଲାଗିଥିବା କୀଟମାନଙ୍କୁ ଖୋଜି ଖୋଜି ମାରୁଥିଲେ । ଆଲୁଅ ପାଖରୁ ଜଣେ ଚାଲି ଆସିଲେ ଆଉ ଜଣେ ସେହି ସ୍ଥାନ ଅଧିକାର କରୁଥିଲେ ଏବଂ ଉକୁଣୀ ମାରୁଥିଲେ ।

ଜଣେ ବୟସ୍କା ମହିଳା ମୋତେ କହିଲେ, ''ଏଥିରେ ଲଜ୍ଜା କରିବାର କିଛି ନାହିଁ । ଏହା ନ କଲେ ଉକୁଣୀମାନେ ଆମକୁ ପୂରା ଖାଇଯିବେ ।''

ମୁଁ ଡରିଯାଇ କହିଲି, ''ଖାଇଯିବେ ମାନେ ?'' ହଁ ଖାଇଦେବେ । ସେ ଝିଅଟିକୁ ଯେମିତି ଖାଇଛନ୍ତି । ତା' ପରଦିନ ସକାଳେ ସେ ଝିଅଟିକୁ ମୁଁ ଦେଖିଲି । ଅର୍ଦ୍ଧ ଚେତନ ଓ ନିମ୍ନମୁଖୀ ହୋଇ ପଡ଼ିଥାଏ ସେ ଝିଅଟି ବିଛଣାରେ । ଦେହସାରା କାଛୁ କୁଣ୍ଡିଆ ଭର୍ତ୍ତି । ଦିନବେଳା ମଧ୍ୟ ସେ ବିଛଣା ଛାଡ଼ି ପାରେନା । ରୋଷ୍କ୍‌ରେ ଆଉସ୍‌ଭିଟ୍‌ଜ୍ ଭଳି ଅନ୍ତେବାସିନୀମାନେ ଏକତ୍ରିତ ହେବା ପାଇଁ କୌଣସି ସ୍ୱତନ୍ତ୍ର ସ୍ୱତନ୍ତ୍ର ସ୍ଥାନ ନଥିଲା । ସେଠାକାର ସମସ୍ତ ନିୟମ ରୋଷ୍କ୍‌ରେ ଅଚଳ ବିବେଚିତ ହେଉଥିଲା । ରୋଗୀମାନଙ୍କୁ ବ୍ଲକ୍‌ରେ ହିଁ ରହିବାକୁ ପଡୁଥିଲା । ଯୁବତୀ ଝିଅଟିର ଦେହ ତମାମ ପ୍ଲେଗ୍ ଉକୁଣୀମାନେ ଚରିଯାଉଥିବା ସତ୍ତ୍ୱେ ତାକୁ ସାରାଦିନ ବିଛଣାରେ ପଡ଼ିବାକୁ ହେଉଥିଲା । ସତକୁ ସତ ଉକୁଣୀମାନେ ତାକୁ ଜୀଅନ୍ତା ଖାଇ ଯାଉଥିଲେ । ସେ ସେମାନଙ୍କ ସହ ଲଢ଼ିବାକୁ ଅସମର୍ଥ ଥିଲା । ଆମେ ବା ତା' ପାଇଁ କ'ଣ କରି ପାରିବୁ ? ଶେଷରେ ସେ ମରିଗଲା ।

ଯଦିଓ ସେଠାରେ କାହାକୁ କାମ କରିବାକୁ ପଡୁ ନଥିଲା କେତେକ ମହିଳା ସାରାଦିନ ବ୍ଲକ୍ ସଫା କରିବା କାମରେ ଲାଗୁଥିଲେ । ମନେ ହେଉଥିଲା, ଏହି କ୍ୟାମ୍ପ୍ ଖୋଲା ଯାଇଥିଲା, ଯେପରିକି କ୍ୟାମ୍ପ୍ ଦାୟିତ୍ୱରେ ଥିବା ନାତ୍‌ସୀ ଆତଙ୍କବାଦୀମାନେ ସମ୍ମୁଖ ଯୁଦ୍ଧ କ୍ଷେତ୍ରକୁ ନଯିବା ପାଇଁ ଗୋଟାଏ ଆଳ ପାଇପାରିବେ । ଆମେ ସାରାଦିନ ବ୍ଲକ୍‌ରେ ବସି ରହୁଥିଲୁ ଏବଂ କେବଳ ଖାଇବା କଥା ହିଁ ଭାବୁଥିଲୁ । ଯୁଦ୍ଧ ଖୁବ୍ ଶୀଘ୍ର ଶେଷ ହେବାକୁ ଯାଉଥିବା କଥା ଆମେ ଜାଣିଥିଲୁ ଏବଂ ସ୍ୱାଧୀନତା ବା ମୁକ୍ତି କଥା ନଭାବି ଆମେ ଖାଦ୍ୟ କଥାହିଁ ଭାବୁଥିଲୁ । ରୋଷ୍ଟକ୍‌ରେ କ୍ଷୁଧାର ତାଡ଼ନା ଅଧିକ ତୀବ୍ର ଥିଲା । ସକାଳୁ ଆମକୁ କପେ ନାଲି କଫି ମିଳୁଥିଲା ଏବଂ ଦିନେ ଦିନେ ଚାମଚେ ଚିନି । ମଧ୍ୟାହ୍ନ ଭୋଜନ ବାରଟାରେ । ଆମେ ରୋଷେଇ ଘରକୁ ଆମ ବାସନ ନେଇ ଯାଉଥିଲୁ । ଆତଙ୍କବାଦୀମାନେ ରୋଷେଇ ଘର ବାହାରେ ଆମ ବାସନରେ ଝୋଳ ବାଢ଼ି ଦେଉଥିଲେ ଓ ଖଣ୍ଡେ ଭିଜା ରୁଟି । ଝୋଳର ଅର୍ଥ ଥିଲା ବିନା ଲୁଣରେ କିଛି ଆଳୁ ଜାତୀୟ ପରିବାର ଝୋଳ- ସବୁଦିନ ଏକା ପ୍ରକାରର, ତେଣୁ ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ଯେ କ୍ଷୁଧା ଆମମାନଙ୍କର ଅନ୍ତନାଡ଼ିକୁ ଏଭଳି ଚୋବାଇ ଖାଇଯାଏ ଯେ ଅହରହ ଖଣ୍ଡେ ରୁଟି ଛଡ଼ା ଅନ୍ୟ କୌଣସି କଥା ଆମର ମନେ ପଡ଼େ ନାହିଁ ।

ମୁଁ ଲୋଜର କ୍ଲାରା ନାମ୍ନୀ ଜଣେ ୧୮ ବର୍ଷ ବୟସ୍କା ତରୁଣୀ ସହ ଗୋଟିଏ ବେଡ୍‌ରେ ଶୋଉଥିଲି । ଆମେ ରୁଟି ଓ ଝୋଳ ଖାଇ ସାରିବା ପରେ ଯେତେବେଳେ କ୍ଷୁଧାର ତାଡ଼ନା କିଛି ସମୟ ପାଇଁ କମିଯାଏ, ଆମେ ସ୍ୱାଧୀନତା କଥା ଆଲୋଚନା କରୁ । ଆମ ପାଖକୁ କେଉଁ ରୂପରେ ସ୍ୱାଧୀନତା ଆସିବ, ତାହାର କଳ୍ପନା ଜଳ୍ପନା କରୁଥିଲୁ । ମୁଁ କଦାପି ଏଠାରୁ ପଳାଇବି ନାହିଁ ବୋଲି ସ୍ଥିର କରିଥିଲି । ସେମାନେ ବା ଆମକୁ କେଉଁଠାକୁ ନେବେ ? ଯଦି ଆମେ କ୍ଷୁଧାର ତାଡ଼ନାକୁ ସହି ନେଇ ପାରିବା ତେବେ ସ୍ୱାଧୀନତା ରଙ୍ଗୀନ ହୋଇ ଆମ ଆଗରେ ପ୍ରତିଭାତ ହେବ । ମୁଁ ଧୁଆ ଧୋଇ ହେବା ବେଳେ ମୋର ଅସ୍ଥି କଙ୍କାଳ ସାର ଶରୀରକୁ ଦେଖୁଥିଲି, ଆତଙ୍କରେ ମୋର ଦେହ ଶିହରି ଉଠୁଥିଲା । ଛାତି ଗୋଟାଏ ଚଟକା ପଟା ପରି ଓ ପାଦ ଦୁଇଟା ଦୁଇଟି କାଠି ଭଳି ଦିଶୁଥିଲା । ଯୁଦ୍ଧ ଯଦି ଶୀଘ୍ର ଶେଷ ନହୁଏ, ତେବେ ମୁଁ ଆଉ ବଞ୍ଚି ପାରିବି ବୋଲି ବିଶ୍ୱାସ କରିପାରୁ ନଥିଲି ଓ ସେଥିରେ ମୋ'ର ଆଦୌ ସନ୍ଦେହ ନଥିଲା ।

ଦିନେ ବ୍ଲକ୍‌ର ୱାର୍ଡେନ୍ ଆଦି ମୋ ସହ କଥା ହେଲା । ମୋ'ର କୋଟ ଖଣ୍ଡିକ ତାକୁ ବିକ୍ରୀ କରିଦେବାକୁ ମୋତେ ପ୍ରସ୍ତାବ ଦେଲା । ମୋର ଗୋଟିଏ ସୁନ୍ଦର କୋଟ ଥିଲା । ତାହାର କଲାର୍ ଲୋମରେ ତିଆରି ହୋଇ ଥିଲା । ଆଉସ୍‌ଭିତ୍‌ଜ୍‌ରେ ଜଣେ ବାନ୍ଧବୀ ମୋତେ ତାହା ଦେଇଥିଲା ।

ମୁଁ ବିସ୍ମିତ ହୋଇ ତାକୁ ପଚାରିଲି, ''କଅଣ କହିଲ ମୁଁ କୋଟ୍‌ଟି ତୁମକୁ ବିକ୍ରି କରିଦେବି ?''

ସେ ଉତ୍ତର ଦେଲା, ''ଏହା ତ ଅତି ସହଜ କଥା । ମୁଁ ତୁମକୁ ତା' ବଦଳରେ ଗୋଟେ ପୂରା ପାଉଁରୁଟି ଓ ଏକ ପ୍ୟାକେଟ୍ ଲହୁଣୀ ଦେବି ।

ମୁଁ ରାଗିଯାଇ ତାକୁ ଉତ୍ତର ଦେଲି ''ନା'' । ମୁଁ ଭାବିଲି, ଆମେ ତ ଭୋକିଲା, ସେ ରୁଟି ଚୋରି କରି ରଖିଛି । ଏତେ ରଖିଛି ଯେ ସେହି ଚୋରି ମାଲ ଦେଇ ମୋ କୋଟ୍‌ଟି ନେବାକୁ ବସିଛି ।

କିନ୍ତୁ ସେହି ମୁହୂର୍ତ୍ତରୁ, ଗୋଟାଏ ପୂରା ପାଉଁରୁଟି ଓ ପ୍ୟାକେଟ୍ ଲହୁଣୀର ଦୃଶ୍ୟକୁ ମନରୁ ପୋଛି ପାରିଲି ନାହିଁ । ଭାବିଲି ଯୁଦ୍ଧ ଯଦି ଆଗାମୀ ଶୀତଋତୁ ପୂର୍ବରୁ ଶେଷ ନହୁଏ, ମୁଁ ସେତେବେଳ ପର୍ଯ୍ୟନ୍ତ କଦାପି ବଞ୍ଚି ପାରିବି ନାହିଁ । ଏ କୋଟ୍ ରଖି କ'ଣ କରିବି ? ଏବେ ତ ଗରମ ବେଳ ଏଇଟା ମୋ' କାମରେ ଲାଗୁ ନାହିଁ । ଦିନେ ସକାଳେ ମୁଁ ତାକୁ କୋଟ୍‌ଟି ଦେଇ ପାଉଁରୁଟି ଓ ଲହୁଣୀ ନେଇ ଚାଲି ଆସିଲି । କ୍ଲାରା ଓ ମୁଁ ଆମ ମଧ୍ୟାହ୍ନ ଭୋଜନରେ ତାକୁ ଖାଇ ତୃପ୍ତ ହେଲୁ । ଆମ ଭୋଜି ପରେ କ୍ଲାରା କହିଲା, ''ଆମେ ଆଜି କୋଟ୍‌କୁ ଖାଇଦେଲେ ।''

ତାହା ଥିଲା ୧୯୪୫ ଏପ୍ରିଲ୍ ମାସ । ସାଇରନ୍ ଓ ଟିକେ ଦୂରରେ ପଡୁଥିବା ବୋମା ଶବ୍ଦରେ ଆମ ନିଦ ଭାଙ୍ଗି ଯାଉଥିଲା । ସାଇରନ୍ ଶବ୍ଦ ପାଖ ବିମାନ ବନ୍ଦରରୁ ଶୁଭୁଥିଲା । ବିମାନ ଶବ୍ଦ ମଧ୍ୟ ଶୁଭୁଥିଲା । ଆମେ ଆନନ୍ଦରେ ଅଭିଭୂତ ହୋଇ ଯାଉଥିଲୁ । ଉକୁଣୀ ଅଧ୍ୟୁଷିତ ବିଛଣାରେ ପଡ଼ି ରହିଥିଲେ ମଧ୍ୟ ଆମେ ଥିଲୁ ବିଜୟୀ ଦଳରେ । ସେ ବିଷୟରେ ଆମେ ନିଃସନ୍ଦେହ ଥିଲୁ । ଏପ୍ରିଲ୍ ମଧ୍ୟ ଭାଗରେ ବିମାନ ବନ୍ଦରରେ ବୋମା ପଡ଼ିଲା ଏବଂ ହାଙ୍ଗର ଧ୍ୱସ୍ତ ବିଧ୍ୱସ୍ତ ହୋଇଗଲା । ସେଦିନ ପାଗ ଖୁବ୍ ସୁନ୍ଦର ଥିଲା ଓ ସର୍ବତ୍ର ଉଜ୍ଜ୍ୱଳ ଦିଶୁଥିଲା । ଆମେ ଗରମ ପାଣିକୁ ତଥାକଥିତ କଫି ବୋଲି ମନେ କରି ପିଇଦେଲୁ ଏବଂ ମଧ୍ୟାହ୍ନ ଭୋଜନକୁ ଅପେକ୍ଷା କଲୁ ।

ହଠାତ୍ ଗୋଟିଏ ରୂପେଲି ରଙ୍ଗର ଉଡ଼ାଜାହଜ ଆମ ବ୍ୟାରାକ୍ ଉପରେ ଉଡ଼ିବାର ଦେଖିଲୁ । ସେ ବ୍ଲକ୍ ଚାରିପଟେ ବାରମ୍ବାର ଚକ୍କର କାଟି ଚାଲିଗଲା । ଦେଖାଯାଉଥିଲା ଯେପରିକି ଆକାଶକୁ ଧଳା ରଙ୍ଗର ଛକି ଗୁଡ଼ିକ ଚେକର୍ ବୋର୍ଡ ଭଳି ଚିତ୍ରିତ କରିଦେଇଥିଲା । ତା' ପରେ ଆସିଲା ବୋମାବର୍ଷୀ ବିମାନ । ବିମାନର ଶବ୍ଦରେ ଥରିବାକୁ ଲାଗିଲା ବ୍ୟାରାକ୍ । ମାଟି କମ୍ପିଗଲା । ଚାରିଆଡ଼େ ପ୍ରବଳ ଆତଙ୍କ । ଆମେ ସବୁ ଚଟାଣରେ ଚିତ୍ ହୋଇ ପଡ଼ିଗଲୁ ।

''କେହି ଡରନା'' କହି ମୁଁ ମହିଳାମାନଙ୍କୁ ଅଭୟବାଣୀ ଶୁଣାଇଲି । କହିଲି,

'''ଆକାଶରେ ଯେଉଁ ଧଳାରଙ୍ଗର ଚିତ୍ର ଅଙ୍କିତ ହୋଇଗଲା, ସେଥିରୁ କ'ଣ କିଛି ବୁଝିଲ ନାହିଁ ? ସେମାନେ ବନ୍ଦୀ ଶିବିର ଉପରେ କଦାପି ବୋମା ପକାଇବେ ନାହିଁ ।''

ସାରାଦିନ ବୋମା ଫୁଟୁଥିଲା । ବୋମାବର୍ଷୀ ବିମାନଗୁଡ଼ିକ ଫେରିବା ବେଳେ ବିଂଛୁଡ଼ି ଦେଇ ଗଲେ ଲକ୍ଷ ଲକ୍ଷ ପ୍ରଚାର ପତ୍ର । ତାହା ଏତେ ସଂଖ୍ୟାରେ ପଡୁଥିଲା ଯେ ଯେମିତି ସୂର୍ଯ୍ୟ ମଧ୍ୟ କିଛି ସମୟ ଅଦୃଶ୍ୟ ହୋଇଗଲେ । କିନ୍ତୁ ନାତ୍‌ସୀ ଆତଙ୍କବାଦୀ ଓ କମାଡାଣ୍ଟମାନେ ଯେମିତି ପାଗଳ ହୋଇ କ୍ୟାମ୍ପରେ ଏପଟ ସେପଟ ଦୌଡ଼ିବାକୁ ଲାଗିଲେ ଓ ଆମକୁ ଧମକ ଦେଉଥିଲେ, ''ଖବରଦାର, କେହି ସେ ପ୍ରଚାର ପତ୍ର ଉଠାଅନା କିମ୍ବା ପଢ଼ନା । ପଢ଼ିଲେ ଗୁଳି କରିଦେବୁ'' କିନ୍ତୁ ପ୍ରଚାର ପତ୍ର ସଂଖ୍ୟା ଏତେ ଥିଲା ଯେ ସେମାନଙ୍କର ଧମକ ପୂରା ହାସ୍ୟାସ୍ପଦ ହୋଇଥିଲା । ପ୍ରଚାର ପତ୍ରରେ ଲେଖାଥିଲା, ''ଯୁଦ୍ଧ ଶେଷ ହେବାକୁ ଯାଉଛି । ତୁମମାନଙ୍କୁ ଯଥାଶୀଘ୍ର ମୁକ୍ତ କରାଯିବ ।'' ଜର୍ମାନ୍ ବିରୋଧୀ ଆମ ମିତ୍ରପକ୍ଷ କେଉଁଠାରେ ପହଞ୍ଚିଥିଲା, ତା'ର ମାନଚିତ୍ର ମଧ୍ୟ ପ୍ରଚାରପତ୍ରରେ ଦିଆଯାଇଥିଲା । ନାତ୍‌ସୀମାନେ ଆମକୁ ରୋଷ୍ଟକ୍‌ରୁ ଆଉ କୁଆଡ଼େ ବା ନେବେ ? ଆଉ କୌଣସି ଗନ୍ତବ୍ୟ ସ୍ଥଳ ନଥିଲା ।

ଆମମାନଙ୍କୁ ସେଦିନ ମଧ୍ୟାହ୍ନ ଭୋଜନ ମିଳିଲା ନାହିଁ । କିଏବା ସେଦିନ ଖାଇବାକୁ ଅନେଇଥିଲା ? ଆମେ କେବଳ ଖୋଜୁଥିଲୁ ଜର୍ମାନୀର ଏକ ମାନଚିତ୍ର; ତାହା ଥିଲା ରୋଷ୍ଟକ । ରୁଷିଆ, ଆମେରିକା ଓ ବ୍ରିଟିଶ୍ ସୈନ୍ୟ ଆମ ଆଡ଼କୁ ମାଡ଼ି ଆସୁଥିଲେ ।

■■■

– ୩୮ –

# ରକ୍ଷୀବିହୀନ ଯାତ୍ରା

''ତୁମେ ଜାଣିଛ ?'' ପ୍ରାତଃ ଭୋଜନ ପରେ ଆର ରୁମ୍‌ରୁ ଦୌଡ଼ି ଆସି ୱିର୍‌କା ଆମକୁ ପଚାରିଲା, ''ମୁଁ ତୁମମାନଙ୍କୁ ଏଭଳି ଏକ ଚମତ୍କାର ଖବର ଦେବି ଯେ ତୁମେମାନେ ଉତ୍ତେଜନାରେ ମୂର୍ଚ୍ଛା ହୋଇଯିବ ।'' ସେତେବେଳେ ମୁଁ ଗରମ ପାଣି ପିଉଥିଲି, ତାହା ମୋ' ଖାଲି ପେଟକୁ ପୂରା ଜଳାଇ ଦେଉଥିଲା । ଆମେ ତା' କଥାକୁ ଆଦୌ କାନ ଦେଲୁ ନାହିଁ । ୱିର୍‌କା ଗୋଟେ ଭାରି ଖୁସ୍ ମିଜାଜ୍ ୟୁକ୍ରେନୀୟ ତରୁଣୀ । ବଡ଼ ମଜାଦାର ନବଜିଆ ତାର ପ୍ରକୃତି । ସେ ଆମକୁ ଚିଡ଼ାଉଥିଲା, ଡରାଉଥିଲା ଆଉ ବେଳେବେଳେ ଅସମ୍ଭବ ଖବର ସବୁ ଦେଇ ଦ୍ୱନ୍ଦ୍ୱରେ ପକାଉଥିଲା ।

ସେ ପୁଣି କହିଲା, ''ତୁମେମାନେ ମୋ' କଥା ଶୁଣିବ ନାହିଁ ନା ? ନ ଶୁଣ ! ମୁଁ

ଈଶ୍ୱରଙ୍କ ଦୁହାଇ ଦେଇ କହୁଛି । ମୋତେ ଠକୁ ନାହିଁ । ଏଣିକି ସେମାନେ ଆମକୁ ରେଡ୍‌କ୍ରସ୍ ପଠାଇଥିବା ଖାଦ୍ୟ ପ୍ୟାକେଟ୍ ବାଣ୍ଟିବେ ।''

ମୋ'ର ଗରମ ପାଣି ପିଇବା ବନ୍ଦ ହୋଇଗଲା । ତାକୁ ପଚାରିଲି, ''ତା' ମାନେ, ତୁମକୁ କେହି ଗୋପନ ଖବରଟା ଦେଇ ଦେଇଛି, ଏୟା ତ !''

''ସତକଥା, ମୁଁ ଗୋଟେ ବିଶ୍ୱସ୍ତ ସୂତ୍ରରୁ ଏହି ଖବର ପାଇଛି । ମୋତେ ବିଶ୍ୱାସ କର । ତୁମେ ନିଜେ ଦେଖିବ, ସତ କି ମିଛ ।'' ଏତିକି କହି ସେ ସେହି ନୂଆ ସମ୍ବାଦକୁ ଅନ୍ୟ ରୁମ୍‌ରେ ପହଞ୍ଚାଇ ଦେବାକୁ ସେଠାରୁ ପଳାଇଗଲା । କ୍ଲାରା କହିଲା । ''ସେ କ'ଣ କହୁଛି, ତାହାର ଅର୍ଥ ସେ ନିଶ୍ଚୟ ଜାଣିଥିବ !''

୧୯୪୫ର ଏପ୍ରିଲ୍ ମାସ ଶେଷ ହୋଇ ଆସୁଥିଲା । ପାଗଟା ବେଶ୍ ଉଷ୍ମ ଓ ଖରାଟିଆ ଥିଲା । ଆମେ ଅନୁଭବ କଲୁ ଯେ, ''ଯୁଦ୍ଧ ଶୀଘ୍ର ଶେଷ ହେବାକୁ ଯାଉଛି ।'' ଆମେ ଏକଥା ବିଶ୍ୱାସ କରୁଥିଲୁ ଯେ ଯୁଦ୍ଧ ଶେଷ ହେବା ପର୍ଯ୍ୟନ୍ତ ଆମେମାନଙ୍କୁ ସେହି ରୋଷ୍ଟକ୍‌ରେ ହିଁ ରହିବାକୁ ପଡ଼ିବ । କ୍ଷୁଧା କିମ୍ବା ଉକୁଣୀ ମାନଙ୍କର ଶୋଷଣ ଆମକୁ ଶେଷ କରିଦେଇ ପାରିବ ନାହିଁ ।'' ନାତ୍‌ସୀ ଆତଙ୍କବାଦୀ ମାନେ ଆମର କାର୍ଯ୍ୟକଳାପ ପ୍ରତି ଆଦୌ ଧ୍ୟାନ ଦେଉନଥିଲେ, ଏପରିକି ବ୍ଲକ୍‌ର ଓ୍ୱାଡେନ୍ ମଧ୍ୟ ଆମ ଆଡ଼କୁ ଅନାଉ ନଥିଲା । ଆମେ ବ୍ଲକ୍‌ର ଚାରିଆଡ଼େ ମନ ଇଚ୍ଛା ବୁଲୁଥିଲୁ ଏବଂ ଇପ୍ସିତ ରେଡ୍‌କ୍ରସ୍ ପ୍ୟାକେଟ୍ କେତେବେଳେ ଆମ ପାଖରେ ପହଞ୍ଚିବ ସେ ବିଷୟରେ ବହୁ ସ୍ୱପ୍ନ ଦେଖୁଥିଲୁ ଓ କଳ୍ପନା ଜଳ୍ପନା କରୁଥିଲୁ ।

ଖାଦ୍ୟ ପ୍ୟାକେଟ୍ କଥା ଓ୍ୱିର୍‌କା ସବୁ ବ୍ଲକ୍‌ରେ ବୁଲି ବୁଲି କହିଥିଲା କିମ୍ବା ମହିଳାମାନେ ଅନ୍ୟ କେଉଁ ସୂତ୍ରରୁ ସେ ଖବର ପାଇଥିଲେ, ସେକଥା ମୁଁ ଜାଣି ନଥିଲି । ପର ମୁହୂର୍ତ୍ତରେ ମୁଁ ଓ୍ୱିର୍‌କା ଦେଇଥିବା ସମ୍ବାଦକୁ ମିଥ୍ୟା କରି ଉଡ଼ାଇ ଦେଉଥିଲି ଏବଂ ଅବଜ୍ଞା ସୂଚକ ସଙ୍କେତ ଦେଖାଇ ତା' କଥାକୁ ପ୍ରତ୍ୟାଖ୍ୟାନ କରି ଦେଉଥିଲି ।

ତେଣୁ ମଧ୍ୟାହ୍ନ ଭୋଜନ ପରେ ଯେତେବେଳେ ଓ୍ୱାର୍ଡେନ୍ ଜଣାଇଦେଲା ଯେ, ''ସମସ୍ତେ ଦି ଦି ଜଣିଆ ଲାଇନ୍‌ରେ ଯାଇ ଗୋଦାମ୍ ଘରେ ପହଞ୍ଚିବ ଏବଂ ସେଠାରୁ ଖାଦ୍ୟ ପ୍ୟାକେଟ୍ ଆଣିବ ।'' ଆମର ବିସ୍ମୟର ସୀମା ରହିଲା ନାହିଁ । ଆମେ କର୍ମକର୍ତ୍ତାମାନଙ୍କୁ ସଙ୍ଗରେ ଧରି ଗୋଦାମ ଘରଆଡ଼େ ଚାଲିଲୁ । ଓ୍ୱିର୍‌କାର ଆନନ୍ଦ କହିଲେ ନସରେ । ସେ ଗୋଟି ଗୋଟି ସମସ୍ତଙ୍କ ପାଖକୁ ଯାଉଥିଲା ଏବଂ କହୁଥିଲା, ''ଦେଖିଲ ? ମୁଁ କହୁ ନଥିଲି ? ମୋତେ ହସରେ ଉଡ଼ାଇ ଦେଉଥିଲ । ଏବେ ଦେଖିଲ ?''

କ'ଣ ସେ ପ୍ୟାକେଟ୍‌ରେ ଥିଲା ? ବା କେଉଁଠାରୁ ଆସିଥିଲା ତାହା ?

ଯୁଦ୍ଧ ଶେଷ ହେବାର ବହୁଦିନ ପରେ ମୁଁ ଜାଣିବାକୁ ପାଇଲି ଯେ ଯୁଦ୍ଧରେ ସମ୍ପୃକ୍ତ

ନଥିବା କେତେକ ନିରପେକ୍ଷ ଦେଶ ସେ ଖାଦ୍ୟ ପ୍ୟାକେଟ୍‌ଗୁଡ଼ିକ ପଠାଉଥିଲେ ବନ୍ଦୀ ଶିବିରରେ ଅନ୍ତେବାସୀଙ୍କ ଉଦ୍ଦେଶ୍ୟରେ । କିନ୍ତୁ ନାତ୍‌ସୀ ଆତଙ୍କବାଦୀମାନେ ତାକୁ ବାଣ୍ଟୁ ନଥିଲେ । କହୁଥିଲେ, ''ସେ ଗୁଡ଼ିକ ଆମେ ହଣ୍ଡା ଭିତରେ ରଖି ଦେଇଥିଲୁ ।'' ହୁଏତ ତାହା ଠିକ୍ ହୋଇପାରିଥାଏ । କିନ୍ତୁ ହଣ୍ଡାରେ ସେମାନଙ୍କ ପାଇଁ ରୋଷେଇ ହେଉଥିଲା ଓ ସେଗୁଡ଼ିକୁ ରଖିବା ପାଇଁ ଆଉ ସ୍ଥାନ ନ ହେବାରୁ ସେମାନେ ବାଣ୍ଟିବାକୁ ବାଧ ହୋଇଥିଲେ । ନଚେତ୍ ଜର୍ମାନୀ ଶତ୍ରୁପକ୍ଷ ଅଭିଯୋଗ କରିଥାନ୍ତେ ଯେ ଲୋକେ ଅନାହାରରେ ମରୁଥିବା ବେଳେ ନାତ୍‌ସୀ ସରକାର ଖାଦ୍ୟ ପ୍ୟାକେଟ୍ ଗୁଡ଼ିକୁ ନଷ୍ଟ କରୁଥିଲେ ।

ପ୍ରତି ଦୁଇଜଣ ବନ୍ଦିନୀଙ୍କୁ ଗୋଟିଏ ଲେଖାଏଁ ପ୍ୟାକେଟ୍ ମିଳୁଥିଲା ଏବଂ ସେମାନେ ନିଜ ନିଜ ଭିତରେ ବାଣ୍ଟି ନେଉଥିଲେ । କ୍ଲାରା ଏବଂ ମୁଁ ଏକତ୍ର ଖାଉଥିବାରୁ ବଣ୍ଟାବଣ୍ଟିରେ ଆମର କୌଣସି ସମସ୍ୟା ନଥିଲା । କିନ୍ତୁ ଭାଗବଣ୍ଟା ବେଳେ ଅନ୍ୟମାନଙ୍କ ମଧ୍ୟରେ ବହୁ ଝଗଡ଼ା, କଳିଗୋଳ ଓ ମାଡ଼ପିଟ୍ ମଧ ହୋଇଯାଉଥିଲା ।

ପ୍ରତି ପ୍ୟାକେଟ୍‌ରେ ଲହୁଣୀ ଦିଆ ପତଳା ବିସ୍କୁଟ୍ (Crackers) ଚୂନାମାଛ ଭଜା (Sardines) ମାଂସ ଟୋଷ୍ଟ (Ham) ଝୋଳ (Salani) ଚିନି ଓ ବାଦାମଦିଆ ମିଠା (Kandy) ରହିଥିଲା । ବନ୍ଦିନୀମାନେ ସେହି ପ୍ୟାକେଟ୍ ଉପରେ ଯେମିତି ଓଜାଡ଼ି ହୋଇ ପଡୁଥିଲେ । ନିଜକୁ ସଂଯତ କରି ଭୋଜନକୁ ନିୟନ୍ତ୍ରଣ କରିବା ସହଜ କଥା ନଥିଲା । ମାସ ମାସ ଓ ବର୍ଷ ବର୍ଷ କେହି ଆବଶ୍ୟକୀୟ ଖାଦ୍ୟ ପାଇ ନଥିଲେ । ତେଣୁ ପେଟ ମଧ ହଠାତ୍ ଅଧିକ ଖାଦ୍ୟ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲା । ବିଶେଷତଃ ଚର୍ବିଜାତୀୟ ଖାଦ୍ୟ ଓ ମିଠା ବିରୋଧରେ ପେଟ ମଧ ବିଦ୍ରୋହ କରୁଥିଲା । ଆତଙ୍କବାଦୀମାନେ ତାହା ଚିନ୍ତା କରି ଏକା ସଙ୍ଗେ ସମସ୍ତ ଖାଦ୍ୟ ଦେଇଦେବା ଉଚିତ ନଥିଲା । ବହୁ ବନ୍ଦୀ ଅଧିକ ଖାଇ ଅସୁସ୍ଥ ହୋଇ ପଡ଼ିଥିଲେ ।

ତା' ପରଦିନ ଏପ୍ରିଲ୍ ୩୦ ତାରିଖରେ ସେ କଳା ଗରମ ପାଣି ଦିଆଗଲା ନାହିଁ । ଗୋଦାମ ଘରଗୁଡ଼ିକ ଠିଆ ମେଲା ପଡ଼ିଥିଲା । ଯାହାର ସାମର୍ଥ୍ୟ ଥିଲା ସେ ସେଠାରୁ ଅଟା, ମଇଦା ଓ ଚିନି ଆଣି ପାରୁଥିଲା । ସେଠାରେ କୌଣସି ଆତଙ୍କବାଦୀ ନଥିଲେ । ଆମେ ଭାବୁଥିଲୁ ସେମାନେ ଆମକୁ ଏକା ଛାଡ଼ି ପଳେଇ ଗଲେଣି । ତାହାର କିଛି ସମୟ ପରେ ସଶସ୍ତ୍ର ସନ୍ତ୍ରାସବାଦୀ ସହ କମାଣ୍ଡାଣ୍ଟ୍ ସେଠାରେ ପହଞ୍ଚିଗଲା ଏବଂ ଆମକୁ ସଙ୍ଗେ ସଙ୍ଗେ କ୍ୟାମ୍ପ ଛାଡ଼ିବାକୁ ନିର୍ଦ୍ଦେଶ ଦିଆଗଲା । ଆମେ କିଛି ବୁଝିପାରୁ ନଥିଲୁ । ଅନ୍ୟ କେଉଁଠାରେ ଲୁଚିବା ଛଡ଼ା ଅନ୍ୟ ଉପାୟ ନଥିଲା । କିନ୍ତୁ ସୁଯୋଗ ମିଳିବା ସଙ୍ଗେ ସଙ୍ଗେ ମୁଁ ପଛରେ ଅଟକି ଯିବି ବୋଲି ଭାବୁଥିଲି । ବହୁତ ସୁଯୋଗ ମିଳିଯିବ ବୋଲି ମୁଁ ବିଶ୍ୱାସ କରୁଥିଲି ।

କ୍ୟାମ୍ପରୁ ଯାଇଥିବା ପାଖକିଆ ରାସ୍ତା ଧରିଲି । ତା' ପରେ ଆମେ ପ୍ରଧାନ ରାସ୍ତାରେ

ପହଞ୍ଚିଗଲୁ । ସେଠାରେ ମୋ'ପାଦ ଯେମିତି ଲାଖିଗଲା । ପଳାୟମାନ ଜର୍ମାନ୍‌ମାନଙ୍କର ଗହଳି ଲାଗିଥିଲା । ବୃଦ୍ଧ, ବୃଦ୍ଧା ଓ ଶିଶୁମାନେ କିଏ ଚାଲିଚାଲି କିଏ ସାଇକେଲ୍‌ରେ କିଏ ବା ଘୋଡ଼ା ଗାଡ଼ିରେ ବସି ପଳାଉଥିଲେ । ମଣିଷମାନଙ୍କ ସହ ଚାଲୁଥିଲେ ଗାଈ, ଗୋରୁ, ଘୁଷୁରି, ଘୋଡ଼ାମାନେ । ପିଞ୍ଜରାରେ କୁକୁଡ଼ାମାନଙ୍କୁ ମଧ୍ୟ ନେଇ ଯାଉଥିଲେ । କାନ୍ଧରେ ପ୍ୟାକେଟ୍ ବ୍ୟାଗ୍, ଝୁଲା, ଝୁଲାଇ ଚାଲିଥାନ୍ତି । ସମସ୍ତଙ୍କ ମୁହଁରେ କ୍ଳାନ୍ତି ଓ ଆତଙ୍କର ଚିହ୍ନ । ମୁଁ ସେଭଳି ରାସ୍ତା ଓ ମ୍ଳାନ ମୁଖ ଲୋକଙ୍କୁ ଆଗରୁ ଦେଖିଥିଲି । ୧୯୩୯ ମସିହାରୁ ୧୯୪୧ ପର୍ଯ୍ୟନ୍ତ ଘଟିଥିବା ଘଟଣାବଳୀ ମୋର ସ୍ମୃତି ପଟରେ ଭାସି ଉଠିଲା ।

ଆମେ ରାସ୍ତା କଡ଼ରେ ଛିଡ଼ା ହୋଇଥିଲୁ । କମାଣ୍ଡର ଓ ଆତଙ୍କବାଦୀମାନେ ଆମ ପାଇଁ କ'ଣ କରିବେ ସେହି ବିଷୟ ଆଲୋଚନା କରୁଥିଲେ । ଆମମାନଙ୍କୁ ସେହି ପଳାଇଯାଉଥିବା ଜର୍ମାନ୍‌ମାନଙ୍କ ସହ କିପରି ମିଶାଇ ଦେଇ ପାରିବେ ତାହାହିଁ ସେମାନଙ୍କର ଚିନ୍ତାର ବିଷୟ ହୋଇଥିଲା । ଶେଷରେ ସେହି ସିଦ୍ଧାନ୍ତ ନିଆଗଲା । ଆମମାନଙ୍କୁ ଦୁଇ ଦୁଇଜଣ ହୋଇ ସେମାନଙ୍କ ସହ ମିଶିଯିବା ପାଇଁ କୁହାଗଲା । କିନ୍ତୁ କୁଆଡ଼େ ଯିବୁ କେହି ଜାଣି ନଥିଲୁ । ରକ୍ଷୀମାନଙ୍କର ଦୃଷ୍ଟିକୁ ଫାଙ୍କି ଅନ୍ୟଆଡ଼େ ଚାଲିଯିବା କେତେ କଷ୍ଟ ମୁଁ ତାହା ସେହିଦିନ ଅନୁଭବ କଲି । ରାସ୍ତାର ଗୋଟିଏ ପାର୍ଶ୍ୱରେ ଥିବା ଉପତ୍ୟକାର ସବୁଜ ପଡ଼ିଆ ବସନ୍ତର ସୁଗନ୍ଧରେ ହେଉଥିଲା ସୁରଭିତ । ରାସ୍ତାର ଅଳ୍ପ ଦୂରରେ ଗଦା ହୋଇଥିଲା ପୂର୍ବ ଚାଷର ଶୁଖିଲା ନଡ଼ା (କୁଟା) । ତା' ଭିତରକୁ କୌଣସି ପ୍ରକାରେ ଖସିଗଲେ ସେହି ପାଳ ଗଦା ଭିତରେ ଲୁଚିଯାଇ ହେବ ବୋଲି ମୁଁ ଭାବୁଥିଲି ।

ରାସ୍ତା କଡ଼ ଘାସ ପଡ଼ିଆ ଭିତରେ କ୍ୟାମ୍ପ୍ ପୋଷାକ ପରିହିତ ଦୁଇଜଣ ଗୋଟାଏ ବଡ଼ ପାତ୍ରରେ ଆଳୁ ରାନ୍ଧୁଥିଲେ । ଚାରି ଖଣ୍ଡ ଇଟା ଥୋଇ ସେମାନେ ଚୁଲ୍ଲୀ ତିଆରି କରିଥିଲେ । କଡ଼େଇ ତଳେ ନିଆଁ ମଧ୍ୟ ହୁଦ୍ ହୁଦ୍ ହୋଇ ଜଳୁଥିଲା । ଲୋକ ଦୁଇଟି ନିଆଁକୁ ଘେରି ବସିଥିଲେ ଏବଂ ବଡ଼ ବିବ୍ରତ ଦିଶୁଥିଲେ ।

ମୁଁ ବୋକାଙ୍କ ଭଳି ପଚାରିଲି, ''ତୁମେମାନେ ଏଠାରେ କ'ଣ କରୁଛ ?''

''କ'ଣ କହିବାକୁ ଚାହୁଁଛ ? ଆମେ ଆଳୁ ରାନ୍ଧୁଛୁ । ଜଣେ ଉତ୍ତର ଦେଲା, ଆଉ ଜଣେ କହିଲା ଛିଡ଼ା ହୋଇଛୁ କାହିଁକି ? ଦୁଇପାଦ ଓହ୍ଲେଇ ଆସ ଓ ଆମ ପାଖରେ ବସିଯାଅ । ତୁମକୁ କେହି ଦେଖିପାରିବେ ନାହିଁ । ଆମେ ଗତ କାଲି ମଧ୍ୟ ସେୟା କରୁଥିଲୁ । ଆମେ କ୍ୟାମ୍ପର ଡୋରିଆ ପୋଷାକ ବଦଳାଇବାକୁ ମଧ୍ୟ ଆବଶ୍ୟକ ମନେ କରି ନଥିଲୁ । ତୁମମାନଙ୍କଠାରୁ ମୁକ୍ତ ହେବା ନାତ୍‌ସୀ ଆତଙ୍କବାଦୀଙ୍କର ଏକମାତ୍ର ଲକ୍ଷ୍ୟ । ତଦ୍ୱାରା ସେମାନେ ନିଜକୁ ବଞ୍ଚାଇ ପାରିବେ ।''

ମୁଁ କ୍ଲାରାକୁ ମୋ ସାଙ୍ଗରେ ଟାଣିନେଲି । ପର ମୁହୂର୍ତ୍ତରେ ଆମେ ମଧ୍ୟ ଆଳୁ ରନ୍ଧା

ହେଉଥିବା ପାତ୍ର ପାଖରେ ଆଣ୍ଠେଇ ପଡ଼ିଲୁ । କିନ୍ତୁ ମୋର ହୃତ୍‌ସ୍ପନ୍ଦନ ଦ୍ରୁତ ଗତିରେ ଚାଲୁଥିଲା । ମୁଁ ଭୀଷଣ ଡରି ଯାଇଥିଲି । ରାସ୍ତାରେ ମଣିଷମାନଙ୍କ ଧାଡ଼ି କ୍ରମେ ଅତିକ୍ରମ କରୁଥିଲା ।

ସେ ଦୁହିଁଙ୍କ ମଧ୍ୟରୁ ଜଣେ କହିଲା, ''ବର୍ତ୍ତମାନ ସେ ପାଳଗଦା ପାଖକୁ ପଳାଅ ଏବଂ ଗୋଟାଏ ଗାତ ଭିତରେ ଲୁଚିଯାଅ । ତେବେ ସାବଧାନ ଯେପରି ଅନ୍ୟ କାହା ଉପରେ ଚଢ଼ି ନଯାଅ ।'' ସେ କ'ଣ କହିଲା ମୁଁ ବୁଝି ପାରିଲି ନାହିଁ । ତଥାପି ଆମେ ପାଳଗଦା ପାଖକୁ ଚାଲିଗଲୁ । ଯେମିତି ଆମେ ଅନ୍ୟ କାହା ଉପରେ ଚଢ଼ି ନଯାଉ ସେଥିପାଇଁ ସାବଧାନ ହେବାକୁ ପଡ଼ିଲା । ଇଷ୍ ତିଆରି କେକ୍‌ରେ ଯେମିତି କାଜୁ କିସ୍‌ମିସ୍ ଲୁଚି ରହିଯାଏ, ସେ ଗଦା ଭିତରେ ସେମିତି ବହୁଲୋକ ଆତ୍ମ ଗୋପନ କରିଥିଲେ । ଆମ ପୂର୍ବରୁ ମଧ୍ୟ ସେହି ରାସ୍ତା ଦେଇ ବହୁ ବନ୍ଦୀଙ୍କର ସରବରାହ ହୋଇଯାଇଥିଲା । ସେମାନଙ୍କୁ ବେଠି ଖଟିବାକୁ ପଠାଯାଇଥିଲା ଏବଂ ସେମାନଙ୍କ ମଧ୍ୟରୁ କେତେକ ମାଲିକମାନଙ୍କ ପାଖରୁ ଖସି ଆସିଥିଲେ । ଆମ ପାଇଁ ଗୋଟିଏ ଖାଲ ସେଠାରେ ଥିଲା । ମୁଁ ତା' ଭିତରେ ଚିତ୍ ହୋଇ ଶୋଇଗଲି କିନ୍ତୁ ଦେହଟା ଥରୁଥିଲା । ଯେଉଁ ଭୟଙ୍କର ଦୃଶ୍ୟ ସବୁ ବାଟରେ ଦେଖି ଆସିଥିଲି, ତାହାସବୁ ମୋ ମନଶ୍ଚକ୍ଷୁରେ ଭାସି ଉଠୁଥିଲା । ମୁଁ ଯାହା ଦେଖି ଆସିଥିଲି ସେଥିରେ ମୋର ତିଳେମାତ୍ର ସନ୍ଦେହ ନଥିଲା । ତେଣୁ ମୁଁ ବାରମ୍ବାର କହୁଥିଲି, ''ଦେଖ ଜର୍ମାନ୍‌ମାନେ କେମିତି ପଳାୟନ କରୁଛନ୍ତି ।'' କଥାରେ ଅଛି ପ୍ରତିଶୋଧ ନେବାରେ ଭଗବାନ ମଧ୍ୟ ଆନନ୍ଦ ପାଆନ୍ତି । ମୁଁ ମୋ ଜୀବଦ୍ଦଶାରେ ସେଭଳି ଆନନ୍ଦ ପୂର୍ବରୁ କେବେ ଅନୁଭବ କରି ନଥିଲି । ଶେଷରେ ସେମାନଙ୍କୁ ମଧ୍ୟ ପରାଜୟର ଗ୍ଲାନି ଅନୁଭବ କରିବାକୁ ପଡ଼ିଲା । ''ଆମକୁ ଯେଉଁବାଟେ ସେମାନେ ଦଉଡ଼େଇ ଥିଲେ, ସେହିବାଟେ ସେମାନଙ୍କୁ ମଧ୍ୟ ଦୌଡ଼ିବାକୁ ପଡ଼ିଛି ।'' ଆମ ଉପରେ ଜର୍ମାନ୍‌ମାନେ ବୋମା ପକାଇବା, ଆମ ଉପରକୁ ମେସିନ୍ ଗନ୍ ଚଳାଇବା ଓ ଆତ୍ମରକ୍ଷା କରିବାକୁ ପ୍ରତି ମିନିଟ୍‌ରେ ଆମେ ରାସ୍ତା ଉପର ପଡ଼ିଆକୁ ଦୌଡ଼ିବା ଇତ୍ୟାଦି ସବୁ କଥା ଗୋଟି ଗୋଟି ହୋଇ ମନେ ପଡ଼ିଗଲା । କିନ୍ତୁ ଭୀତତ୍ରସ୍ତ ଜର୍ମାନ୍‌ମାନେ ପ୍ରାଣ ଭୟରେ ପଳାଇ ଯାଉଥିବା ବେଳେ କେହି ହେଲେ ସେମାନଙ୍କ ଆଡ଼କୁ ଚାହୁଁ ନଥିଲେ ।

ମୋର ଚିନ୍ତା ସ୍ରୋତରେ ବାଧା ଦେଇ କ୍ଲାରା କହିଲା, ''ଦେଖ ଆମ ପଛପଟରେ ଗୋଟାଏ ବାରାକ୍ ଅଛି । ହୁଏତ ସେଠାରେ କିଛି କର୍ମକର୍ତ୍ତା ଥାଇପାରନ୍ତି । ସେଠାକୁ ଗଲେ କିଛି ଖାଇବାକୁ ମିଳିପାରେ ।

ଆମେ ବାରାକ୍ ଭିତରକୁ ଗଲୁ । ସେଠାରେ କିଛି ଖାଦ୍ୟ ପଦାର୍ଥ ନଥିଲା । କେବଳ ଗୋଟିଏ ଷ୍ଟୋଭ୍ ଦେଖିଲୁ । ତାହା ବେଶ୍ ଗରମ ଥିଲା । ଗୋଟାଏ ପାତ୍ରରେ କିଛି ଗରମ ପାଣି ଥିଲା । ଅନ୍ୟ ଗୋଟିଏ ବଡ଼ ପାତ୍ର, ସାବୁନ୍ ଓ ଟାଉଏଲ୍ ଥିଲା । ଆମେ ପୋଷାକପତ୍ର

କାଢ଼ି ବହୁଦିନ ପରେ ଗରମ ପାଣିରେ ଧୁଆଧୋଇ ହୋଇ ପଡ଼ିଲୁ । ସ୍ୱାଧୀନତାର ସୁଗନ୍ଧ ମୁଁ ଅନୁଭବ କଲି । ଗରମ ପାଣିରେ ମୁହଁଟା ଧୋଇ ପକାଇବାରୁ ବହୁତ ତୃପ୍ତି ଲାଗିଲା । ମୁଣ୍ଡ ଟେକି ଅନେଇ ଦେବାରୁ ଯାହା ଦେଖିଲି, ସେଥିରେ ଆତଙ୍କିତ ହୋଇ ପଡ଼ିଲି । ମୁଁ ଚିତ୍କାର କରି କହିଲି, ''କ୍ଲାରା ଦେଖ, ଜଣେ ନାତ୍‌ସୀ ଆତଙ୍କବାଦୀ ଆମ ଆଡ଼କୁ ଆସୁଛି ।''

ତା'ର ଦେହସାରା ସେ ଏମିତି କଳା ବୋଳି ହୋଇଥିଲା ଯେ ଆପାଦ ମସ୍ତକ ସେ କଳା ଦିଶୁଥିଲା । ସେ କଳା ଭିତରେ ତା'ର ମୁହଁ ମଧ୍ୟ ଦିଶୁ ନଥିଲା । ତାହାର ବେଲ୍‌ଟରେ ପିସ୍ତଲ ଝୁଲୁଥିଲା ଏବଂ ଏକ ଗ୍ରେନେଡ୍‌ (ହାତବୋମା) ଥିଲା । କେବଳ ଆଖି ଯୋଡ଼ିକ ଧପ୍‌ ଧପ୍‌ ଦିଶୁଥିଲା ।

କ୍ଲାରା କହିଲା, ''ଆମର ଶେଷ ବେଳ ପହଞ୍ଚିଗଲା ।'' ସେ ସିଧା ରୋଷେଇ ଘରକୁ ଚାଲିଗଲା । ଜଣାଗଲା ଯେପରିକି ସେ ଆମ ଦି' ଜଣକୁ ଦେଖି ନଥିଲା ।

କିନ୍ତୁ ସେଠାରୁ ଫେରି ପଚାରିଲା, ''କ'ଣ ହେଲା ? ସେମାନେ ତୁମ ଦି' ଜଣଙ୍କୁ ଯିବାକୁ ଦେଇଛନ୍ତି ବୋଧହୁଏ ।''

ଆମେ କ୍ୟାମ୍ପର ଡୋରିଆ ପୋଷାକ ପିନ୍ଧି ନଥିଲେ ମଧ୍ୟ ସେ ଆମକୁ ଚିହ୍ନି ପକାଇଲା ।

ମୁଁ କହିଲି, ''ହଁ, ସେମାନେ ଆମକୁ ଛାଡ଼ି ଦେଲେ ।'' ସେ ଚାରିଆଡ଼କୁ ତୀବ୍ର ଚାହାଣୀରେ ଆଖି ବୁଲେଇଲା ।

ଧୀର ଗଳାରେ କହିଲା, ''ମୋତେ ରୁଟି ଦିଅ ।''

''ଆମେ ତ ନିଜେ ଖୋଜୁଛୁ ରୁଟି । କିନ୍ତୁ ଏଠାରେ କିଛି ନାହିଁ ।''

''କିଛି ନାହିଁ !'' ସେ ପଳେଇଲା । କ୍ଲାରା କହିଲା, ''ଓଃ ଆମେ ରକ୍ଷା ପାଇଗଲୁ ।''

ଆମେ ମଧ୍ୟ ବାରାକ୍‌ ପରିତ୍ୟାଗ କରି ପାଳଗଦାରେ ଲୁଚିବାକୁ ପଳେଇଲୁ ।

■■■

– ୩୯ –

# ସ୍ୱାଧୀନତାର ପ୍ରଥମ କେତୋଟି ଦିନ

ସେହି କେତୋଟି ମାସ ମୁଁ ବଡ଼ ବିଚିତ୍ର ପରିସ୍ଥିତି ଭିତରେ ରହୁଥିଲି । ସେ ପରିସ୍ଥିତି ଏତେ ଅସ୍ୱାଭାବିକ ଥିଲା ଯେ ତାହାକୁ ବାସ୍ତବ ବୋଲି ଗ୍ରହଣ କରିବା ସମ୍ପୂର୍ଣ୍ଣ ଅସମ୍ଭବ ଥିଲା । ମନେ ପଡ଼ିଗଲା ସେବର୍ଷର ନବବର୍ଷ ଉତ୍ସବର ସ୍ମୃତି – ବିଦ୍ୟୁତ୍‌ ତାର ଘେରା

କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପର ବାଡ଼ ପାଖରେ ପୁରୁଷ ବ୍ଲକ୍‌ର ସାଥୀମାନଙ୍କ ସହ ବନ୍ଧୁତ୍ୱ ପୂର୍ଣ୍ଣ ପରିବେଶରେ 'ଇଣ୍ଟରନ୍ୟାସ୍‌ନାଲ୍'ର ସମୂହ ଗାୟନ, ପଦଯାତ୍ରା ବେଳେ ମୋର କ୍ଷତ ବିକ୍ଷତ ପାଦରେ ଚାଲିବାର ଅକ୍ଷମତା ଦେଖି ଦୟାପରବଶ ଲେଫ୍‌ଟ୍‌ନାଣ୍ଟ୍‌ର ନିର୍ଦ୍ଦେଶରେ ସମ୍ମୋହିତ ସ୍ଲେଜ୍ ଯାତ୍ରା, ଖୋଲା ତବାରେ କୌଣସି ଅଜ୍ଞାତ ମହିଳାଙ୍କ ଦ୍ୱାରା ଅଯାଚିତ କମ୍ବଳ ପ୍ରଦାନ । କିନ୍ତୁ ଆଜି ୧୯୪୫ର ମଇ ଦିବସରେ ମୁଁ ରୋଷ୍ଟକ୍ ଓରୋବେଲ୍‌ର ମଧ୍ୟ ଭାଗରେ ଅବସ୍ଥିତ ପାଳଗଦା ମଝିରେ ରାସ୍ତାର ଅନତି ଦୂରରେ ପ୍ରଥମ ସନ୍ଧ୍ୟାରେ ଆମେ ବ୍ୟାରାକ୍ ଭିତରୁ ଟାଣି ଆଣିଥିବା ଦୁଇଟି ଲମ୍ବା ବେଞ୍ଚ୍ ଏବଂ ଏକ ବିଶାଳ ଟେବୁଲ୍ - ଏହାକୁ ନେଇ ସ୍ୱାଧୀନତାର ପ୍ରଥମ ମଇ ଦିବସ ପାଳନ କରିବାକୁ ଯାଉଥିଲୁ । ସେହି ଟେବୁଲ୍‌ଟି ପାଳଗଦା ପାଖରେ କୃଷକମାନଙ୍କ ଦ୍ୱାରା ବହୁବାର ବ୍ୟବହୃତ ହୋଇଥିଲା । ମଇ ଦିବସରେ ଆମ ଗହଣରେ ଥିଲେ ସ୍ୱଳ୍ପକେଶ ବିଶିଷ୍ଟ ସୁନ୍ଦର ଡେଙ୍ଗା ଓ ହାସ୍ୟମୁଖ ରୁଷିଆ ଅଧିବାସୀ ଶାସା; ଗେଡ଼ା, ମୋଟା ଓ ଅତ୍ୟନ୍ତ ପ୍ରତ୍ୟୁତ୍ପନ୍ନ ମତି ଫରାସୀ ଅଧିବାସୀ ରେନି; ପୋଲାଣ୍ଡର ଲୋଡ଼ ଅଧିବାସୀ ଭାଇ-ଭଉଣୀ ଇରେନା ଓ ଜାନେକା; ଜଣେ ବୃଦ୍ଧା ଇହୁଦୀ ମହିଳା ଓ ତାଙ୍କର ବାରବର୍ଷର ଝିଅଟି । ବୃଦ୍ଧା ଜଣକ ୧୯୪୪ ମସିହାର ଲୋଡ୍‌ଜର ଇହୁଦୀ ବସ୍ତିରୁ ଧରାହୋଇ ଆଉସ୍‌ଭିତ୍‌ଜକୁ ଆସିଥିଲା । ସେଠାରେ ଅନ୍ୟର ବିନା ସାହାଯ୍ୟରେ ଗୋପନରେ ଝିଅଟିକୁ ବ୍ଲକ୍ ଭିତରକୁ ନେଇଯାଇଥିଲା ଏବଂ ବ୍ଲକ୍‌ରେ ମଧ୍ୟ ଭର୍ତ୍ତି କରିଦେବାକୁ ସମର୍ଥ ହୋଇଥିଲା । ଯାହାହେଉ ସେମାନେ ସେହି ପାଳଗଦାରେ ଏକତ୍ର ରହିପାରିଥିବାରୁ ମା'ର ଆନନ୍ଦର ସୀମା ନଥିଲା । ଟେବୁଲ୍‌ର ଶେଷ ଆଡ଼କୁ ପୋଜ୍ନାନ ନିବାସୀ ଯେଉଁ ଯୁବକ ଦୁଇଜଣ ବସିଥିଲେ, ସେମାନେ ପେଶାଦାର ପକେଟ୍‌ମାର୍ ଭାବରେ ନିଜ ନିଜର ପରିଚୟ ଦେଉଥିଲେ । ପୂର୍ବଦିନ ତମାମ ସେମାନେ ନିକଟବର୍ତ୍ତୀ ସହରରୁ ବିଭିନ୍ନ ଜିନିଷ ଭର୍ତ୍ତି ହୋଇଥିବା ବଡ଼ ବଡ଼ ଥଳି ସବୁ ଘୋଷାଡ଼ି ଆଣୁଥିଲେ । ସେମାନେ ଯୁକ୍ତି କରୁଥିଲେ, ''ଜର୍ମାନ୍‌ମାନେ ଆମର ବହୁତ ଜିନିଷ ନେଇଯାଇଥିଲେ, ତେଣୁ ଆମେ ମଧ୍ୟ ସେମାନଙ୍କ ଜିନିଷ ବୋହି ଆଣିଛୁ ।'' ଆଉ ମଧ୍ୟ ସେଠାରେ ଥିଲେ ଜଣେ ହଙ୍ଗେରୀୟ ଓ ଆଉ ଜଣେ ସ୍ଲୋଭାକ୍ ମହିଳା । ଶେଷରେ ମୁଁ ଓ କ୍ଲାରା ।

ଟେବୁଲ୍ ଉପରେ ଥୁଆ ହୋଇଥିଲା ରନ୍ଧା ଆଳୁ ଭର୍ତ୍ତି ଗୋଟାଏ ବଡ଼ କୁଣ୍ଡ । ଗୋଟାଏ ପାତ୍ରରେ ଅଶ୍ୱ ମାଂସ ଓ ଆଉ ଗୋଟାଏ ପାତ୍ରରେ ଲାଲ୍ ବିଟ୍ ଝୋଳ । ଆମ ସାମନାରେ ରହିଥିଲା ପ୍ଲେଟ୍, କପ୍, ଓ ଚାମଚ । ରୁଷିଆର ମଇ ଦିବସ ଉପରେ ଶାସା କିଛି କହିଲା ଏବଂ ବିଜୟୀ ଲାଲ ଫୌଜ୍ ଉଦ୍ଦେଶ୍ୟରେ ସୁରା ଅର୍ପଣ କଲା । ସେହିମାନଙ୍କ ହାତରେ ବିପର୍ଯ୍ୟସ୍ତ ଜର୍ମାନ୍ ଅଧିବାସୀ ଭୀତତ୍ରସ୍ତ ହୋଇ ପଳାୟନ କରୁଥିଲେ; ଆମେମାନେ

ମଧ୍ୟ ନିଜ ନିଜ କପ୍‌ରେ ବିଟ୍ ଝୋଳ ଲାଲ୍ ଫୌଜଙ୍କ ଉଦ୍ଦେଶ୍ୟରେ ପ୍ରଦର୍ଶନ କରିବା ପରେ ଓଠରେ ଲଗାଇଲୁ । ମୁଁ ଟେବୁଲ୍ ପାଖରେ ବସିଥିବା ସାଥୀବୃନ୍ଦ ଏବଂ ମୋର ଆତ୍ମୀୟଙ୍କ ଉଦ୍ଦେଶ୍ୟରେ ମଧ୍ୟ ପାନୀୟ ଅର୍ପଣ କଲି । ସବୁ ପ୍ରହେଳିକା ଭଳି ଲାଗୁଥିଲା ଯେପରିକି ମୁଁ ସ୍ୱାଧୀନତାର ଏକ ସ୍ୱପ୍ନ ଦେଖୁଥିଲି । ଇରେନ୍ କହିଲା, ''ଏଥର ଇଣ୍ଟରନ୍ୟାସ୍‌ନାଲ୍ ।'' ସମବେତ ସାଥୀମାନଙ୍କ ମଧ୍ୟରୁ ଖୁବ୍ କମ୍‌ସାଥୀ ''ଇଣ୍ଟରନ୍ୟାସ୍‌ନାଲ୍'' ଜାଣିଥିଲେ କିନ୍ତୁ ସମସ୍ତେ ଛିଡ଼ା ହୋଇଗଲେ । ଯେଉଁମାନେ ସଙ୍ଗୀତଟିକୁ ଜାଣି ନଥିଲେ ସେମାନେ ମନଯୋଗ ସହକାରେ ଶୁଣିଲେ । ("We shall overcome, we shall overcome, we shall overcome.") ''ଆମେ ବିଜୟୀ ହେବୁ, ଆମେ ବିଜୟୀ ହେବୁ, ଆମେ ବିଜୟୀ ହେବୁ.......'' । ରୁଷ୍, ପୋଲାଣ୍ଡ୍ ଓ ଫ୍ରାନ୍‌ସ ଭାଷାରେ ମଧ୍ୟ ଗାଇଲୁ । ସଙ୍ଗୀତ ଶେଷ ହେବା ସଙ୍ଗେ ସଙ୍ଗେ ଆମର ଆସର ଶେଷ ହେଲା । ସମସ୍ତ ଆସବାବ ପତ୍ର ବ୍ୟାରାକ୍‌ରେ ରଖି ଆମେ ପାଳଗଦା ପଛରେ ପୁନର୍ବାର ଲୁଚି ଗଲୁ । ରାସ୍ତା ଉପରେ ନିରବଚ୍ଛିନ୍ନ ଭାବରେ ପଳାୟମାନ ଲୋକଙ୍କର ସ୍ରୋତ ଛୁଟିଥିଲା । ସାମରିକ ଲୋକମାନଙ୍କ ସାଙ୍ଗରେ ବେସାମରିକ ଲୋକ, ସାମରିକ ଗାଡ଼ି, ଘୋଡ଼ାଗାଡ଼ି ଓ ଗୋରୁ ପ୍ରଭୃତି ସବୁ ମିଶି ଚାଲିଥାଏ ସେ ସ୍ରୋତ ।

ସନ୍ଧ୍ୟା ନଇଁ ଆସୁଥିଲା । ରୁଷିଆ ସୈନ୍ୟମାନେ କେତେବେଳେ ସେଠାରେ ପହଞ୍ଚି ଆମ୍ଭମାନଙ୍କୁ ମୁକ୍ତ କରିବେ; ଆମେମାନେ ତାହା ହିଁ ଭାବୁଥିଲୁ ।

ରାତିହେଲା, ସେ ଦୁଇଜଣ ପକେଟ ମାର ଆହୁରି କିଛି ପ୍ୟାକେଟ୍ ଓ ଥଳି ଧରି ପହଞ୍ଚିଗଲେ । ସେମାନେ ବଡ଼ ବିବ୍ରତ ଦିଶୁଥିଲେ ଏବଂ ସଙ୍ଗେ ସଙ୍ଗେ ପଳେଇ ଯିବା ପାଇଁ ବ୍ୟସ୍ତ ହେଉଥିଲେ । ମୁଁ ଉତ୍କଣ୍ଠିତ ହୋଇ ପଚାରିଲି, ''କୁଆଡ଼େ ବାହାରିଛ ?''

''ବଡ଼ ରାସ୍ତାକୁ'' ଉତ୍ତର ଦେଲେ । ''ଅଳ୍ପ ଦୂରରେ ପୋଲଟିଏ ଅଛି । ଆମେ ସେ ପୋଲକୁ ପାରି ହୋଇ ଆରପଟକୁ ପଳାଇବୁ ଜର୍ମାନ୍‌ମାନଙ୍କ ସହ । ଆମେ ଜାଣିବାକୁ ପାଇଲୁ ଯେ ସେହି ପୋଲଟିକୁ ଧ୍ୱଂସ କରିଦିଆଯିବ । ଏହି ପଡ଼ିଆରେ ହିଁ ଯୁଦ୍ଧ ହେବ । ଏଠାରେ ରହିବା ବଡ଼ ବିପଦ୍‌ଜନକ । ଆମ ଭଳି ତୁମେମାନେ ମଧ୍ୟ ପଳାଇ ଆସ ।''

ସମସ୍ତେ ଏକ ସଙ୍ଗରେ କହିଲେ, ''କ'ଣ ହେଲା ! ତୁମେ ଆଶା କରୁଛ ଯେ ଆମେ ଜର୍ମାନ୍‌ମାନଙ୍କ ସହ ପଳାଇଯିବୁ ?''

ସେଠାରେ ରହିବା ଅବଶ୍ୟ ବିପଦ୍‌ଜନକ ଥିଲା । ପୋଲଟି ସେଠାରୁ ମାତ୍ର ପଚାଶ ମିଟର ଦୂରରେ ଥିଲା । ପୋଲର ଅପର ପାର୍ଶ୍ୱରେ ଥିବା ତୋପ-କମାଣ ଆମକୁ ଦିଶୁଥିଲା । ରୁଷ୍ ସୈନ୍ୟମାନଙ୍କୁ ବାଧା ଦେବାକୁ ବୋଧହୁଏ ଜର୍ମାନ୍‌ମାନେ ଚେଷ୍ଟା କରୁଥାନ୍ତି । ସେଭଳି ପରିସ୍ଥିତିରେ କ'ଣ କରିବାକୁ ହେବ କେହି କିଛି କହିପାରୁ ନଥା'ନ୍ତି ।

ପ୍ରତ୍ୟେକ ବ୍ୟକ୍ତିଗତ ଭାବରେ ନିଜ ନିଜ ନିଷ୍ପତ୍ତି ନେଉଥିଲେ । ଅଧିକ ରାତିରେ ପକେଟମାର୍ ଦୁଇଜଣ ସେମାନଙ୍କର ଜିନିଷ ପତ୍ର ଧରି ପୋଲ ଆଡ଼କୁ ପଳାଇଗଲେ । ଅନ୍ୟ ସମସ୍ତେ ସେହି ପାଳଗଦା ପାଖରେ ରହିଲୁ । କେହି ଶୋଇଲେ ନାହିଁ କିମ୍ୱା କଥାବାର୍ତ୍ତା ବି ହେଲେ ନାହିଁ । ଆମେମାନେ ପୋଲର ବିସ୍ଫୋରଣ ଶବ୍ଦ ଶୁଣିବାକୁ କାନଡେରି ରହିଲୁ । ସ୍ୱାଧୀନତାର ମହକ ଆମକୁ ଏମିତି ସମ୍ମୋହିତ କରିଦେଇଥିଲା ଯେ ଆମେମାନେ ଆଦୌ ମରିବାକୁ ଚାହୁଁ ନଥିଲୁ । ଟ୍ରକ୍ ଭର୍ତ୍ତି ସୈନ୍ୟମାନେ ଅନବରତ ରାସ୍ତାରେ ବୁଲୁଥିଲେ । ସକାଳ ଅପେକ୍ଷା ସନ୍ଧ୍ୟାରେ କମ୍ ସଂଖ୍ୟକ ବେସାମରିକ ଲୋକ ରାସ୍ତାରେ ଦୃଷ୍ଟି ଗୋଚର ହେଉଥିଲେ । ଶେଷରେ ପାଦତଳ ଭୂମି କମ୍ପି ଉଠିଲା । ବିସ୍ଫୋରଣରେ ପୋଲଟି ଉଡ଼ିଗଲା । ଅବଶ୍ୟ ଆମ ପାଳଗଦାର କୌଣସି କ୍ଷତି ହୋଇ ନଥିଲା ଏବଂ ଆମେମାନେ ମଧ୍ୟ ଅକ୍ଷତ ରହିଥିଲୁ । ଆମ ମନ ଉପରେ ଗୁରୁତର ଚାପ ପଡୁଥିଲା । ପୋଲର ବିସ୍ଫୋରଣ ଆମକୁ ଅଧିକ ବ୍ୟସ୍ତ ବିବ୍ରତ କରି ଦେଇଥିଲା । ଆମେ ଅତ୍ୟନ୍ତ କ୍ଲାନ୍ତି ଅନୁଭବ କରୁଥିଲୁ । ତଥାପି ଟିକେ ନିଦ ହୋଇଗଲା । ଏକ ଭୟଙ୍କର ଶବ୍ଦରେ ନିଦ ଭାଙ୍ଗିଗଲା । ଆମ ସାମନାରେ ଓ ପଛପଟରେ ବୋମା ବିସ୍ଫୋରଣ ହେଲା । ସେଥିରୁ ଗୋଟିଏ ଯଦି ସିଧା ଆମ ଉପରେ ପଡ଼ିଥାନ୍ତା ଆମେ ସମସ୍ତେ ଶେଷ ହୋଇ ଯାଇଥାଆନ୍ତୁ । କିନ୍ତୁ ଲୁଚିବାର ଅନ୍ୟ କୌଣସି ସ୍ଥାନ ନଥିଲା । ଆମେମାନେ ଏମିତି ଉନ୍ମୁକ୍ତ ସ୍ଥାନରେ ରହୁଥିଲୁ ଯେ ଆମମାନଙ୍କୁ ଲକ୍ଷ୍ୟସ୍ଥଳ କରିବା ଅତି ସହଜ ଥିଲା । ରାତିସାରା ଅବିଶ୍ରାନ୍ତ ବୋମା ବର୍ଷଣ ଚାଲିଲା । ମୁଁ ସ୍ୱାଧୀନତାର ଦ୍ୱାର ଦେଶରେ ଅବସ୍ଥାନ କରୁଥିଲେ ସୁଦ୍ଧା ତାହା ମୋ' ଜୀବନର ସବୁଠାରୁ ବିପଦ୍‌ଜନକ ରାତ୍ରି ଥିଲା ।

ପ୍ରଭାତରେ ଗୁଳି ଗୋଳା ଆବାଜ ବନ୍ଦ ହୋଇଗଲା । ଜାନେକା ପଦାକୁ ବାହାରି ପରିସ୍ଥିତି କ'ଣ ତାହା ଦେଖିବାକୁ ଗଲା । ସେ ପାଳଗଦା ଭିତରୁ ଚାଲିଯାଇ ବହୁତ ସମୟ ବାହାରେ ରହିଲା ।

ବହୁ ସମୟ ପରେ ତା'ର କଣ୍ଠସ୍ୱର ଶ୍ରୁତି ଗୋଚର ହେଲା । ସେ କହିଲା, ''ସମସ୍ତେ ପଦାକୁ ବାହାରି ଆସ । ଆମର ଚତୁର୍ଦ୍ଦିଗରେ ରୁଷିଆର ସୈନ୍ୟ ରହିଛନ୍ତି ।''

ଆମେ ସବୁ ଗାତ ଭିତରୁ ବାହାରି ପଡ଼ିଲୁ । ଦେଖିଲୁ ସତକୁ ସତ ଲାଲ ତାରା ଚିହ୍ନିତ ଟୋପି ଲଗାଇ ସର୍ବତ୍ର ରୁଷିଆର ସୈନ୍ୟମାନେ ଛାଇ ହୋଇଥିଲେ । ବନ୍ଧୁକଧାରୀ ସେହି ସୈନ୍ୟମାନେ ଗୁଳି ଚଳାଇବାକୁ ସର୍ବଦା ପ୍ରସ୍ତୁତ ଥିଲେ । ଆମମାନଙ୍କୁ ସନ୍ଦେହ କରି ସେମାନେ ଚାରିପଟେ ଘେରିଗଲେ । କିନ୍ତୁ ଯେତେବେଳେ ଜାଣିଲେ ଯେ ଆମେମାନେ ଆଉସ୍‌ଭିଟ୍‌ଜ୍ ଓ ଅନ୍ୟାନ୍ୟ କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପରୁ ଆସିଥିଲୁ, ଆମକୁ ସଙ୍ଗେ ସଙ୍ଗେ ଘେରାଉ ମୁକ୍ତ କରିଦେଲେ ।

''..ଏହିଠାରେ ଅପେକ୍ଷା କର, କିଛି ସମୟ ପରେ ଆମେ ଆସିବୁ ଏବଂ ତୁମ୍ଭମାନଙ୍କୁ ପଣ୍ଟୁନ ପୋଲ ପାରି କରିଦେବୁ ।'' ସେମାନେ କହିଲେ ।

ସେମାନେ ଆମକୁ ଯେଉଁ ଗାଁକୁ ନେଇଗଲେ, ସେଠାରେ ସୈନ୍ୟମାନେ ଭର୍ତ୍ତି ହୋଇଥିଲେ । ଆମେ ଗୋଟେ ଖାଲି ଘର ଖୋଜିଲୁ । ଯେଉଁଠାରେ ଆମେ ଧୁଆ ଧୋଇ ହୋଇ ଟିକେ ଶୋଇପଡ଼ିବୁ । ଖାଇବା କଥା ପଛ । ସେଠାକୁ ଯିବା ବାଟରେ ଜଣେ କ୍ୟାପ୍ଟେନ୍ ଆମକୁ ଆଉସ୍‌ଭିତ୍‌ଜ୍ ବନ୍ଦୀ ଶିବିର ବିଷୟରେ ପଚାରିଲେ । ''ତୁମେମାନେ କିପରି ସେଠାରେ ନିର୍ଯ୍ୟତନା ସହ୍ୟ କରିପାରିଲ ?'' ସେହି ଗୋଟିଏ କଥା ବାରମ୍ବାର ପଚାରୁଥିଲେ । ''ଖାଇବାର ଅଛି ?'' ଆମ୍ଭେମାନେ ସେ ପ୍ରଶ୍ନରେ ବିସ୍ମିତ ହୋଇଯାଇଥିଲୁ । ''ଅପେକ୍ଷା କର, ମୁଁ ତୁମମାନଙ୍କ ପାଇଁ କିଛି ଖାଇବା ଯୋଗାଡ଼ କରେ ।''

ଠିକ୍ ସେତିକି ବେଳେ ମଝି ରାସ୍ତାରେ ଗୋଟାଏ ବାରାହା ଚରି ଚରି ଯାଉଥିଲା । କ୍ୟାପ୍‌ଟେନ୍ ସେ ବରାହକୁ ଗୁଳି କରି ମାରିଦେଲେ ଓ ଆମକୁ କହିଲେ ''ହେଇ ତୁମ ଖାଦ୍ୟ ।''

ମୁଁ ଗୋଟାଏ ଚଉଡ଼ା ଶଯ୍ୟାରେ ଜର୍ମାନୀ ନିର୍ମିତ ଏକ ଆରାମ୍ ଦାୟକ ଚାଦର ଘୋଡ଼ାଇ ହୋଇଥାଏ । ଆମେମାନେ ସେହି ଆବର୍ଜନା ଗଦା ସହ କ୍ୟାମ୍ପ୍ ପୋଷାକ ସବୁ ଜଳେଇ ଦେଇ ଆସିଥିଲୁ । ପ୍ଲେଗ୍ କୀଟ ମଧ୍ୟ ସେହି ନିଆଁରେ ଶେଷ ହୋଇଯାଇଥିଲେ ।

ଆମେମାନେ ସଫା ସୁତୁରା ହୋଇ ଗୋଟିଏ ପରିତ୍ୟକ୍ତ ଘର ଭିତରେ ଥିବା ପୋଷାକ ପିନ୍ଧିଥିଲୁ । ମୋର ସମସ୍ତ ପୋଷାକ ମଧ୍ୟରୁ କେବଳ ଧୂସର ବର୍ଣ୍ଣର କ୍ୟାମ୍ପ୍ ସ୍କର୍ଟଟି ନିଆଁରୁ ବଞ୍ଚି ଯାଇଥିଲା । ସେହି ସ୍କର୍ଟ୍‌ର ପଛରେ ଧଳା ରଙ୍ଗରେ ଚିତ୍ରିତ ହୋଇଥିଲା କ୍ରସ୍ ଚିହ୍ନଟି । ତାକୁ ମୁଁ ଏକ ସ୍ମୃତି ଚିହ୍ନ ଭାବରେ ରଖିଥିଲି । ମୋତେ ବେଶ୍ ଆରାମ୍ ଓ ଉଷୁମ୍ ଲାଗୁଥିଲା । କିନ୍ତୁ ମୁଁ ଖୁସି ନଥିଲି । ତାହାର କାରଣ ମଧ୍ୟ ମୁଁ ଜାଣି ପାରୁ ନଥିଲି । ମୁଁ ବାରମ୍ବାର ନିଜକୁ କହୁଥିଲି, ''ଖୁସି ରୁହ । ତୁମେ ତ ବର୍ତ୍ତମାନ ସ୍ୱାଧୀନ ।'' କିନ୍ତୁ ତା'ର କୌଣସି ଫଳ ହେଉନଥିଲା । ମୋ ମନର ଦୁଃଖ-ଭାବ ଯାଉ ନଥିଲା । ତାହା ମୋତେ ଭୀଷଣ କଷ୍ଟ ଦେଉଥିଲା ।

ଆରାମଦାୟକ ଜର୍ମାନ୍ କଂଫଟର ଭିତରେ ଶୋଇ ରହି ମୋ'ର ଦୁଃଖଦାୟକ ପରିସ୍ଥିତିକୁ ମୁଁ ଉପଲବ୍ଧି କଲି । ମୁଁ ଏକାକିନୀ । ମୋ' ପାଇଁ କେହି କେଉଁଠାରେ ଅପେକ୍ଷା କରିନଥିଲା କିମ୍ବା କେହି ମୋ ପାଖକୁ ଆସିବାର ମଧ୍ୟ ନଥିଲା । ନିଜ ଜନ୍ମମାଟିରେ କୌଣସି ଉଦ୍ଭିଦର ଚାରା ଉଧାଇ ପାରେ । କିନ୍ତୁ ମୁଁ ମୋ ଜନ୍ମମାଟିରୁ ନିର୍ମମ ଭାବେ ବଞ୍ଚିତ

ହୋଇଥିଲି । ହିଟଲର୍‌ର ଯନ୍ତ୍ରଣା ଶିବିରର ଅସୀମ ଦୁଃଖ ନିର୍ଯାତନା ସହ୍ୟ କରି ଯେଉଁ ଜୀବନକୁ ବଞ୍ଚାଇ ରଖିଲି, ତାହାର ମୂଲ୍ୟ କ'ଣ ? ସେହି ମୁହୂର୍ତ୍ତରେ ଏ ଜୀବନକୁ ନେଇ ମୁଁ କ'ଣ ବା କରିବି, କିଛି ଭାବି ପାରୁ ନଥିଲି ।

ମଇ ୯ ତାରିଖ କଥା ମୋ'ର ସ୍ପଷ୍ଟ ମନେ ଅଛି । ସେଦିନ ଜର୍ମାନ୍‌ମାନେ ଆତ୍ମ ସମର୍ପଣ କରିଥିଲେ । ଆମେମାନେ ଯୁଦ୍ଧ କ୍ଷେତ୍ରର ଏକ ନିକଟସ୍ଥ ଗ୍ରାମରେ ଅବସ୍ଥାନ କରୁଥିଲୁ । ଖୁବ୍ ଚମତ୍କାର ଓ ସୁସଜ୍ଜିତ ଘରଟି ଆମେ ପାଇଥିଲୁ । ସେହି ଘରେ ସେହି ବୃଦ୍ଧା ମହିଳା ଓ ତାଙ୍କ ଝିଅ ରହୁଥିଲେ । ହଙ୍ଗେରୀ ଓ ସ୍ଲୋଭାକ୍‌ର ଦୁଇ ମହିଳା ମଧ୍ୟ ସେଠାରେ ରହୁଥିଲେ ।

ଖୁବ୍ ସକାଳୁ ସକାଳୁ ଜର୍ମାନୀର ଆତ୍ମସମର୍ପଣ ସମ୍ବାଦ ପ୍ରଚାରିତ ହୋଇଥିଲା । ହଠାତ୍ ଆମ ଦରଜାରେ ବନ୍ଧୁକ ଆଘାତର ଶବ୍ଦ ଶୁଭିଲା । ଆମେମାନେ ଭୀଷଣ ଡରିଗଲୁ ସତ କିନ୍ତୁ ଦରଜା ଖୋଲିଦେଲୁ । ପ୍ରାୟ ୧୫/୨୦ ଜଣ ସୈନ୍ୟ ଘର ଭିତରକୁ ପଶି ଆସି କହିଲେ, ''ଝିଅମାନେ, ଯୁଦ୍ଧ ଶେଷ ହୋଇଛି ଏବଂ ଜର୍ମାନ୍‌ମାନେ ଆତ୍ମ ସମର୍ପଣ କରିଛନ୍ତି ।'' ସେମାନେ ଅତ୍ୟନ୍ତ ଆନନ୍ଦରେ ଆମମାନଙ୍କୁ ଟେକି ନେଇ ଶୂନ୍ୟକୁ ଫୋପାଡ଼ି ଦେଲେ ଓ ପୁଣି ଧରି ନେଲେ । ସେମିତି ତଳ ଉପର ହୋଇ ମୋତେ ଜଣାଗଲା ଯେମିତି ସମଗ୍ର ପୃଥିବୀଟା ଘୂରୁଛି ।

ମୁଁ ଆଉସ୍‌ଭିତ୍‌ଜରୁ ବଞ୍ଚି ଆସିଲି । ଜନ୍ମସ୍ଥାନ ଲୁବିଲିନ୍‌କୁ ଯିବି । ମୁଁ ସେହି କଥା ହିଁ ବାରମ୍ବାର ପୁନରାବୃତ୍ତି କରିବାକୁ ଲାଗିଲି । ତା' ପରେ ଆମେ ମୃତ ଓ ଜୀବିତଙ୍କ ଉଦ୍ଦେଶ୍ୟରେ ଅର୍ପଣ କରି ହୁଇସ୍କି ପାନ କଲୁ ଓ ହସ କାନ୍ଦରେ ଗଡ଼ିଗଲୁ । ଆମେ ଯେ ସାଧାରଣ ନାଗରିକଙ୍କ ଭଳି ସ୍ୱାଭାବିକ ଜୀବନ ଯାପନ କରିପାରିବୁ ଏହା ଆଦୌ ଭାବି ପାରୁ ନଥିଲୁ । ମୁଁ ଯେଉଁ ଅକଥନୀୟ ନିର୍ଯାତନା ଭୋଗିଥିଲି ତାହାର କ୍ଷତିପୂରଣ ବା ପୁରସ୍କାର ପାଇବି କି ? କିଏ ଜାଣେ ?

■■■

– ୪୦ –

# ଘରବାହୁଡ଼ା ବାଟ

ପୋଲାଣ୍ଡର ଲୋଜ୍‌ରୁ ଆସିଥିବା ବୃଦ୍ଧା ମହିଳା ଜଣକ ମୋତେ କହିଲେ, ''ମୁଁ ତୁମର ଗୋଡ଼କୁ ତୁମ ସ୍କାର୍ଫରେ ଲୁହାରଡ଼ ସହ ବାନ୍ଧି ଦେଇଛି । କାରଣ ଯେ କୌଣସି ମୁହୂର୍ତ୍ତରେ ଦୁର୍ଘଟଣା ଘଟିପାରେ ।'' ମୁଁ ମଧ୍ୟ ଶୋଇଥିବା ବେଳେ ସ୍କାର୍ଫରେ ମୋ' ପାଦ ବନ୍ଧା ହୋଇଥିବାର ଅନୁଭବ କରୁଥିଲି ।

''ଗାଡ଼ିଟା ଖୋଲା ମେଲା । ଯଦି ଗାଡ଼ିଟା ହଠାତ୍ କେଉଁଠାରେ ଅଟକି ଯାଏ ତେବେ ତୁମେ ଏକାବେଳେ ଉଡ଼ିଯିବ । '' ଗାଡ଼ିର ଘର୍ଘର ଶବ୍ଦ ଭିତରେ ମୁଁ ତାଙ୍କର ସେହି ଅବରୁଦ୍ଧ କଣ୍ଠସ୍ୱର ଶୁଣୁଥିଲି । ସେ ମନକୁ ମନ କହୁଥିଲେ, ''ଭଦ୍ର ମହିଳା ତ ବସିବା ଅବସ୍ଥାରେ ଶୋଇଯାଇଛନ୍ତି । ଯଦି କୌଣସି ଦୁର୍ଯୋଗ ଘଟେ ତେବେ ଗାଡ଼ିରୁ ଖସି ପଡ଼ିବା ସହଜ । ସେପରି ଅବସ୍ଥାରେ ଗୋଡ଼ଟା ବନ୍ଧା ହୋଇଥିଲେ, ସେ ରକ୍ଷା ପାଇଯାଇ ପାରନ୍ତି ।''

ମୁଁ ବାସ୍ତବରେ ଶୋଇ ନଥିଲି । ମୁଁ ତନ୍ଦ୍ରାଭିଭୂତ ଥିଲି । ଢୁଳାଉଥିଲି ଓ ମଝିରେ ମଝିରେ ସ୍ୱପ୍ନ ମଧ ଦେଖୁଥିଲି । ମୁଁ ଯେ ଘରମୁହାଁ ଚାଲିଛି, ସେତିକି ମୋତେ ଯଥେଷ୍ଟ ସନ୍ତୋଷ ପ୍ରଦାନ କରୁଥିଲା । ଅବଶ୍ୟ ସେହି ମୁହୂର୍ତ୍ତରେ ମୋ'ର ଘର ବୋଲି କିଛି ନଥିଲା । ତଥାପି ନୂତନ ପୋଲାଣ୍ଡ ସାଧାରଣତନ୍ତ୍ରରେ ମୋ'ର ନିଜର ବୋଲି କିଛି ଥିବ ବୋଲି ମୁଁ ଭାବୁଥିଲି । ଗୋଟାଏ ଖୋଲା ଗାଡ଼ିରେ ସେ ଯାତ୍ରା ଆଦୌ ଆରାମ ଦାୟକ ନଥିଲା । ବିଶେଷତଃ ସେହି ଡବାରେ ବୋଝେଇ ହୋଇଥିବା ଲୁହାଛଡ଼ଗୁଡ଼ାକ ବେଳେବେଳେ ଖୁଣ୍ଟ ହୋଇଯାଉଥିଲା । ତଥାପି ମୁଁ ଯେ ଘରମୁହାଁ ଚାଲିଛି ସେତିକି ମୋ ପାଇଁ ଯଥେଷ୍ଟ ଥିଲା । ଅସଲ କଥା ସେଭଳି ଗାଡ଼ିରେ ସ୍ଥାନ ପାଇବା ମୋ' ପକ୍ଷରେ ସହଜ କଥା ନଥିଲା । ମଇ ୯ ତାରିଖରେ କ୍ଲାରା ଓ ହଙ୍ଗେରୀୟ ମହିଳାଙ୍କର ସାଙ୍ଘାତିକ ପାକସ୍ଥଳୀ ଯନ୍ତ୍ରଣା ହେବାରୁ ସେମାନଙ୍କୁ ସାମରିକ ଆମ୍ବୁଲାନ୍‌ସ ଗାଡ଼ିରେ ରୋବେଲ୍ ହସ୍‌ପିଟାଲକୁ ନିଆଯାଇଥିଲା । ତା' ପରଦିନଠାରୁ ମୁଁ ଘରକୁ ଫେରିବା ପ୍ରସ୍ତୁତିରେ ଲାଗିଲି । ଅବଶ୍ୟ ସେ ପ୍ରସ୍ତୁତି ଥିଲା ମନସ୍ତାତ୍ତ୍ୱିକ, କାରଣ ଅନ୍ୟ କୌଣସି ପ୍ରକାର ପ୍ରସ୍ତୁତିର ପ୍ରଶ୍ନ ହିଁ ନଥିଲା । ପ୍ରତିଦିନ ମୁଁ ଏବଂ ବୃଦ୍ଧା ମହିଳା ତାଙ୍କ ଝିଅ ସହ ଷ୍ଟେସନ୍‌କୁ ଯାଉଥିଲୁ । ଆମେ ଭାବୁଥିଲୁ ଯଦି ଭାଗ୍ୟରେ ଥାଏ, ଗାଁକୁ ଯିବାପାଇଁ କାଳେ କୌଣସି ଗାଡ଼ି ମିଳିଯାଏ । ସେହି କ୍ଷୁଦ୍ର ଜର୍ମାନ ସହରରେ ମୋ'ର ଯେମିତି ଶ୍ୱାସରୁଦ୍ଧ ହୋଇଯାଉଥିଲା । ସେହି ସହରରେ ନିଜ ନିଜ ବଗିଚାରେ କାର୍ଯ୍ୟରତ ଥିବା ଓ ଦୈନନ୍ଦିନ ସ୍ୱାଭାବିକ କାର୍ଯ୍ୟ କରୁଥିବା ଧଳା ଆପ୍ରନ୍ ବା ବହିର୍ବାସ ପିନ୍ଧିଥିବା ସେହି ମହିଳାମାନଙ୍କ ଦୃଶ୍ୟକୁ ମୁଁ ସହ୍ୟ କରିପାରୁ ନଥିଲି । ମୁଁ ସବୁବେଳେ ମୋ ସାଙ୍ଗରେ ମୋର ଯଥା ସର୍ବସ୍ୱ ନେଇ ଯାଉଥିଲି ସେହି ନୂଆ ବେଡ୍ ସିଟ୍ ଏବଂ ''ମନୋଗ୍ରାମ୍'' ଅଙ୍କିତ (ଦୁଇ ବା ତତୋଽଧିକ ଅକ୍ଷରରେ ରଚିତ ଚିହ୍ନ)ଧଳା ଟେବୁଲ୍ କ୍ଲଥ୍ ଖଣ୍ଡିକ । ଖାଦ୍ୟ ଦ୍ରବ୍ୟ ବିଶେଷ କିଛି ନଥିଲା । ଅବଶ୍ୟ ସେହି ମୁହୂର୍ତ୍ତରେ ଖାଦ୍ୟ ବିଷୟରେ ଆମର ବିଶେଷ ଆଗ୍ରହ ନଥିଲା । କେବଳ ଘରକୁ ଯିବାର ସୁଯୋଗ ଖୋଜିବାରେ ଆମେ ମନୋନିବେଶ କରିଥିଲୁ ।

ମଇ ୨୧ ତାରିଖ କଥା ମୋର ସ୍ପଷ୍ଟ ମନେ ଅଛି । ପ୍ରତିଦିନ ଭଳି ସେଦିନ ମଧ

ଆମେ ଷ୍ଟେସନ୍‌କୁ ଗଲୁ । ରେଲ୍ ଲାଇନ୍‌ର ଅଧିକାଂଶ ଶାଖାରେ ବୁଲି ବୁଲି ଗାଡ଼ି ଦେଖୁଥିଲୁ । ଗୋଟାଏ ଟ୍ରେନ୍‌ରେ ଦେଖିଲୁ ବହୁତ ଗୁଡ଼ିଏ ଡବାରେ ଲୁହାରଡ଼ ବୋଝେଇ ହୋଇଥିଲା । ସେହି ରଡ଼ ପରିବହନ ଗାଡ଼ି ସହ ଦଳେ ଋଷିଆନ୍ ସୈନ୍ୟ ଯାଉଥିଲେ ଜଗୁଆଳୀ ଭାବରେ । ତାକୁ ଦେଖି ମନେ ମନେ ଭାବିଲି, ''ଏ ଟ୍ରେନ୍ କୁଆଡ଼କୁ ଯାଇ ପାରୁଥାଏ ?'' ଖବର ନେଲି ଯେ ତାହା ସୋଭିଏଟ୍ ୟୁନିୟନ୍‌କୁ ଯାଉଥିଲା । ମନେ ମନେ ଭାବିଲି, କେଉଁବାଟେ ଯିବ, ନିଶ୍ଚୟ ପୋଲାଣ୍ଡ ଭିତରେ ଯିବ । ଅଧିକ କିଛି ନ ଭାବି ମୁଁ ସେହି ଗାଡ଼ି ଉପରେ ଚଢ଼ିଗଲି । ମୋ ପଛେ ପଛେ ସେ ମା' ଝିଅ ମଧ ଗାଡ଼ିକୁ ଚଢ଼ିଗଲେ ।

ଟ୍ରେନ୍ ହଠାତ୍ ଚାଲିଲା । ଆମେ ତା' ଭିତରେ ଥିଲୁ । ରାସ୍ତା କଡ଼ରେ କେତେ ପଡ଼ିଆ, ଉପତ୍ୟକା, ଜଙ୍ଗଲ ଓ ଗାଈ ଗୋରୁ ଘାସ ଚରୁଥିବାର ଦୃଶ୍ୟ ଦେଖି ଦେଖି ଗଲି । ମୁଁ ସେହି ସବୁଜ ମନୋ ମୁଗ୍ଧକର ପଲ୍ଲୀ ଦୃଶ୍ୟ ଦେଖି ଚିନ୍ତାରେ ମଧ ପଡ଼ିଗଲି । ସେହି ନିସ୍ତବ୍ଧତା ଅବିଶ୍ୱାସ୍ୟ ଥିଲା । ଯୁଦ୍ଧ ବିଧ୍ୱସ୍ତ ରାଜ୍ୟକୁ ନିସ୍ତବ୍ଧତା ଓ ସ୍ୱାଭାବିକତା ଏତେ ଶୀଘ୍ର ଫେରିଲା କିପରି ?

ପ୍ରାୟ ଘଣ୍ଟାଏ ପରେ ଗାଡ଼ି ଗୋଟିଏ ଷ୍ଟେସନ୍‌ରେ ଛିଡ଼ା ହେଲା । ରୁଷିଆର ଜଣୈକ ଯୁବ ସୈନିକ ଆମମାନଙ୍କୁ କହିଲା, ''ତୁମମାନଙ୍କୁ ଏ ଗାଡ଼ିରୁ ଓହ୍ଲେଇ ଯିବାକୁ ପଡ଼ିବ । ଏହା ଏକ ମିଲିଟାରୀ ଗାଡ଼ି । ବେସାମରିକ ଲୋକ ଏହି ଗାଡ଼ିରେ ଯିବା ନିୟମ ବିରୋଧୀ ଅଟେ । ମନେ ମନେ ଭାବିଲୁ ''କ'ଣ କରିବା ଆମେ ?'' ଆମେ ଅବଶ୍ୟ ଟ୍ରେନ୍‌ରୁ ଓହ୍ଲାଇ ପଡ଼ିଲୁ । କିନ୍ତୁ ସୈନିକଟି ଚାଲିଯିବା ପରେ ପୁଣି ଗାଡ଼ିରେ ଚଢିଗଲୁ । ପରିବର୍ତ୍ତୀ ଷ୍ଟେସନ୍‌ରେ ଆମେମାନେ ପୁନର୍ବାର ଅନୁରୂପ ଅବସ୍ଥାରେ ପଡ଼ିଲୁ । ସୈନିକଟି ପାଟିକଲା, ଆମକୁ ବୁଝାଇଲା ଏବଂ ଆଦେଶ ଦେଲା; ଆମେ ଓହ୍ଲେଇ ପଡ଼ିଲୁ । ସେ ଏକ ସଙ୍ଗେ ସବୁ ଗାଡ଼ିକୁ ଜଗି ପାରୁ ନଥିଲା । ତେଣୁ ସେ ସେଠାରୁ ପଳାଇ ଯିବା ସଙ୍ଗେ ସଙ୍ଗେ ଆମେମାନେ ପୁନର୍ବାର ଗାଡ଼ି ଉପରକୁ ଚଢ଼ିଗଲୁ ।

ସେହିଭଳି ଭାବରେ ଲୁହାଛଡ଼ ଉପରେ ମୋର ପ୍ରଥମ ରାତିଟି କଟିଗଲା । ଘୋଡ଼େଇ ହେବା ପାଇଁ ମୋ' ପାଖରେ କମ୍ବଳ ଖଣ୍ଡେ ମଧ ନଥିଲା । ଅଥଚ ତାହା ଶୀତ ରାତି ଥିଲା । କିନ୍ତୁ ସେହି ଥଣ୍ଡା ସତ୍ତ୍ୱେ ମୁଁ ଢୁଳାଉଥିଲି । କାଳେ ମୁଁ ତଳକୁ ଖସି ପଡ଼ିବି, ବୃଦ୍ଧା ସହଯାତ୍ରିଣୀ ମୋ' ଗୋଡ଼କୁ ଲୁହା ରଡ଼ରେ ବାନ୍ଧି ଦେଇଥିଲେ । ରାତ୍ରିରେ ଟ୍ରେନ୍‌ଟି ଅବିଶ୍ରାନ୍ତ ଦୀର୍ଘପଥ ଦୌଡୁଥିଲା । କେଉଁଠାରେ ବା ଧୀରେ ଧୀରେ ଚାଲୁଥିଲା । ପୁଣି ଅଟକି ଯାଉଥିଲା । ଭାବୁଥିଲି ଟ୍ରେନ୍ ଯଦି ସେହିଭଳି ମନ୍ଥର ଗତିରେ ଚାଲେ, ମୁଁ କଷ୍ଟ ସହି କେତେ ସମୟ ଯେ ତିଷ୍ଠି ପାରିବି ତାହାର କିଛି କୂଳ କିନାରା ପାଉ ନଥିଲି । ଖାଦ୍ୟ ଭିତରେ ଆମ ପାଖରେ ଥିଲା ଗୋଟେ ରୁଟି ଓ କେତେଖଣ୍ଡ ଚିନି ତିଆରି କାଣ୍ଡି । ଆମକୁ

ଯଦି ସେହି ଟ୍ରେନ୍‌ରେ ସପ୍ତାହେ ରହିବାକୁ ପଡ଼େ ଆମେ କ'ଣ କରିବୁ ?''

ବୃଦ୍ଧା ଜଣକ ପାଟିକରି କହିଲେ, ''ଏ ମା' ହେଇ ଗୋଟାଏ ସୈନିକ ଆମ ଆଡ଼କୁ ଆସୁଛି । ସେ ଆସୁଛି ଆମକୁ ଓହ୍ଲାଇ ଦେବାକୁ । ସୈନିକଟି ଆମକୁ କିଛି କହିବା ପୂର୍ବରୁ ଆମେ ଗାଡ଼ିରୁ ଓହ୍ଲାଇ ପଡ଼ିଲୁ । ସେ ଯିବା ପରେ ଆମେ ପୁନର୍ବାର ଗାଡ଼ିରେ ବସିଗଲୁ । ସୈନିକ ସହ 'ମୂଷା- ବିରାଡ଼ି' ଖେଳ ଖେଳି ଖେଳି ମୋତେ ବଡ଼ ବିରକ୍ତ ଲାଗିଲା । ମଧ୍ୟାହ୍ନ ଭୋଜନ ପରେ ସୈନିକଟି ଯେତେବେଳେ ପୁନର୍ବାର ଆମକୁ କହିଲା, ''ତୁମେମାନେ ଏ ଗାଡ଼ିରେ ଯାଇ ପାରିବ ନାହିଁ ।'' ମୁଁ ତାକୁ ପଚାରିଲି, ''ଆମେ କେଉଁଠାରୁ ଆସୁଅଛୁ ତୁମେ ଜାଣିଛ କି ?'' ମୁଁ ସେହି ଗାଡ଼ି ଭିତରୁ କହିଲି, ''ମୁଁ ଜଣେ କମ୍ୟୁନିଷ୍ଟ, ମୋ ଦେଶ ପୋଲାଣ୍ଡରେ ସାମ୍ୟବାଦୀ ଶାସନ ପ୍ରତିଷ୍ଠା ହେବାକୁ ଯାଉଛି । ମୁଁ ସେଥିପାଇଁ ସେଠାକୁ ଫେରୁଛି । ସେଠାରେ ମୋ'ର ଉପସ୍ଥିତି ସେମାନେ ଆବଶ୍ୟକ ମନେକରି ପାରନ୍ତି । ଅଥଚ ମୁଁ କ୍ଷୁଧାର୍ତ୍ତ କି ନା ମୋତେ ତାହା ନ ପଚାରି, ମୋତେ କେବଳ ଘଉଡ଼ାଇ ହଇରାଣ କରିବାରେ ଲାଗିଛ ।'' ମୁଁ ଋଷିଆନ୍ ଭାଷା ଭଲ ଭାବରେ ଜାଣିଥିଲି । ରାଗିଥିବାରୁ ମୋର କଥାରେ ଯେମିତି ତେଣା ଲାଗିଗଲା । ପ୍ରଥମ ଥର ପାଇଁ ମୁଁ ତା ମୁହଁକୁ ଅନେଇଲି । କଞ୍ଚା ଯୁବକଟିଏ । ଅଠର ବର୍ଷରୁ ଅଧିକ ହେବ ନାହିଁ ତାହାର ବୟସ । ସେ ବିସ୍ମିତ ହୋଇ ମୋତେ ଅନେଇ ରହିଲା ଯେପରିକି ସେ ମୋତେ ପ୍ରଥମ ଥର ପାଇଁ ଦେଖୁଛି । ମୁଁ ଟିକେ ହସି ଦେଲି, ସେ ମଧ ସ୍ମିତ ହାସ୍ୟରେ ତାହାର ଉତ୍ତର ଦେଇ ଚାଲିଗଲା ।

ବୃଦ୍ଧା ଜଣକ ପଚାରିଲେ, ''ତୁମର ଏ ପ୍ରକାର କଥାବାର୍ତ୍ତାରେ ଆମର କି ଲାଭ ହେଲା ? ସେ ହୁଏତ ଜଣେ ବଡ଼ ଅଫିସର୍‌ଙ୍କୁ ଡାକି ଆଣିବ ଏବଂ ଆମକୁ ପୂରା ଘଉଡ଼ାଇ ଦେବ । କିନ୍ତୁ ସେ ସେମିତି କିଛି କଲା ନାହିଁ । ବରଂ ସେଦିନ ସନ୍ଧ୍ୟାରେ ଗୋଟିଏ ଆର୍ମି ରୁଟି (ସୈନିକମାନଙ୍କ ପାଇଁ ଉଦ୍ଦିଷ୍ଟ ରୁଟି) ଗରମ କଫି ଓ କପେ ଝୋଳ ଦେଇଗଲା । ପରେ ଗୋଟାଏ ଶୋଇବା ଗଦି ଓ ଦୁଇଟା କମଳ ଦେଇଗଲା । ଆମ ନିଜ ଚେଷ୍ଟାରେ ଦୁଇଡବା ମଝିରେ ଥିବା କୋଠରୀ (ବୁଥ୍) ଭିତରକୁ ଆମେ ପଳାଇଗଲୁ । ତାହା ଡବା ଅପେକ୍ଷା ଅଧିକ ଉଷୁମ ଲାଗିଲା । ସେହିଦିନଠାରୁ ସେ ଆମକୁ ପ୍ରତିଦିନ ଖାଦ୍ୟ ଯୋଗାଇବାକୁ ଲାଗିଲା । କିନ୍ତୁ କୌଣସି ପ୍ରଶ୍ନ ସେ ଆମକୁ ପଚାରୁ ନଥିଲା । ଜଣାଯାଉଥିଲା ଯେପରିକି ତାକୁ କଥା କହିବାକୁ ବାରଣ ଥିଲା ।

ଗୋଟେ ଷ୍ଟେସନ୍‌ରେ ଦୁଇଜଣ ପୋଲାଣ୍ଡ ସୈନ୍ୟ ଆମ ଡବାକୁ ଚଢ଼ିଲେ । ସେମାନେ ପୋଲାଣ୍ଡ-ସୈନ୍ୟ ପୋଷାକ ପିନ୍ଧିଥିଲେ ଏବଂ ସେମାନଙ୍କ ହ୍ୟାଟ୍‌ରେ ଇଗଲ ପକ୍ଷୀର ଚିହ୍ନ ଅଙ୍କିତ ହୋଇଥିଲା । ସେମାନଙ୍କୁ ଦେଖି ମୁଁ କ'ଣ ଦେଖୁଛି ଜାଣି ନ ପାରି ଆଖିକୁ ମଳି ଦେଲି । ''ହଁ ତ, ପୋଲାଣ୍ଡର ସୈନ୍ୟ ।'' କୁଆଡୁ ଆସିଲେ ସେମାନେ ?''

''ମ୍ୟାଡାମ୍, ଆମକୁ ଦେଖି ଏତେ ବିସ୍ମିତ ହେଉଛନ୍ତି କ'ଣ ?'' ମା' ତୁମେ ପୋଲାଣ୍ଡ ସୀମା ପାର ହୋଇଗଲଣି । ଏହା ହେଉଛି ପୋଲାଣ୍ଡ ।'' ପୋଲାଣ୍ଡ ନାମ ଶୁଣି ମୁଁ ହତବାକ୍ ହୋଇଯାଇଥିବା ଦେଖି ସେ ବାରମ୍ବାର ସେ କଥା କହୁଥିଲେ ।

ମୋ'ର ମନେ ପଡୁଛି, ସେହି ମୁହୂର୍ତ୍ତରୁ ମୁଁ ଯେମିତି ସେ ମାଟିରୁ ଏକ ସ୍ୱତନ୍ତ୍ର ବାସ୍ନା ବାରି ପାରୁଥିଲି । ଏପରିକି ସେ ଆକାଶ ମଧ୍ୟ ମୋତେ ଅଲଗା ଦେଖାଗଲା । ରାସ୍ତାଘାଟ ଜଙ୍ଗଲ ପାହାଡ଼ ସବୁ ଯେମିତି ସ୍ୱତନ୍ତ୍ର । ମୁଁ ଆନନ୍ଦରେ ଅଭିଭୂତା ହୋଇଗଲି । ମୁଁ ଗୀତ ଗାଇଲି ଓ ଆନନ୍ଦରେ ଚିତ୍କାର କଲି ।

ପୋଲାଣ୍ଡ ଖବର ସବୁ ଭଲ ତ ? ମୋତେ ଦୟାକରି କୁହନ୍ତୁ ଲୋକମାନେ କିପରି ଅଛନ୍ତି ? ଲୁବ୍‌ଲିନ୍‌କୁ ଯାଇଥିଲେ କି ? ୱାର୍ସ ଖବର ସବୁ କ'ଣ ? ପ୍ରଶ୍ନ ପରେ ପ୍ରଶ୍ନ ପଚାରି ମୁଁ ସେମାନଙ୍କୁ ବୁଡ଼ାଇ ପକାଇଲି ।

ପ୍ରଥମେ ସେମାନେ ମୋ' ସହ କଥାବାର୍ତ୍ତା କରିବାକୁ ଅନିଚ୍ଛୁକ ଥିଲେ । ମୁଁ ଅଧିକ ଚାପ ପକାଇବା ପରେ ସେମାନେ ଯାହା କହିଲେ ସେଥିରେ ମୋର ମେରୁଦଣ୍ଡ ଯେମିତି ଦୋହଲିଗଲା । ସେ ଦୁହେଁ ପରବର୍ତ୍ତୀ ଷ୍ଟେସନ୍‌ରେ ଗାଡ଼ିରୁ ଓହ୍ଲେଇଲାବେଳେ ଜଣେ ଆମକୁ କହିଲା, ''ତୁମେ ଜଣେ କମ୍ୟୁନିଷ୍ଟ ହୋଇଥିବାରୁ ଯୁଦ୍ଧ ପୂର୍ବରୁ ତୁମେ ଯେ ଜେଲ୍‌ରେ ଥିଲ କଦାପି ସେ କଥା କାହାକୁ କହିବ ନାହିଁ । ତୁମେ ଗ୍ୟାଙ୍ଗ୍‌ମାନଙ୍କ କଥା ଜାଣନା । ପୋଲାଣ୍ଡରେ ଶାନ୍ତି ନାହିଁ । ପ୍ରତିଦିନ ସେଠାରେ ଲୋକ ମରୁଛନ୍ତି । ସାବଧାନ ।'' ଏତିକି କଥା ବଡ଼ ପାଟିରେ କହି ଦେଇ ଗାଡ଼ିରୁ ଡେଇଁ ପଡ଼ିଲା ।

ଆମେମାନେ ରେଳ ଲାଇନ୍ ଡାରିପଟରେ ବୁଲିଲୁ । ଆମ ବ୍ୟାଗ୍‌ରେ ପୋଲାଣ୍ଡ ସୈନିକଟି ଦେଇଥିବା ରୁଟି ଗୋଟିଏ ଥିଲା । ତରତର ହେବାର କୌଣସି ଆବଶ୍ୟକତା ନଥିଲା । ଅସଂଖ୍ୟ ଲୋକ ଥଳି ବ୍ୟାଗ୍ ଧରି ଷ୍ଟେସନ୍‌ରେ ଭର୍ତ୍ତି ହୋଇଥିଲେ । ସେମାନେ କେଉଁଠାରୁ ଆସିଥିଲେ ବା କୁଆଡ଼କୁ ଯିବେ, ତାହା ପଚାରିବା ପାଇଁ ମୋର ସାହସ ନ ଥିଲା । ପଶ୍ଚିମକୁ ଯାଉଥିବା ସେହି ଅଭିଯାନ ସମ୍ପର୍କରେ ମୁଁ ଜାଣିନଥିଲି । ଜର୍ମାନ୍‌ମାନେ ଛାଡ଼ି ଯାଇଥିବା ଜିନିଷ ଗୁଡ଼ିକୁ ପଶ୍ଚିମକୁ ନେଇଯିବା ଥିଲା ତାହାର ଉଦ୍ଦେଶ୍ୟ । ସୈନିକ ଭର୍ତ୍ତି ଏକ ଟ୍ରେନ୍ ଷ୍ଟେସନ୍‌ରେ ପହଞ୍ଚିଲା । ସେମାନଙ୍କର ବେଲ୍‌ଟ ବା କୌଣସି ଅସ୍ତ୍ରଶସ୍ତ୍ର ନଥିଲା । ଶୁଣିଲି ସେମାନେ ସୈନ୍ୟ ବାହିନୀରୁ ପଳାଇ ଆସିଥିବା ଡେଜାର୍ଟର୍ସ ବା ପଳାତକ । ମୁଁ ବାଇଡୋ ଗୋସସେଜ୍‌ରେ ପହଞ୍ଚି ଆଗକୁ ଯିବାପାଇଁ ଯେଉଁ ଉତ୍ତୁଙ୍ଗ ଆଶା

---

ବାଇଡୋ ଗୋସସେଜ୍‌ରେ ପହଞ୍ଚିବାକୁ ଆମକୁ ଆହୁରି ଆଗକୁ ଯିବାକୁ ପଡ଼ିଥିଲା । ଯେତେବେଳେ ଗାଡ଼ି ପରବର୍ତ୍ତୀ ଷ୍ଟେସନ୍‌ରେ ପହଞ୍ଚିଲା ମୋ ଆଖିରେ ପଡ଼ିଗଲା ବାଇଡୋ ଗୋସସେଜର ସାଇନ୍ ବୋର୍ଡ । ମୁଁ ସେହିଠାରେ ଓହ୍ଲାଇବାକୁ ସ୍ଥିର କରିଥିଲି ।

ଥିଲା ଯେ ମୁଁ ପୋଲାଣ୍ଡରେ ପହଞ୍ଚିବା ବେଳକୁ ସେଠାକାର ପରିସ୍ଥିତି ସମ୍ପୂର୍ଣ୍ଣ ସ୍ୱାଭାବିକ ହୋଇ ସାରିଥିବ ।

ସେହି ଆଶା ପାଣି ଫୋଟକା ଭଳି ଫାଟି ଯାଇଥିଲା । ମୁଁ କଳ୍ପନା କରୁଥିଲି ଆମେ ରାଜନୈତିକ ବନ୍ଦୀ ବା କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପର ଅନ୍ତେବାସୀମାନେ ପୋଲାଣ୍ଡରେ ପହଞ୍ଚିଗଲେ ଆମ୍ଭମାନଙ୍କୁ ପୁଷ୍ପାର୍ଘ୍ୟ ଦେଇ ସ୍ୱାଗତ କରାଯିବ । କିନ୍ତୁ ତାହା ପରିବର୍ତ୍ତେ ଆମେ କ୍ଷୁଧାର୍ତ୍ତ, ତୃଷାର୍ତ୍ତ ଓ ଅପରିଚ୍ଛନ୍ନ ଅବସ୍ଥାରେ ଷ୍ଟେସନ୍‌ରେ ଲକ୍ଷ୍ୟ ହୀନ ଭାବରେ ବୁଲୁଥିଲେ ମଧ୍ୟ ଆମ ଆଡ଼କୁ କେହି ଚାହିଁ ନଥିଲେ । କିନ୍ତୁ ମୁଁ ଏହା ମଧ୍ୟ ଭାବିଲି ଯେ ପୋଲାଣ୍ଡ ସୈନ୍ୟ ଦୁଇଜଣ ମୋତେ ଯେଉଁ ସାବଧାନ ବାଣୀ ଶୁଣାଉଥିଲେ ସେ ଦୃଷ୍ଟିରୁ ଆମ ପ୍ରତି ସେହି ଉଦାସୀନତା ବରଂ ସ୍ପୃହଣୀୟ ।

ମଧ୍ୟାହ୍ନ ଭୋଜନ ପରେ ଗୋଟିଏ ବେସମାରିକ ଟ୍ରେନ୍ ଷ୍ଟେସନ୍‌ରେ ପହଞ୍ଚିଗଲା । ସେ ବୃଦ୍ଧା ଏବଂ ତାଙ୍କର କନ୍ୟା ଆଉ ଆଗକୁ ଯିବାକୁ ଚାହୁଁ ନଥିଲେ । ମୁଁ ସେମାନଙ୍କ ବିଷୟରେ ଆଉ କାହିଁକି ବା ଭାବିବି ? ମୁଁ ଟ୍ରେନ୍‌ରେ ଗୋଟିଏ ଡବାରେ ପଶିଗଲି ଝରକା ପାଖରେ ସିଟ୍ ଗୋଟିଏ ବି ପାଇଗଲି । ରାସ୍ତା କଡ଼ରେ ଥିବା ଗଛଲତା, ଗ୍ରାମ ଓ ସହର ଗୁଡ଼ିକ ନିଜର ଗାଁ ଓ ସହର ଭଳି ବେଶ୍ ଆତ୍ମୀୟ ମନେ ହେଲା । ମୁଁ ସେହି ଚିର ପରିଚିତ ଦୃଶ୍ୟ ରାଜିକୁ ଉପଭୋଗ କରିବାରେ ଏଭଳି ମଜ୍ଜି ଯାଇଥିଲି ଯେ ଯେତେବେଳେ ଟ୍ରେନ୍‌ର କଣ୍ଡକ୍ଟର କହିଲା, ''ଟିକେଟ୍ ପ୍ଲିଜ୍'' ମୁଁ ତାହା ଶୁଣି ପାରି ନଥିଲି । ତେଣୁ ମୁଁ ଭାବିଲି, ''ସେ କ'ଣ କହୁଛି ?'' ମୁଁ ବିସ୍ମିତ ହୋଇଗଲି । ମୋ' ଭଳି ଅନ୍ୟ ଏକ ଗ୍ରହରୁ ଆସୁଥିବା ଯାତ୍ରୀ ଠାରୁ ସେ ଟିକେଟ୍ ଚାହୁଁଛି ! ମୁଁ କେଉଁଠାରୁ ଆସିଛି ସେ ଜାଣିପାରୁ ନଥିଲା, ମୁଁ ପାଟି କରି କହିଲି, ''ମୋ'ର ଟିକେଟ୍ ନାହିଁ ।'' ଟିକେଟ୍ କିଣିବାକୁ ମୁଁ ପଇସା କେଉଁଠୁ ପାଇବି ? କ୍ୟାମ୍ପରେ ସେମାନେ ମୋତେ ପଇସା ଦେଇ ନାହାନ୍ତି ।''

ସେ ଭଦ୍ର ଭାବରେ ଉତ୍ତର ଦେଲା, ''କ୍ଷମା କରିବେ, ମୁଁ ଜାଣି ନଥିଲି ।''

ମୋର ଏକମାତ୍ର ପ୍ରଶ୍ନ ଥିଲା, ''ଟ୍ରେନ୍‌ର ଗନ୍ତବ୍ୟ ସ୍ଥଳ କେଉଁଆଡ଼େ ?''

''ଓଃ, ଆପଣ ଜାଣି ନାହାନ୍ତି ?'' ଟ୍ରେନ୍‌ଟି ଲୋଜକୁ ଯାଉଛି ?'' ଉତ୍ତର ମିଳିଲା ।

''ମୁଁ ଲୋଜରୁ ଲୁବିଲନ୍‌କୁ ଟ୍ରେନ୍ ପାଇବି କି ?'' ମୁଁ ପୁଣି ପଚାରିଲି ।

''ନା, ଲୁବିଲନ୍‌କୁ ଏପର୍ଯ୍ୟନ୍ତ ପ୍ୟାସେଞ୍ଜର୍ ଟ୍ରେନ୍ ଚାଲି ନାହିଁ; ଅବଶ୍ୟ ଗୋଟାଏ ମାଲଗାଡ଼ି ଯାଉଛି ଏବଂ ସେଥିରେ କେତେଗୋଟି ଯାତ୍ରୀ ଡବା ମଧ୍ୟ ଯୋଡ଼ା ଯାଉଛି'', କଣ୍ଡକ୍ଟର ଉତ୍ତର ଦେଲା ।

---

(ଉତ୍ତର ପୋଲାଣ୍ଡରେ ସେହି ନାମରେ ଥିବା ପ୍ରଦେଶର ତାହା ରାଜଧାନୀ ଥିଲା । ୨ୟ ମହାଯୁଦ୍ଧ ପୂର୍ବରୁ ସେଠାରେ ପାଞ୍ଚହଜାର ଇହୁଦୀ ବାସ କରୁଥିଲେ ।)

ମୁଁ ଯାହା ଜାଣିବାକୁ ଚାହୁଥିଲି, ତାହା ଜାଣି ଗଲି । ମୁଁ ବେଶ୍ ହାଲୁକା ଅନୁଭବ କଲି । ମୋ' ଘର ଯେତିକି ପାଖ ହୋଇ ଆସୁଥିଲା ମୁଁ ତାତୋଽଧିକ ଉତ୍କଣ୍ଠା ଅନୁଭବ କରୁଥିଲି । ''ମୋ ପାଇଁ ସେଠି କିଏ ବା ଅପେକ୍ଷା କରିଥିବ ?'' ୧୯୪୨ ଏପ୍ରିଲ୍‌ରେ ମୋ'ର ସମଗ୍ର ପରିବାରର ମୃତ୍ୟୁ ପାଇଁ ମୁଁ କେତେ ନ କାନ୍ଦିଛି । ଯେଉଁ ସହର. ଯେଉଁ ଘରେ ମୋ'ର ପିତା ମାତା, ଭାଇ ଭାଉଜ ଏବଂ ମୋ'ର ସମସ୍ତ ଆତ୍ମୀୟମାନେ ଦୟନୀୟ ଭାବରେ ମୃତ୍ୟୁ ବରଣ କରିଥିଲେ, ସେହି ଘର, ସେହି ସହରକୁ ମୁଁ କ'ଣ ଶାନ୍ତ ଚିତ୍ତରେ ଅନେଇ ପାରିବି ?

'ମ୍ୟାଡାମ୍' କାହାର କଣ୍ଠସ୍ୱର ମୋ'ର ଚିନ୍ତା ଭାବନାକୁ **ଛିନ୍ନ ବିଚ୍ଛିନ୍ନ** କରିଦେଲା । ଦେଖିଲି, ମୋ' ପାଖରେ ଛିଡ଼ା ହୋଇଥିଲେ ସେହି କଣ୍ଡକ୍ଟର ଜଣକ । ''ମୁଁ ଆପଣଙ୍କ ପାଇଁ କିଛି ଖାଦ୍ୟ ଆଣିଛି । ଦୟାକରି ଏହାକୁ ଗ୍ରହଣ କରନ୍ତୁ । ଏହା ପୋଲାଣ୍ଡର ଖାଦ୍ୟ ।'' ମୋ'ର ମାନସିକ ଦ୍ୱନ୍ଦ୍ୱକୁ ଲକ୍ଷ୍ୟ କରି ସେ ଏତେ ଗୁଡ଼ିଏ କଥା କହିଦେଲା । ବହଳିଆ ଲହୁଣୀ ବୋଳା ହୋଇଥିବା ଦୁଇଖଣ୍ଡ ସଫେଦ୍ ପାଉଁରୁଟି ଏବଂ ଥର୍ମୋଫ୍ଲାସ୍କରେ ଗରମ ଚା । ମୁଁ ସବୁ ଖାଇଦେଲି । ସେ ମୋତେ କୌଣସି ପ୍ରଶ୍ନ ପଚାରି ନଥିଲେ । ତେଣୁ ମୁଁ ମଧ ଖୁବ୍ କୃତଜ୍ଞତା ଅନୁଭବ କଲି । କାରଣ ସେହି ମୁହୂର୍ତ୍ତରେ କଥା କହିବାର ଶକ୍ତି ମୁଁ ହରାଇ ବସିଥିଲି । କାହାର କୌତୁହଳ ଦୂର କରିବାକୁ ମଧ ମୋ'ର ଇଚ୍ଛା ନଥିଲା । ମୋ'ର ଘୂର୍ଣ୍ଣାୟମାନ ମସ୍ତିଷ୍କ ଭିତରେ ମୋ'ର ଅତୀତ ଓ ବର୍ତ୍ତମାନ ସବୁ ଫେଣ୍ଟି ହୋଇ ଯାଇଥିଲା । କୌଣସି ଘଟଣା ମୋତେ ସତ୍ୟ ବୋଲି ଜଣାଯାଉ ନଥିଲା । ସେହିଦିନ ସନ୍ଧ୍ୟାରେ ମୁଁ ଲୋଜ୍‌ରେ ପହଞ୍ଚିଲି ।

ଷ୍ଟେସନ୍‌ରେ ଲୋକ ଭରି ଯାଇଥିଲେ । ଯିବା ଆସିବା ବାଟରେ ପ୍ରତି ଇଞ୍ଚ ସ୍ଥାନ ଭର୍ତ୍ତି ହୋଇ ଯାଇଥିଲା । କେତେକ ଛିଡ଼ା ହୋଇଥିଲେ । କେହିବା ଜିନିଷ ପତ୍ର ଓ ଗଣ୍ଠିଲି ଉପରେ ମଧ ବସି ଯାଇଥିଲେ । କେହି ବା ଖାଲି ଚଟାଣରେ ବସିଯାଇଥିଲେ । ମୁଁ ରେଳ ଲାଇନ୍ ପାଖାପାଖି ବସିଲି । ଚାରି ପଟରେ ଲୋକମାନେ ବଡ଼ ପାଟିରେ କଥା ହେଉଥିଲେ । ନିଜ ନିଜ କାହାଣୀ ଗପୁଥିଲେ । ହସୁଥିଲେ । କିନ୍ତୁ ଖାଇବା କାର୍ଯ୍ୟରେ ଲାଗି ଯାଇଥିଲେ । ସେମାନଙ୍କ କଥା ମୁଁ ଶୁଣୁଥିଲି କିନ୍ତୁ ଅଗମୂଳ କିଛି ବୁଝି ପାରୁନଥିଲି । ମୋତେ ମଧ କେହି କେହି କ'ଣ ସବୁ ପ୍ରଶ୍ନ ପଚାରୁଥିଲେ । କିନ୍ତୁ ମୁଁ କୌଣସି ଉତ୍ତର ଦେଉନଥିଲି । ଗତ କେତେ ସପ୍ତାହ ଧରି ମୁଁ ଯେଉଁ ପରିସ୍ଥିତି ଭିତରେ ଗତି କରି ଆସିଥିଲି ତା ଫଳରେ ମୁଁ ସମ୍ପୂର୍ଣ୍ଣ ଅସୁସ୍ଥ ହୋଇଯାଇଥିଲି । ମୋ' ପାଖାପାଖି ବସିଥିବା ଯାତ୍ରୀମାନେ ଯେଉଁ ଟ୍ରେନ୍‌କୁ ଅପେକ୍ଷା କରି ବସିଥିଲେ ମୁଁ ମଧ ସେହି ଅପେକ୍ଷାରେ ଥିଲି । ସକାଳ ୧୦ଟାରେ ଗାଡ଼ି ଆସି ପହଞ୍ଚିବା କଥା । ସାରା ରାତି ମୁଁ ସେହି ଯିବା ଆସିବା ବାଟରେ

ବସି ବସି ସମୟ କଟାଇଲି । ସମସ୍ତେ ସେହି ଟ୍ରେନ୍‌ରେ ଗୋଟିଏ ଗୋଟିଏ ସିଟ୍ ଦଖଲ କରିବାକୁ ସକାଳୁ ସକାଳୁ ପ୍ରସ୍ତୁତି ଆରମ୍ଭ କରିଦେଲେ । ପ୍ରାୟ ଦଶଟା ବେଳକୁ ଦୁଇଜଣ ବେସାମରିକ କର୍ମଚାରୀ ସେଠାରେ ପହଞ୍ଚିଗଲେ । ସେମାନଙ୍କ ବାହୁରେ, ଲାଲ ପଟି ବନ୍ଧା ହୋଇଥିଲା ଏବଂ ଅଣ୍ଟାରେ ଝୁଲୁଥିଲା କାରବାଇନ୍ ବନ୍ଧୁକ । ଟ୍ରେନ୍ ସେ ପର୍ଯ୍ୟନ୍ତ ପହଞ୍ଚି ନଥିଲା । କିନ୍ତୁ ଜଗୁଆଳୀ କର୍ମଚାରୀ ଟ୍ରେନ୍ ଅପେକ୍ଷାରେ ରହିଥିଲେ । ଦେଖିଲି, ଯେଉଁମାନେ ସେହି ଜଗୁଆଳୀ କର୍ମଚାରୀଙ୍କ ପକେଟ୍‌ରେ କିଛି ପଇସା ଗୁଞ୍ଜି ଦେଉଥିଲେ କେବଳ ସେହିମାନଙ୍କୁ ଟ୍ରେନ୍ ସିଟ୍ ମିଳିବ ବୋଲି ଜଣାଯାଉଥିଲା । ପଇସା ପତ୍ର ଦେଉ ନଥିବା ଯାତ୍ରୀଙ୍କୁ ଗୋଟାଏ ପାଖକୁ ଠେଲି ଦିଆଯାଉଥିଲା । ମୁଁ ଆଶଙ୍କା କରୁଥିଲି ଯେ ମୁଁ ଅନ୍ୟମାନଙ୍କ ଗଣ୍ଠିଲି ଓ ବ୍ୟାଗ୍‌ର ଗଦା ଭିତରେ ହିଁ ଲାଖିଯିବି; ସେମାନେ ମୋତେ ଅବିଚାରିତ ଭାବରେ ଦଳି ଚକଟି ଚାଲିଯିବେ ।

ଠିକ୍ ଦଶଟା ବେଳେ ଗାଡ଼ି ପହଞ୍ଚିଗଲା । ଜଗୁଆଳୀ ଗାଡ଼ି ଦରଜା ଖୋଲିବା ସଙ୍ଗେ ସଙ୍ଗେ ଲୋକମାନେ ଜିନିଷ ପତ୍ରଧରି ଗାଡ଼ି ଭିତରକୁ ଧସେଇ ପଶିଲେ । ଜଗୁଆଳୀ ଦୁଇଜଣ ମଧ୍ୟ ସେହି ଯାତ୍ରୀଙ୍କ ମଧ୍ୟରେ ଫେଣ୍ଟି ହୋଇଗଲେ । ଜଣେ ଜଗୁଆଳୀ ପାଟି କରି କହିଲା, ''ଡବା ଭର୍ତ୍ତି ହୋଇଗଲାଣି, ଦରଜା ବନ୍ଦ କରିଦିଅ । ଆଉ ଜଣକ ପାଇଁ ସୁଦ୍ଧା ସେଠାରେ ସ୍ଥାନ ନାହିଁ ।'' ଦରଜା ବନ୍ଦ ହୋଇଗଲା । ମୁଁ ହତାଶ କଣ୍ଠରେ ଅନ୍ୟ ଜଗୁଆଳୀକୁ କହିଲି, ''ମୋ ପାଖରେ ଆଦୌ ଟଙ୍କା ପଇସା ନାହିଁ । ମୁଁ କ୍ୟାମ୍ପରୁ ଆସିଛି ।'' ଏତିକି କହି ମୋ' ପୋଷାକରେ ଥିବା କ୍ୟାମ୍ପ ନମ୍ବରଟି ତାକୁ ଦେଖାଇ ଦେଲି । ମୋ' ପାଖରେ ଗୋଟେ ନୂଆ କପଡ଼ା ଅଛି । ତୁମକୁ ତାହା ଦେଇ ଦେବି । ମୋତେ ଟ୍ରେନ୍‌ରେ ସ୍ଥାନ ଦିଅ । ''ମୋ'' ବ୍ୟାଗରୁ ନୂଆ କପଡ଼ା ଖଣ୍ଡିକ କାଢ଼ି ତାକୁ ଦେଇଦେଲି । ସେତିକି ପାଇସାରି ସେ ଦରଜା ଖୋଲିଦେଲା ଏବଂ ଶେଷ ମୁହୂର୍ତ୍ତରେ ମୋତେ ସେ ଡବା ଭିତରକୁ ଠେଲି ଦେଲା । ଟ୍ରେନ୍ ଛାଡ଼ିଲା । ଡବା ମଝିରେ ଥିବା ଖାଲି ସ୍ଥାନରେ ବସି ପଡ଼ିଲି । ଡବାଟି ପୂରା ଅନ୍ଧାର ଥିଲା । ଡବା ଛାତ ପାଖରେ ଥିବା ଦୁଇଟି କ୍ଷୁଦ୍ର ଝରକା ଦେଇ ସାମାନ୍ୟ ଟିକେ ଆଲୋକ ଆସୁଥିଲା । ଡବା ଭିତରେ ଯାତ୍ରୀମାନେ ବିଭିନ୍ନ ଗ୍ରୁପ୍‌ରେ ବିଭକ୍ତ ହୋଇଗଲେ । ଡବାରେ ମୋ'ର ଅନୁପ୍ରବେଶ ପ୍ରତି ସେମାନେ ସମ୍ପୂର୍ଣ୍ଣ ଉଦାସୀନ ଥିଲେ । ସେମାନେ ସାମନାରେ ଗାମୁଛା ପକେଇ ଦେଇ ଖାଇବାରେ ଲାଗିଗଲେ । ଏଠି ସେଠି ହୁଇସ୍କି ବୋତଲ ମଧ୍ୟ ଥୁଆ ହୋଇଗଲା । ଝରକା ପାଖରେ ଗୋଟିଏ ବେଞ୍ଚ୍ ପଡ଼ିଥିଲା ତା ଉପରେ ମଧ୍ୟ ଦଳେ ବସିଯାଇଥିଲେ । ଜଣେ ଯୁବକ ମିଲିଟାରୀ ଅଫିସର୍ ଟୋପି ପିନ୍ଧିଥିଲା । ସେ ଟୋପିରୁ 'ଇଗଲ୍' ଚିହ୍ନଟି ଛିଡ଼ି ଯାଇଥିଲା, କିନ୍ତୁ ସେ ଗପ ମେଳେଇ ଦେଉଥିଲା । ମହିଳାମାନେ ଅଣନିଃଶ୍ୱାସୀ ହୋଇ ତାହା ଶୁଣୁଥିଲେ । ସେ କହୁଥିଲା, ''ମୁଁ ଯେତେବେଳେ ପୋଲାଣ୍ଡ ଆର୍ମିରେ ଥିବା ଜଣେ ରଷିଆନ୍ ଅଫିସରକୁ

ଦେଖିଲି । ମନେ ମନେ ଭାବିଲି ''ଏହା ତୁମ ପାଇଁ ନୁହେଁ । ତୁମେ ଏ ସୈନ୍ୟ ବାହିନୀରୁ ପଳେଇ ଯାଅ ।'' ମୁଁ ଯେ ଏକ କମ୍ୟୁନିଷ୍ଟ ରୁଷିଆ ପାଇଁ ଲଢୁଛି, ଏହା ଦେଖିବା ପାଇଁ ସେମାନେ ବଞ୍ଚି ନଥିବେ । ମୁଁ ବିଦାୟ ନେଲି । କିନ୍ତୁ ସେମାନେ ମୋତେ ଗୁଳି କଲେ । ମୁଁ ପ୍ରାୟ ମରିଯାଇଥିଲି । ମୋ' ପାଖରେ ବନ୍ଧୁକ ଥିଲା । ମୁଁ ରାସ୍ତାରେ ସେମାନଙ୍କ ଖବର ବୁଝିଦେଲି । କମ୍ୟୁନିଷ୍ଟମାନଙ୍କ ସହ ଲଢ଼ିବା ପାଇଁ ଦରକାର ହେଲେ ତାହାକୁ କାମରେ ଲଗାଇବି ।'' ଏତିକି କଥା ମୋ' କାନରେ ବାଜିଲା ।

ଜଣେ ମହିଳା ତା' କଥା ଶୁଣି ଏତେ ଅଭିଭୂତା ହୋଇଗଲା ଯେ ତା ପାଟିରୁ ବାହାରି ପଡ଼ିଲା, ''ଆହା, ବିଚରା !'' ତା' ପରେ ସେ ଗୋଟିଏ ଗ୍ଲାସ୍ ହୁଇସ୍କି ସେହି ସୈନ୍ୟ ହାତକୁ ବଢ଼ାଇ ଦେଲା । ଅନ୍ୟ ଜଣେ ମହିଳା ତାକୁ ଗୋଟେ ରୁଟି, କିଛି ଝୋଳ ଓ ଦୁଇଟି ଚୋପାଛଡ଼ା ଅଣ୍ଡା ମଧ ବଢ଼ାଇ ଦେଲା । ପଳାତକ ସୈନ୍ୟଟି ମୁଣ୍ଡରୁ ଟୋପି କାଢ଼ି ଦେବାରୁ ଦେଖିଲି, ତା ମୁଣ୍ଡରେ ଖଣ୍ଡେ ରକ୍ତାକ୍ତ କନା ଗୁଡ଼ା ହୋଇଥିଲା ।

ତବାର ଗୋଟିଏ କୋଣରେ ବସିଥିବା କେହି ଜଣେ ପଚାରୁଥିଲେ, ''ତୁମେ କ'ଣ ଭାବୁଛ ଯେ, ପୋଲାଣ୍ଡରେ ବର୍ତ୍ତମାନ ଯାହା ଘଟୁଛି, ତାହା ସେହିଭଳି ଅପରିବର୍ତ୍ତିତ ରହିବ ? କଦାପି ନୁହେଁ । ସୋଭିଏତ୍ ମାନେ କଦାପି ଆମ ଉପରେ ରାଜୁତି କରିବେ ନାହିଁ । ତୁମେ ଦେଖିବ, ଏଣ୍ଡେର୍‌ସ ଲଣ୍ଡନରୁ ଫେରି ଆସିବେ ଏବଂ ଏଠାରୁ ସେ ଭିକ୍ଷୁକ ଦଳକୁ ଘଉଡ଼ାଇ ଦେବେ ।''

ଜଣେ ମହିଳା ପଚାରିଲା, ''ତୁମେ ଏସବୁ କ'ଣ ନେଇଯାଉଛ ?'' ''ସୋସିନ୍ (Szczcin) ଗୋଦାମ୍ ଘରକୁ ଜଣେ ପଶିଯାଇଥିଲା । ତାହାଠାରୁ ଏ ପୁରୁଷ ପୋଷାକ ପତ୍ର ମୁଁ କିଣି ଆଣିଲି ।''

ସେ ସବୁକଥା ଶୁଣି ମୋ ଦେହ ଶୀତେଇ ଉଠୁଥିଲା । ମୁଁ ତଳକୁ ମୁହଁ କରି ଶୋଇବାର ଛଳନା କଲି । ମୁଁ ପୂରା ଡରି ଯାଉଥିଲି । ମୋତେ ଯଦି ସେମାନେ ପଚାରନ୍ତି, ''କେଉଁଠୁ ଆସିଲ ?'' ମୁଁ କି ଉତ୍ତର ଦେବି ? ମୁଁ କ୍ୟାମ୍ପରୁ ଆସିଛି ବୋଲି କ'ଣ ଏମାନଙ୍କ ଆଗରେ ପ୍ରକାଶ କରିପାରିବି ? ମୁଁ ଜଣେ କମ୍ୟୁନିଷ୍ଟ ବୋଲି ଯଦି ସେମାନେ ଜାଣନ୍ତି ମୋ' ତଣ୍ଟି ଚିପି ଏହି ତବାରେ ମୋତେ ମାରିଦେବେ । କୌଣସି ପ୍ରକାରେ ରାତି ହେବା ପର୍ଯ୍ୟନ୍ତ ମୋ'ର ଚଳିଯିବା ଆବଶ୍ୟକ ଥିଲା । ରାତି ହେବାରୁ ମୁଁ ଗୋଟାଏ କୋଣରେ ଶୋଇ ପଡ଼ିଲି । ମୋତେ ଭୀଷଣ ଭୋକ ହେଉଥିଲା । ମୋ' ପାଖରେ କିଛି ହେଲେ ଖାଇବା ପଦାର୍ଥ ନଥିଲା । ଯଦିଓ ସେମାନଙ୍କ ପାଖରେ ଯଥେଷ୍ଟ ଖାଦ୍ୟ ଥିଲା ଓ ସେମାନେ ସବୁବେଳେ ଖାଉ ଥିଲେ, ମୋତେ ବା କାହିଁକି ଦେଇଥାନ୍ତେ ?

ରାତି ହୋଇଗଲା ସମସ୍ତେ ଶୋଇଗଲେ । ମୁଁ ମଧ ଶୋଇଗଲି । ତା' ପରଦିନ

ସକାଳୁ ସକାଳୁ ସମସ୍ତେ ଉଠିପଡ଼ି ସେମାନଙ୍କର ଜିନିଷପତ୍ରକୁ ଛୋଟ ଛୋଟ ପୁଟୁଳିରେ ବାନ୍ଧିଲେ, ଯେପରିକି ତାକୁ କେହି ଅଧିକ ଜିନିଷ ଭାବି ଲକ୍ଷ୍ୟ ନ କରନ୍ତି ।

''ମ୍ୟାଡାମ୍ ତୁମର ତ କିଛି ଜିନିଷ ନାହିଁ । ମୋ ବ୍ୟାଗରୁ ଗୋଟାଏ ଧରନ୍ତ ନାହିଁ ?'' ଜଣେ ମହିଳା କହିଲା । ''ନା ମୁଁ ଭାରି ଅସୁସ୍ଥ, ପାରିବି ନାହିଁ ।'' ଉତ୍ତର ଦେଲି ।

ଦିନ ବାରଟାରେ ଡବା କବାଟ ସବୁ ଖୋଲିଗଲା । ଆମେ ଲୁବ୍ଲିନ୍‌ରେ ପହଞ୍ଚିଗଲୁ । ମୁଁ ପ୍ରଥମେ ଓହ୍ଲେଇ ପଡ଼ିଲି । ରାସ୍ତା ଉପରେ ପହଞ୍ଚିଗଲି । ସେଦିନ ଇଷ୍ଟର ପର୍ବ । ଇଷ୍ଟରର ଏକ ବର୍ଣ୍ଣାଢ଼୍ୟ ଶୋଭାଯାତ୍ରା ମୋତେ ଯେମିତି ସ୍ୱାଗତ କଲା । ସୁବେଶିତ ଶିଶୁଗଣ, ପାରମ୍ପରିକ ପୋଷାକ ପିନ୍ଧିଥିବା ମହିଳା ଓ ପୁରୁଷଗଣଙ୍କର ଥିଲା ସେ ଶୋଭାଯାତ୍ରା । ରାସ୍ତାରେ ଆଉ ସ୍ଥାନ ନଥିଲା । କୋଠାର ଝରକା ଓ ବାଲ୍‌କୋନୀଗୁଡ଼ିକ ରଙ୍ଗ ବେରଙ୍ଗ ଫୁଲ ଏବଂ ପବିତ୍ର ପ୍ରଭୁ ପରିବାରର ଛବିଗୁଡ଼ିକ ଦ୍ୱାରା ଚମତ୍କାର ଦୃଶ୍ୟ ସୃଷ୍ଟି କରୁଥିଲା ।

ଏହା ହେଉଛି ପୋଲାଣ୍ଡ । ସୀମାନ୍ତର ସେହି ସୈନ୍ୟମାନଙ୍କଠାରୁ ଶୁଣିଥିବା ସତର୍କବାଣୀ ମନେ ପଡ଼ିଗଲା ।

''ତୁମେ କମ୍ୟୁନିଷ୍ଟ ବୋଲି କାହାକୁ କହିବ ନାହିଁ । କାରଣ ସଂଗ୍ରାମ ଏ ପର୍ଯ୍ୟନ୍ତ ଶେଷ ହୋଇନାହିଁ । ସେଥିପାଇଁ ସମୟ ଲାଗିବ ।'' (The fight had not ended. A fight takes time.)

■■■

# ସମ୍ପାଦକଙ୍କ ଶେଷକଥା

ଏହି ଗଳ୍ପଗୁଡ଼ିକର କଥାକାର ହେଉଛନ୍ତି, ବୃଦ୍ଧ, ଯୁବକ ନିର୍ବିଶେଷରେ ଜ୍ଞାନୀ, ପଣ୍ଡିତ ଓ କଳାକାର ଗଣ, ଯେଉଁମାନେ କି ଏକ ପବିତ୍ର କର୍ତ୍ତବ୍ୟ ସମ୍ପାଦନ କରିବା ଲକ୍ଷ୍ୟରେ ଇହୁଦୀ ସ୍ମୃତି ଭଣ୍ଡାରରେ କାଳକାଳକ ପାଇଁ ସାଇତି ରଖିଯାଇଛନ୍ତି ଭୟାବହ ନାଜୀ ସଂହାର ଯନ୍ତ୍ରରେ ବଳି ପଡ଼ିଥିବା ସହସ୍ର ସହସ୍ର ଇହୁଦୀମାନଙ୍କର ହୃଦୟ ବିଦାରକ ମୃତ୍ୟୁ ଘଟଣାଗୁଡ଼ିକ । ମାନବିକତା ଓ ବ୍ୟକ୍ତି ସତ୍ତା ଅପହୃତ ହୋଇ ଯାଇଥିବା ସେହି 'ଅପଦାର୍ଥ'ମାନଙ୍କୁ ଗୁଳି କରିଦିଆ ଯାଇଥିଲା ସେହି କନ୍‌ସେନ୍‌ଟ୍ରେସନ୍ କ୍ୟାମ୍ପରେ । ଉତ୍ତୁଙ୍ଗ ପ୍ରାଚୀର ଓ ଲୁହାତାର ବାଡ଼ ପରିବେଷ୍ଟିତ ବନ୍ଦୀ ଶିବିରରେ, ରକ୍ତ ରଞ୍ଜିତ ବନଭୂମିରେ ଏବଂ ଶ୍ୱାସରୋଧୀ ଗୁପ୍ତ ଆଶ୍ରୟ ସ୍ଥଳରେ ସେମାନଙ୍କ ଆଖି ଯାହା ଦେଖିଛି, ହୃଦୟ ଯାହା ଅନୁଭବ କରିଛି ତାହା ସେମାନେ ବହୁଭାଷା ସଙ୍କଳିତ ବାକ୍ୟରେ ପ୍ରକାଶ କରି ଯାଇଛନ୍ତି । ସେଗୁଡ଼ିକ ପାଠକଲେ ମନରେ ସ୍ୱତଃ ପ୍ରଶ୍ନ ଉଠେ, କି ଉଦ୍ଦେଶ୍ୟରେ ସେମାନେ ସେଗୁଡ଼ିକୁ ଲିପିବଦ୍ଧ କରି ଯାଇଛନ୍ତି ? ମୃତ୍ୟୁ ଭୟରେ ସୃଷ୍ଟି ହୋଇଥିବା ଏକ ସ୍ୱତଃ ପ୍ରବୃତ୍ତ ଅଭିଳାଷରୁ, ନା ଯୁଗର ପରମ୍ପରାରେ ପ୍ରୋଥିତ ସାମୂହିକ ସଚେତନତାରୁ ନା ମନେ ରଖିବା ଓ ମନେ ପକାଇଦେବାର ଐତିହାସିକ ଆବଶ୍ୟକତା ଦୃଷ୍ଟିରୁ !! ନିମ୍ନଲିଖିତ ଇହୁଦୀ ଗଳ୍ପରୁ ସେହି ପ୍ରଶ୍ନର ଉତ୍ତର ମିଳିପାରେ ।

''ସତୁରୀ ଖ୍ରୀଷ୍ଟାବ୍ଦରେ ରୋମୀୟ ସୈନ୍ୟମାନେ ଜେରୁଜେଲମ୍‌କୁ ଅବରୁଦ୍ଧ କରି ରଖିଥିଲେ । ସେତେବେଳେ ରୋମୀୟମାନଙ୍କ ସହ ଇହୁଦୀମାନେ ଯୁଦ୍ଧ କରିବେ ନା ସନ୍ଧି କରିବେ, ସେ ସମ୍ପର୍କରେ ତର୍କ ବିତର୍କ ଚାଲିଥିଲା । ରବ୍ବାନ୍ ହାନାନ୍ ବେନ୍ କାଜଲ୍ ନାମକ ପ୍ରଖ୍ୟାତ ଧର୍ମୀୟନେତା ସନ୍ଧି କରିବାକୁ ପରାମର୍ଶ ଦେଲେ । ତାଙ୍କର ଯୁକ୍ତି ଥିଲା ଇହୁଦୀମାନେ ଯେହେତୁ ବିଶାଳ ରୋମୀୟ ବାହିନୀକୁ ପରାସ୍ତ କରି ପାରିବେ ନାହିଁ ତେଣୁ ସେମାନଙ୍କ ସହିତ ସନ୍ଧି କରିବା ବୁଦ୍ଧିମତ୍ତାର କାର୍ଯ୍ୟ ହେବ । ତା' ପରେ ହାନାନ୍ କୌଶଳକ୍ରମେ ଜେରୁଜେଲମ୍‌ରୁ ପଳାଇ ଯାଇ ରୋମାନ୍ ସେନାପତିଙ୍କୁ ଭେଟିଲେ । ସେ ତାଙ୍କୁ ''ମହାରାଜା'' ବୋଲି ସମ୍ବୋଧନ କରି କହିଲେ, ''ମହାରାଜ, ଶାନ୍ତ ହୁଅନ୍ତୁ, ଶାନ୍ତ ହୁଅନ୍ତୁ, ଶାନ୍ତ ହୁଅନ୍ତୁ ।'' କୁହାଯାଏ ଯେ, ତାଙ୍କର ସେହି ସମ୍ବୋଧନ ଅଚିରେ

ସତ୍ୟରେ ପରିଣତ ହେଲା । ରୋମୀୟ ସେନାପତିଙ୍କୁ ''ମହାରାଜ'' ବୋଲି ସମ୍ବୋଧନ କରିବା ଶୁଣି ରୋମୀୟ ସୈନ୍ୟମାନେ ଅସନ୍ତୋଷ ପ୍ରକାଶ କରୁଥିବାବେଳେ ବାର୍ତ୍ତାବହ ଆସି ଖବର ଦେଲା ଯେ, ''ରୋମ୍ ସମ୍ରାଟଙ୍କର ମୃତ୍ୟୁ ହୋଇଯାଇଛି ଏବଂ ତାଙ୍କ ସ୍ଥାନରେ ସେହି ପ୍ରଧାନ ସେନାପତିଙ୍କୁ ସମ୍ରାଟ୍ ପଦ ପାଇଁ ମନୋନୀତ କରାଯାଇଛି ।'' ଇହୁଦୀ ଧର୍ମୀୟ ନେତା ହାନାନଙ୍କ ଭବିଷ୍ୟତ ବାଣୀ ସତ୍ୟ ହୋଇଥିବାରୁ ନବ ନିଯୁକ୍ତ ସମ୍ରାଟ ତାଙ୍କ ଉପରେ ଅତ୍ୟନ୍ତ ପ୍ରୀତ ହୋଇ କହିଲେ, ମୋତେ ଆପଣ ଯେ କୌଣସି ଗୋଟିଏ ଅନୁରୋଧ କରନ୍ତୁ, ମୁଁ ତାହା ଅବଶ୍ୟ ପୂରଣ କରିବି ।'' କିନ୍ତୁ ହାନାନ୍ ତାଙ୍କ ବନ୍ଦୀ ପରିବାରଙ୍କୁ ମୁକ୍ତ କରିବାକୁ ଚାହିଲେ ନାହିଁ କିମ୍ବା ଜେରୁଜେଲମ୍ ମନ୍ଦିର ଭିତରେ ରହି ଯାଇଥିବା ପ୍ରଭୁଙ୍କର ଦେହାବଶେଷକୁ ଫେରାଇଦେବାକୁ ନିବେଦନ କଲେ ନାହିଁ । ସେ ଯାହା ଚାହିଲେ, ତାହା ଯେତିକି ସଂକ୍ଷିପ୍ତ ତତୋଧିକ ବିସ୍ମୟଜନକ । ସେ କହିଲେ, ''ଆପଣ ୟାଭେନ୍ ଓ ତାହାର ପଣ୍ଡିତମାନଙ୍କୁ ଫେରାଇ ଦିଅନ୍ତୁ ।''

ଇହୁଦୀ ଇତିହାସର ସେହି ଘଡ଼ିସନ୍ଧି ମୁହୂର୍ତ୍ତରେ ଧର୍ମୀୟ ନେତା ହାନାନଙ୍କର ଦୃଷ୍ଟି ଥିଲା ସୁଦୂର ଭବିଷ୍ୟତ ଉପରେ । ତାହା ଥିଲା ଏକ ଅତୁଳନୀୟ ଦୂରଦୃଷ୍ଟି । ୟାଭେନଙ୍କୁ ରକ୍ଷା କରିବାକୁ ଯାଇ ହାନାନ୍ ଇହୁଦୀ ଐତିହ୍ୟକୁ ଧ୍ୱଂସ ମୁଖରୁ ରକ୍ଷା କରିଥିଲେ । ୟାଭେନ୍‌ଙ୍କ ଧର୍ମପନ୍ଥା ନିସୃତ ବାକ୍ୟଗୁଡ଼ିକ ଇହୁଦୀ ଧର୍ମୀୟ ନୀତି ଏବଂ ଇହୁଦୀ ପର୍ବ ପର୍ବାଣୀର ବିବର୍ତ୍ତନକୁ ରକ୍ଷା କରିବା ପାଇଁ ପ୍ରତି ଇହୁଦୀଙ୍କ ହୃଦୟରେ ଏକ ଜାଗରଣ ସୃଷ୍ଟି କଲା । ତାହାର ଫଳ ସ୍ୱରୂପ ଦ୍ୱିତୀୟ ମନ୍ଦିରର ଧ୍ୱଂସ ସାଧନର ଦୁଃଖକୁ କେବଳ ହଜମ କରି ନଥିଲେ ତାହାକୁ ବହୁ ଶହ ବର୍ଷର ନିର୍ବାସନ କାଳରେ ମଧ୍ୟ ତାହା ସେମାନଙ୍କ ଆଧ୍ୟାତ୍ମିକ ଶକ୍ତିର ନବୀକରଣ କରି ପାରିଥିଲା ।

ଉଣେଇଶି ଶହ ବର୍ଷ ପରେ ଏବଂ ଇସ୍‌ରାଏଲ୍‌ର ଶହ ଶହ ମାଇଲ୍ ଦୂରରେ ଇହୁଦୀ ସ୍ମୃତି ଶକ୍ତିର ପୁନର୍ବାର ପରୀକ୍ଷା ହେଲା । ନାତ୍‌ସୀ ସ୍ୱସ୍ତିକର ଛାୟାରେ ଯେଉଁମାନେ ମାନବ ସମାଜର ଇତିହାସରୁ ଇହୁଦୀ ଜାତିକୁ ନିଶ୍ଚିହ୍ନ କରି ଦେବାକୁ ଯେମିତି ଦୃଢ଼ ପ୍ରତିଜ୍ଞ ହୋଇଥିଲେ, ନିର୍ଯ୍ୟାତନାକାରୀମାନଙ୍କର ସେହି ଜଘନ୍ୟ ଷଡ଼ଯନ୍ତ୍ରକୁ ଧ୍ୱଂସ କରିବା ପାଇଁ ଇହୁଦୀମାନେ ମଧ୍ୟ ତତୋଧିକ ଦୃଢ଼ ସଙ୍କଳ୍ପ ଥିଲେ । ସେମାନେ ନିଶ୍ଚିତ ମୃତ୍ୟୁ ମୁଖରୁ ପଳାଇ ଆସିବାକୁ ଚେଷ୍ଟା ନ କରି ବରଂ ଐତିହାସିକ ନଥିପତ୍ରକୁ ନିରାପଦ ସ୍ଥାନରେ ଲୁଚାଇ ଦେବାକୁ ଯତ୍‌ପରୋନାସ୍ତି ଉଦ୍ୟମ କରିଥିଲେ- ଯେପରିକି ଭବିଷ୍ୟତ ବଂଶଧରମାନେ ଇହୁଦୀ ସଂହାରର ସମସ୍ତ ତଥ୍ୟ ଓ ସମ୍ବାଦ ପାଇ ପାରନ୍ତି । ମୃତ୍ୟୁ ମୁଖରୁ ବଞ୍ଚିବା ସମ୍ପୂର୍ଣ୍ଣ ଅସମ୍ଭବ ଥିଲା । ବାଇବେଲ୍ ଓ ଇହୁଦୀ ପରମ୍ପରାକୁ ଅନୁସରଣ କରି

ଗ୍ୟାସ୍ ପାଇଁ ମନୋନୀତ ଇହୁଦୀମାନେ ସେଥିରୁ କୌଶଳକ୍ରମେ ମୁକ୍ତିଲାଭ କରି ସେମାନଙ୍କର ଅନୁଭୂତିକୁ ଅସାଧାରଣ ଉପାୟରେ ଭବିଷ୍ୟତ ପାଇଁ ସାଇତି ଦେଲେ । ଶେଷରେ ସ୍ମୃତି ଭଣ୍ଡାରରେ ସାଇତିବା ଏବଂ ଯଥା ସମୟରେ ତାକୁ ମନେ ରଖିବା ଓ ମନେ ପକାଇବା ତଥା ଆଧ୍ୟାତ୍ମିକ ପ୍ରତିରୋଧ ପାଇଁ ତାକୁ କାମରେ ଲଗାଇବା ସବୁ ଏକାକାର ହୋଇଗଲା । ୧୯୪୧ ମସିହାର ଦୁଃସମୟରେ ( RABBI NACHUM YANCHIKER ) ରବ୍ବି ନାଚୁମ୍ ୟାଞ୍ଚିକାର ତାଙ୍କର ଛାତ୍ରମାନଙ୍କୁ 'ସ୍ଲାବୋଡ୍‌କା ମୁର୍ସାର ୟେଶିଭା'ରେ ଯାହା କହିଥିଲେ ତା'ର ସାରମର୍ମ ହେଉଛି, ''ତୁମର ତିକ୍ତ ଅନୁଭୂତିକୁ ସ୍ମୃତିପଟରେ ସାଇତି ରଖିବା, ଆବଶ୍ୟକ ବେଳେ ତାକୁ ମନେ ପକାଇବା ଓ ପ୍ରତିରୋଧ କରିବା ।''

''ମୋର ପ୍ରିୟ ଛାତ୍ରଗଣ ! ପୃଥିବୀ ଯେତେବେଳେ ସ୍ୱାଭାବିକ ସ୍ଥିରତା ଓ ଶାନ୍ତିକୁ ଫେରି ଆସିବ, ସେତେବେଳେ ଲିଥୁଆନିଆର ଯଶ, ପ୍ରଜ୍ଞା ଏବଂ ଇହୁଦୀମାନେ ଯେଉଁ ସୌନ୍ଦର୍ଯ୍ୟମୟ ଜୀବନଯାପନ କରୁଥିଲେ ତାହା ବାରମ୍ବାର ପ୍ରଚାର କରିବ । କ୍ରନ୍ଦନ ଓ ଶୋକପ୍ରକାଶ କରି ମନକୁ ତିକ୍ତ କରିବ ନାହିଁ । ସମ୍ପୂର୍ଣ୍ଣ ଶାନ୍ତ ଓ ସ୍ୱଚ୍ଛତା ସହକାରେ ତାହା ପ୍ରକାଶ କରିବ । (LAMENTIONS RABBATI ) ଲାମେନ୍‌ସନ୍ ରବ୍ବଟିରେ ଆମର ସାଧୁସନ୍ଥମାନେ ଯେପରି କରୁଛନ୍ତି, ତୁମ୍ଭମାନଙ୍କୁ ସେହିଭଳି କରିବାକୁ ପଡ଼ିବ । ସ୍ମୃତି ଭଣ୍ଡାରରୁ ଶବ୍ଦ ନେଇଆସ ଏବଂ ତାହାକୁ ଅକ୍ଷରରେ ପ୍ରକାଶ କର । ଦୁଷ୍ଟ ଶକ୍ତି ବିରୁଦ୍ଧରେ ଏହା ହିଁ ହେବ ତୁମର ସର୍ବୋତ୍କୃଷ୍ଟ ପ୍ରତିଶୋଧ । ସେହି ଦୁଷ୍ଟମାନେ ଇହୁଦୀମାନଙ୍କର ନାମକୁ ଚିରଦିନ ପାଇଁ ଲୋପ କରି ଦେବାକୁ ଷଡ଼ଯନ୍ତ୍ର କରିଥିଲେ, କିନ୍ତୁ ଅକ୍ଷରକୁ କେହି ଲୋପ କରି ନ ପାରେ । ଶବ୍ଦ ଗୁଡ଼ିକର ଡେଣା ଥାଏ, ସେମାନେ ମହାକାଶକୁ ଉଡ଼ିଯା'ନ୍ତି ଏବଂ ଅନନ୍ତକାଳ ପର୍ଯ୍ୟନ୍ତ ବଞ୍ଚି ରହନ୍ତି ।''

ମନେହୁଏ ଯେମିତି ସାରା ନୋମେଆର୍ଗ ପ୍ରିଷ୍ଟିକ୍ ରବ୍ବି ୟାଞ୍ଚିକରଙ୍କର ଇହୁଦୀ ସଂହାର ପର୍ବର ଘଟଣାବଳୀକୁ ତାଙ୍କର ସ୍ମୃତି କୋଷରେ ସାଇତି ରଖିଥିଲେ । ଯେତେବେଳେ ଶାନ୍ତି ଓ ସ୍ୱାଭାବିକ ସ୍ଥିରତା ଫେରି ଆସିଲା ସେ ଶାନ୍ତି ଓ ସ୍ୱଚ୍ଛତା ସହକାରେ ସେହି ଘଟଣାବଳୀକୁ ପ୍ରକାଶ କରିବାକୁ ଲାଗିଲେ । ସେଥିରେ ତିକ୍ତତା ବା ଶୋକର ଚିହ୍ନ ନ ଥିଲା । ଇହୁଦୀ ସଂହାର ସାହିତ୍ୟ ବୋଲି କୁହା ଯାଉଥିବା ସେହି ଲେଖାଗୁଡ଼ିକୁ ସାହିତ୍ୟର ଇତିହାସ ନା ସାହିତ୍ୟିକ ସମାଲୋଚନା ତାହା ଆଜି ପର୍ଯ୍ୟନ୍ତ ସ୍ଥିର କରାଯାଇ ପାରୁନାହିଁ । ତଥାକଥିତ ସଂଶୋଧନବାଦୀ ଐତିହାସିକମାନେ ସମସ୍ତ ସତ୍ୟକୁ ଅସ୍ୱୀକାର କରୁଅଛନ୍ତି, ଏପରିକି ଲକ୍ଷ ଲକ୍ଷ ସଂଖ୍ୟାରେ ନାତ୍‌ସୀ ସଂହାର କଥାକୁ ମଧ୍ୟ ସ୍ୱୀକାର କରୁ ନାହାନ୍ତି । ସେଥିପାଇଁ ଇହୁଦୀ ସାହିତ୍ୟର ଶ୍ରେଣୀ ବିଭାଗ କରିବା ଅତି ଅଧିକ କଷ୍ଟ ଦାୟକ ହୋଇ ଯାଇଛି ।

କିପରି ମଣିଷର କଳ୍ପନା ସ୍ମୃତିକୁ ଶକ୍ତିଶାଳୀ କରେ ଏବଂ ଉପନ୍ୟାସ ଇତିହାସକୁ ବଳଦିଏ ତାହା ଯେଉଁମାନେ ଅଧ୍ୟୟନ କରୁଅଛନ୍ତି ସେମାନଙ୍କ କାର୍ଯ୍ୟରେ ଉପରୋକ୍ତ ସଂଶୋଧନ ବାଦୀ ଐତିହାସିକମାନେ ଅଧିକ ବାଧା ସୃଷ୍ଟି କରୁ ଅଛନ୍ତି ।

ପ୍ରତ୍ୟକ୍ଷଦର୍ଶୀ ଲେଖକ ଓ କବିମାନଙ୍କ ମଧ୍ୟରେ (ILIE WIESEL) ଇଲି ଭିସେଲ୍‌, ସର୍ବଶ୍ରେଷ୍ଠ ଅଟନ୍ତି । ସେହି ସଂହାର ଶିବିରର ଅନୁଭୂତିକୁ ସେ ଯେଉଁଭଳି କବିତ୍ୱ ଏବଂ ଔପନ୍ୟାସିକ ଶୈଳୀରେ ବର୍ଣ୍ଣନା କରିଛନ୍ତି, ତାହାର ତୁଳନା ନାହିଁ । (LEGENDS OF OUR TIME) ଜୀବନର ଅସ୍ତିତ୍ୱ ରକ୍ଷା କରିବା ପାଇଁ ସେହି ସଂହାର ଶିବିରରେ ହେଉଥିବା ବହୁବିଧ ଉଦ୍ୟମର ଜୀବନ୍ତ ଚିତ୍ର ପ୍ରକାଶ କରିବା ପାଇଁ କବି ଭିସେଲ୍‌, ଯେଉଁ ପ୍ରଯତ୍ନ କରିଛନ୍ତି ସେଭଳି ଅନ୍ୟ କେହି କରି ପାରିବେ କି ନା ସନ୍ଦେହ । ତଥାପି ଭିସେଲ୍ ସ୍ୱୀକାର କରି ଅଛନ୍ତି ଯେ, ଏମିତି ମଧ୍ୟ ବେଳେବେଳେ ହୁଏ ଯେତେବେଳେ ଉପନ୍ୟାସ ହିଁ ସତ୍ୟକୁ ଅଧିକ ବିଶ୍ୱାସଯୋଗ୍ୟ କରେ । ଠିକ୍ ଯେମିତି କଳ୍ପନା ହିଁ ସ୍ମୃତିକୁ ସହନୀୟ କରିପାରେ ।

୧୯୪୧ ମସିହା ବେଳକୁ ଲେଖକମାନଙ୍କ ନିକଟରେ ସେହି ବିଶ୍ୱସନୀୟତା ହିଁ ସବୁଠାରୁ ବଡ଼ ସମସ୍ୟାଭାବରେ ରହି ଆସିଛି । WARSAW GHETTO ୱାର୍ସ ବସ୍ତିରେ କ୍ୟାମ୍ପର ଅନ୍ତେବାସୀମାନଙ୍କର ବର୍ଣ୍ଣନା ବିଶ୍ୱସନୀୟ ହେବ ନାହିଁ ବୋଲି ଆଶଙ୍କା କରି ଏମାନୁୟେଲ୍ ରିଓବ୍ଲୁମ୍ ଲେଖକମାନଙ୍କୁ ପରାମର୍ଶ ଦେଇଥିଲେ ଯେ, ''ତୁମ୍ଭେମାନେ ବାସ୍ତବ ଘଟଣାଗୁଡ଼ିକ ମଧ୍ୟରେ ସୀମାବଦ୍ଧ ରହିବ, କଦାପି କୌଣସି ଭାବ ପ୍ରବଣତା ତୁମ ଲେଖାରେ ଯେପରି ପ୍ରକାଶିତ ନ ହୁଏ ।'' ବିସ୍ତୃତ ବର୍ଣ୍ଣନା ଆମ ଲେଖାର ପ୍ରଧାନ ଆଦର୍ଶ ହେବ । ଆମେ ସମସ୍ତଙ୍କୁ ସମ୍ପୂର୍ଣ୍ଣ ସତ୍ୟ ଘଟଣା କହି ଦେବାକୁ ଚାହୁଁ, ତାହା ଯେତେ ଯନ୍ତ୍ରଣାଦାୟକ ହେଉ ନା କାହିଁକି ।''

ଠିକ୍ ସେହି ସମୟରେ ଲୋଜ୍ ଘେଟୋ (LOOZ GHETTO) ଲୋଜ୍ ବସ୍ତିରେ ଏସ୍ ଦ୍ରତ୍ୱା ଜଣେ ହାଇସ୍କୁଲ୍ ଛାତ୍ର ଥିଲା । ଇହୁଦୀ ସଂହାରର ସମ୍ପର୍କରେ ଯଦି ଗୋଟିଏ ଚଳଚିତ୍ର ବା ଫିଲ୍ମ ହୁଏ ତାହା ଦର୍ଶକମାନଙ୍କ ଉପରେ କିଭଳି ପ୍ରଭାବ ପକାଇବ ତାହା ସେ କଳ୍ପନା କରି କବିତାଟିଏ ଲେଖିଥିଲେ । ସେ ମାନସଚକ୍ଷୁରେ ଦର୍ଶକମାନଙ୍କ ଭିତରେ ବସି ଦର୍ଶକମାନଙ୍କର ପ୍ରତିକ୍ରିୟା ସଂପର୍କରେ କବିତାଟିଏ ଲେଖିଛନ୍ତି-

(Wrapt in emotion
Quivering with pleasure,
Everyone will think,

"The film is fabulous
The scenes are wonderful,
But nothing is true,
They are only Tales from a Grotesquae Land")

''ଆବେଗ ଓ ଆନନ୍ଦରେ ମଜ୍ଜି ରହି
ଦର୍ଶକଟି ମନେମନେ ଭାବେ ।
ଛବିଟା ଅବାସ୍ତବ ।
ଦୃଶ୍ୟଗୁଡ଼ିକ ଚମତ୍କାର, କିନ୍ତୁ କୌଣସିଟା ସତ୍ୟ ନୁହେଁ
ସେଗୁଡ଼ିକ ବିଡ଼ମ୍ବିତ ଭୂମିର ସତ୍ୟ କାହାଣୀ ।''

ସେହି ବିଡ଼ମ୍ବିତ ଭୂମିର ବାସ୍ତବ ଚିତ୍ର କିପରି ଅଙ୍କନ କରାଯାଇ ପାରିବ ସେହି ଜଟିଳ ପ୍ରଶ୍ନ କିଶୋର ଦ୍ରଷ୍ଟା ଅଜାଣତରେ ଲେଖି ପକାଇଲେ । ସନ୍ଦିଗ୍ଧ ଦ୍ରଷ୍ଟା ଯାହା ଅନୁମାନ କରିଥିଲେ, ଏହି ଭିସେଲ୍ ତାହା ଦେଖିବା ପାଇଁ ବଞ୍ଚି ରହିଥିଲେ ଏବଂ ତାହା ଦେଖିସାରି ଅପରିସୀମ ମାନବିକ ଦୁଃଖକୁ ଐତିହାସିକ ଦୃଷ୍ଟିରେ ନ ଦେଖି କାଳେ ଏକ ବିଡ଼ମ୍ବିତ ଭୂମିର ଉପନ୍ୟାସ ଭଳି ଦେଖିବେ, ସେଥିପାଇଁ ସେ ସମସ୍ତଙ୍କୁ ସାବଧାନ କରାଇ ଦେଇଥିଲେ । ଭିସେଲ୍ ଭଳି ସାରା ନୋମ୍ୟେଆର୍ଗ ମଧ ତାଙ୍କର ଗଳ୍ପଗୁଡ଼ିକୁ ବିଶ୍ୱାସ ଯୋଗ୍ୟ କରିବା ପାଇଁ ସେହିଭଳି ଭାବରେ ପ୍ରସ୍ତୁତ କରିଥିଲେ । ସେ ଜଣେ ସ୍ୱାଭାବିକ ଗାଳ୍ପିକା ଥିଲେ, ଯେ କି ଅସହନୀୟକୁ ସହନୀୟ କରିବାର ଶକ୍ତି ଅର୍ଜନ କରିଥିଲେ । ସେ ଇତିହାସ ଓ ଉପନ୍ୟାସ ମଧ୍ୟରେ ପାର୍ଥକ୍ୟ ଏବଂ ତଥ୍ୟ ଓ ଗଳ୍ପ ମଧ୍ୟରେ ପାର୍ଥକ୍ୟ ଦର୍ଶାଇବା ପାଇଁ ସେ ତାହାକୁ କଳ୍ପନାର ଔଜ୍ଜ୍ୱଲ୍ୟରେ ରଞ୍ଜିତ କରି ପାରୁଥିଲେ । ପାଠକ ମନରେ ଦୁଃଖ ନ ଦେଇ ସେ ଅତ୍ୟନ୍ତ ଦୁଃଖଦ ଘଟଣାକୁ ଚମତ୍କାର ଶୈଳୀରେ ଯେପରି ପ୍ରକାଶ କରିଛନ୍ତି, ତାହା ପାଠକରି ଏହି ପୁସ୍ତକର ସମ୍ପାଦକ ଓ ପାଠକମାନେ ବିସ୍ମିତ ହୁଅନ୍ତି । କ୍ୟାମ୍ପ ଜୀବନରେ ମଧ ଏକ ପ୍ରାଣ ପ୍ରାଚୁର୍ଯ୍ୟଭରା ମାୟା ସୃଷ୍ଟି କରି ସେ ମୃତ୍ୟୁପୁରୀରେ ମଧ ବଞ୍ଚାଇବାକୁ ଶିଖାଇଛନ୍ତି ଏବଂ ସେହି ଚରିତ୍ରଗୁଡ଼ିକୁ ପାଠକର କଳ୍ପନା ରାଜ୍ୟରେ ବଞ୍ଚାଇ ରଖିଛନ୍ତି । ତାହା ହେଉଛି ଜଣେ ସଫଳ ଗାଳ୍ପିକାର ଦକ୍ଷତାର ନିଦର୍ଶନ । ଅତ୍ୟନ୍ତ ସଂକ୍ଷେପରେ ସେହି ଗଳ୍ପ ଗୁଡ଼ିକ ସୃଷ୍ଟି କରିବା, ତାଙ୍କର ବିଶେଷ କୃତିତ୍ୱ ।

ବିଭିନ୍ନ ଚରିତ୍ର ସମ୍ପର୍କରେ ସାରାଙ୍କ ଆଗ୍ରହ ଋଷିଆନ୍ ଲେଖକ ଡୋଷ୍ଟୋଏଭେସ୍କିଙ୍କ ସଦୃଶ ନୁହେଁ । ମୃତ୍ୟୁ ଶିବିରରେ ବାସ୍ତବତା ଭିତରେ ସେହି ଚରିତ୍ରଗୁଡ଼ିକ ବଞ୍ଚିଥା'ନ୍ତି । ସାରା ମନେ ପକାଇଥିବା ବ୍ୟକ୍ତି ଚରିତ୍ରଗୁଡ଼ିକ ଯଦିଓ ବେଶ୍ ଆମୋଦ ଦାୟକ ତଥାପି

ସେମାନେ ସେହି ଶିବିରରେ ଘଟୁଥିବା ଘଟଣାଗୁଡ଼ିକରେ ବନ୍ଧା । ପରିଣାମ ସ୍ୱରୂପ ସେହି ବ୍ୟକ୍ତିଗତ ଜୀବନର ସମାହାର ହିଁ ଶିବିର ଜୀବନର ଅନୁଭୂତିର ପ୍ରତୀକ । ସାରା ନୋମେଥାର୍ଗଙ୍କର ଗଳ୍ପ ଲେଖା ଶୈଳୀର ଉଦାହରଣ ସ୍ୱରୂପ ଆମେ (Old Words-New meanings) 'ପୁରୁଣା ଶବ୍ଦର ନୂତନ ଅର୍ଥ' ଶୀର୍ଷକ ଗଳ୍ପଟି ନେଇପାରୁ । ଏହାକୁ ସମ୍ପୂର୍ଣ୍ଣ ପୁସ୍ତକର ଏକ ସଂକ୍ଷିପ୍ତ ସାର କହିଲେ ଅତ୍ୟୁକ୍ତି ହେବ ନାହିଁ । ସାଧାରଣ ପାଠକ ନିକଟରେ ଏହା ତରୁଣୀ 'ଫେଲା'ର ସରଳ ଓ ସଂକ୍ଷିପ୍ତ ଜୀବନୀ ବ୍ୟତୀତ ଅନ୍ୟ କିଛି ନୁହେଁ । ଏଥିରେ ସାରା ନୋମେଥାର୍ଗ ଅତ୍ୟନ୍ତ ନିର୍ମମ ଜୀବନ ଯାତ୍ରାକୁ ପ୍ରକାଶ କରି ଦେଇଛନ୍ତି । ଅସୁସ୍ଥ, କ୍ଷୁଧିତ ବନ୍ଦିନୀମାନେ ବଞ୍ଚି ରହିବା ପାଇଁ ପରସ୍ପରକୁ ଠକାନ୍ତି । ଏହା ଏଭଳି ଏକ ଅର୍ଥନୀତି ଯେଉଁଠାରେ ଟିକିଏ ରୁଟି ବି 'ଜୀବନରକ୍ଷା ରୁଟି', ଯାହା କି ଅନ୍ୟଜଣଙ୍କର । ଯାହାର ରୁଟି ଖଣ୍ଡେ ଥାଏ ସେ ଏକଥା ଜାଣେ । ମୃତ ଏବଂ ମୃତ୍ୟୁ ପାଇଁ ଅଭିପ୍ରେତ ମଣିଷମାନଙ୍କର ପରିଧାନଗୁଡ଼ିକ ଜମା ହେଉଥିବା ଗୃହ 'କାନାଡ଼ା' ଏବଂ ଡାକ୍ତର ମେଙ୍ଗେଲ୍ ଓ ତା'ର ସହଯୋଗୀମାନଙ୍କ ଦ୍ୱାରା ଅବିଚାରିତ ଭାବେ 'ଗ୍ୟାସ୍'କୁ 'ବଛାବଛି' ଶବ୍ଦ ଗୁଡ଼ିକ ତାହାର ଉଦାହରଣ ।

ଆମର ଏବଂ ଅନ୍ୟ ପାଠକମାନଙ୍କର ଧାରଣା ଯେ ସାରାଙ୍କର ପ୍ରକାଶନ ଶୈଳୀ ଯୋଗୁଁ ସେହି ଶବ୍ଦଗୁଡ଼ିକର ଭୟାବହତା ଜାଣି ହୁଏ ନାହିଁ ।

ଏକ ସଂକ୍ଷିପ୍ତ ଅବଧାରଣାରୁ ସାରା ତାଙ୍କର ଗଳ୍ପ ଆରମ୍ଭ କରନ୍ତି । କ୍ୟାମ୍ପ୍ ଜୀବନର କୌଣସି ଆଦର୍ଶ ନ ଥିବାରୁ ସେଠାରେ ଭାଷା ମଧ୍ୟ ବିକୃତ ହୋଇଯାଏ ଏବଂ ଆଦର୍ଶ ପ୍ରତିମୂର୍ତ୍ତିଗୁଡ଼ିକ ମଧ୍ୟ ସମତା ହରାଇ ବସନ୍ତି । ଉଦାହରଣ ସ୍ୱରୂପ (Organise) ଅର୍ଗାନାଇଜ୍ ଶବ୍ଦର ଅର୍ଥ ହେଉଛି- ସାମାଜିକ ସଙ୍ଗଠନ ବା ଜନ ମଙ୍ଗଳ କାର୍ଯ୍ୟ ସହ ସମ୍ପୃକ୍ତ । କିନ୍ତୁ ଏଠାରେ ଏହାର ଅର୍ଥ ହେଉଛି, ସୁସ୍ଥ ସବଳ ହୋଇ ବଞ୍ଚି ରହିବା ପାଇଁ 'ଯୋଗାଡ଼' କରିବାକୁ ବୁଝାଏ । ସାରା ଇହୁଦୀ ଲୋକ କଥା ଶୈଳୀରେ ତାଙ୍କ ଗଳ୍ପ ଗୁଡ଼ିକ ଲେଖିଛନ୍ତି । ଯଦିଓ ସେଗୁଡ଼ିକ ସରଳ ଭାବରେ ଲେଖା ହୋଇଅଛି ତାହା ପାଠକମାନଙ୍କୁ ଜଟିଳ ବିଷୟଗୁଡ଼ିକ ବୁଝିବା ପାଇଁ ପ୍ରରୋଚିତ କରେ, ଯାହା କି ଗଳ୍ପର ବାହ୍ୟ ରୂପଠାରୁ ସମ୍ପୂର୍ଣ୍ଣ ଭିନ୍ନ । ସୁତରାଂ ଏହି ଗଳ୍ପରେ ସେ ଶିବିର ଜୀବନର ଆଦର୍ଶ ଶୂନ୍ୟତା ଓ ଭାଷାର ପ୍ରକୃତ ଅର୍ଥର କିପରି ଚରମ ବିପର୍ଯ୍ୟୟ ହୋଇଛି ତାହା ଦେଖାଇ ଦେଇଛନ୍ତି । ତରୁଣୀ 'ଫେଲା' ଅର୍ଗାନାଇଜ୍ ଶବ୍ଦର ଯେ ପ୍ରକୃତ ଅର୍ଥ ବୁଝିଛି ତାହା ନୁହେଁ, ତାକୁ କାର୍ଯ୍ୟରେ ପରିଣତ କରିଛି । ଫଳରେ ସେ ନୂତନ ବାସ୍ତବତାର ଏକ ମୂର୍ତ୍ତିମନ୍ତ ପ୍ରତୀକ ହୋଇ ଯାଇଛି । ଅବଶ୍ୟ  ପାଠକ ଫେଲାର୍ ଚରିତ୍ର ବିଷୟରେ କୌତୁହଳୀ ହୋଇ ଉଠିଛନ୍ତି, ଯେ କି ଶିବିର ଜୀବନର ଭୟାବହତାକୁ ବହୁତ ପଛକୁ ଠେଲି ଦେଇଛି,

ଯାହାକି ସେମାନଙ୍କ ମନରେ ଅବଚେତନ ମାନସିକତାର ଉଦ୍ରେକ କରେ । ଉଦାହରଣ ସ୍ୱରୂପ ଫେଲା ସମ୍ପର୍କରେ ସାରାଙ୍କର ସଂକ୍ଷିପ୍ତ ବିବରଣୀକୁ ବିଚାର କରନ୍ତୁ– ୧୮ ବର୍ଷ ବୟସରେ ସେ ବିୟଲଷ୍ଟୋକ୍ ବସ୍ତି ଭିତରକୁ ତା'ର ପରିବାର ପାଇଁ ବାହାରୁ ଖାଦ୍ୟ ଆଣୁଥିଲାବେଳେ ଧରା ପଡ଼ିବାରୁ ତାକୁ ଆଉସ୍‌ଭିଡ୍‌ଜକୁ ପଠାଇ ଦିଆଯାଇଥିଲା । ହାଲୁକା ରଙ୍ଗର ସୁନ୍ଦର କେଶର ଡେଙ୍ଗା, ପତଳା ଝିଅଟି । ତାକୁ ସୁନ୍ଦରୀ କୁହାଯାଇ ପାରିବ ନାହିଁ । କିନ୍ତୁ ତା'ର ଏପରି ଗୁଣ ଥିଲା ଯାହାକି ତୁମେ ତାକୁ ଅନାଇବାକୁ ବାଧ୍ୟ ହେବ । ସେ ବିନା ପରିବାର ଓ ବିନା ବନ୍ଧୁବାନ୍ଧବରେ ଚଳୁଥିବା ସତ୍ତ୍ୱେ ତାକୁ ଦେଖିଲେ ମନେ ହୁଏନା ଯେ ସେ ସାହାଯ୍ୟ ସମ୍ବଳ ଶୂନ୍ୟ ।

ଯଦିଓ ଅଳ୍ପ କେତେଗୋଟି ବାକ୍ୟରେ ଫେଲାକୁ ବର୍ଣ୍ଣନା କରାଯାଇଅଛି, ପାଠକମାନେ ସେତିକିରୁ ତା' ସମ୍ପର୍କରେ ଯଥେଷ୍ଟ ଜାଣିପାରିଛନ୍ତି । ସେ ତା'ର ପରିବାର ପାଇଁ ବାହାରୁ ଗୋପନରେ ଖାଦ୍ୟ ଆଣୁଥିବା ବେଳେ ଧରାପଡ଼ିଯିବା ଘଟଣାରୁ ସ୍ପଷ୍ଟ ବୁଝାଯାଏ ଯେ, ସେ ଜଣେ ସାହସୀ; ଥିଲାବାଲା ଏବଂ ଅତ୍ୟନ୍ତ ନିଷ୍ପାପର ମହିଳା ଥିଲା । ସେ ଏମିତି କଦାପି ଦୁର୍ବଳା ଅବଳା ନଥିଲା । ସେ କେବଳ ନିଜ ପାଇଁ ଚିନ୍ତା କରୁ ନଥିଲା । ସାରାଙ୍କ ବର୍ଣ୍ଣନାରୁ ଆମେ ଏହା ମଧ୍ୟ ବୁଝି ପାରୁ ଯେ 'ବସ୍ତି'ରେ ବନ୍ଦୀ ଜୀବନ ବଡ଼ ଦୁର୍ବିସହ ଥିଲା । ବନ୍ଦୀମାନେ ବାହାର ଦୁନିଆ ସହ ବେଆଇନ୍ ଚୋରା ବେପାର କାମ ନକଲେ ଅନାହାରରେ ମରିବା ସେମାନଙ୍କ ପାଇଁ ଅବଧାରିତ ଥିଲା । ବସ୍ତିରେ ଚୋରା ବେପାର ଦୁଇଆଡୁ ଥିଲା । ଅର୍ଥାତ୍ ବସ୍ତିରୁ ମୂଲ୍ୟବାନ ଜିନିଷ ବାହାରକୁ ଚାଲାଣ ହେଉଥିଲା ଏବଂ ତାହା ବଦଳରେ ବାହାର ଖାଦ୍ୟ ଦ୍ରବ୍ୟ ବସ୍ତିକୁ ଆସୁଥିଲା । ଫେଲାକୁ ଏକ ସୁନ୍ଦରୀ ବୋଲି ବର୍ଣ୍ଣନା କରିବାକୁ ଲେଖିକା କୁଣ୍ଠା ପ୍ରକାଶ କରିଥିଲେ ମଧ୍ୟ ତାହାର ଶାରୀରିକ ଆକର୍ଷଣୀୟତାର ବର୍ଣ୍ଣନା ନ କରି ଛାଡ଼ି ନାହାନ୍ତି । ଫେଲାକୁ ଏକାକିନୀ ବୋଲି ବର୍ଣ୍ଣନା କରି ଲେଖିକା ତାହା ପ୍ରତି ପାଠକମାନଙ୍କ ଭିତରେ ସହାନୁଭୂତି ଓ ସମବେଦନା ସୃଷ୍ଟି କରିଛନ୍ତି । ସେମାନେ ବୁଝି ପାରିଛନ୍ତି ଯେ, ଯେଉଁ ପରିବାର ପାଇଁ ଖାଦ୍ୟ ଚୋରାରେ ଆଣିଲାବେଳେ, ସେ ଧରାପଡ଼ି ଦଣ୍ଡିତ ହୋଇଛି ସେମାନେ କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପରେ ନିଧନ ହୋଇଛନ୍ତି । ସେହି ନିଧନ ସମ୍ବାଦଟି ସାରା ପାଠକମାନଙ୍କୁ ପରୋକ୍ଷରେ ଜଣାଇଦେଇ ସେମାନଙ୍କୁ ଶିବିର ଜୀବନର ଅଧିକ ଭୟାବହତା ଭିତରକୁ ଟାଣି ନ ନେଇ ଫେଲାର ବେଦନା ଦାୟକ ଚିତ୍ର ପ୍ରତି ଦୃଷ୍ଟି ଆକର୍ଷଣ କରିଛନ୍ତି । ''ସେ ସହାୟ, ସମ୍ବଳ ଶୂନ୍ୟ ବୋଲି ଜଣାଯାଏ ନାହିଁ'' । ଏହା ବର୍ଣ୍ଣନା କରି ଲେଖିକା, ଫେଲା ସମ୍ପର୍କରେ ପାଠକମାନଙ୍କର ଅଧିକ ଆଗ୍ରହ ସୃଷ୍ଟି କରିଛନ୍ତି । ସେହି ଭୟଙ୍କର ପରିବେଶରେ ଫେଲା କିପରି 'ଯୋଗାଡ଼' କରି ପାରୁଛି ତାହା ଆମେ ଦେଖିବାକୁ ଅପେକ୍ଷା କରିବା । ନାତ୍‌ସୀ

ଶାସନାଧୀନରେ ରହିଥିବା ଦୁଃଖ ଦାୟକ ଜୀବନ ଭିତରେ ସୁଦ୍ଧା ଫେଲାର ସୌନ୍ଦର୍ଯ୍ୟମୟ ଜୀବନ ପାଠକମାନଙ୍କ ମନରେ ବିପୁଳ କୌତୁହଳ ସୃଷ୍ଟି କରିଛି ଏବଂ କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପର ହୃଦୟ ବିଦାରକ ଦୃଶ୍ୟକୁ ମ୍ଳାନ କରଦେଇଛି ।

ଏହିଭଳି ଏକ ଭାବମୂର୍ତ୍ତି ସୃଷ୍ଟି କରିବା ପରେ ଲେଖିକା ନିଜେ ସେଥିରେ ଏକ ଚରିତ୍ର ନ ହୋଇ ଚରିତ୍ରର ଚିତ୍ରକର ସାଜିଛନ୍ତି । ଡାରଉଇନ୍‌ଙ୍କର ''ଯୋଗ୍ୟତମ ହିଁ ବଞ୍ଚିରହେ'' ତତ୍ତ୍ୱ ପରିବର୍ତ୍ତେ ''ନିର୍ଦ୍ଦୟତମ ହିଁ ବଞ୍ଚି ରହେ'' ଏହି ମୂଲ୍ୟବୋଧକୁ ଲେଖିକା ଉପସ୍ଥାପିତ କରିଅଛନ୍ତି । ଅପରପକ୍ଷରେ ତରୁଣୀ ଫେଲା ନୂତନ ମୂଲ୍ୟବୋଧ ସହ ନିଜକୁ ଖାପ ଖୁଆଇ ଥିବାର ମନେ ହୁଏ । ଯେଉଁ ନୂତନ ସାମାଜିକ ମୂଲ୍ୟବୋଧ ମାତ୍ର ଦୁଇଟି ଶ୍ରେଣୀ ସ୍ୱୀକାର କରେ- ଶିକାର ଓ ଶିକାରୀ । ମଝିରେ ଆଉ କିଛି ନ ଥାଏ । ଫେଲା, ନିଜର ସମୁଦାୟ ବିବେକକୁ ବିସର୍ଜନ ଦେବାକୁ ହେଉପଛେ, ସେ ଗୋଟିଏ ଶିକାର ନ ହେବାପାଇଁ ଦୃଢ଼ ସଙ୍କଳ୍ପ କରିଅଛି । ଫେଲା ତା'ର କଥୋପକଥନକୁ ଏକ ନାସ୍ତିବାଚକ କ୍ରୋଧ ପ୍ରକାଶ କରି କହିଛି, ମୋତେ କିଛି ''ଯୋଗାଡ଼'' କରିବାକୁ ପଡ଼ିବ । ସାରା କହିଛନ୍ତି ଯେ ଏହି ପ୍ରଥମଥର ପାଇଁ ଆଉସ୍‌ଭିଡ୍‌ଜ୍‌ରେ ଚଳୁଥିବା ଅର୍ଗାନାଇଜ୍ ବା 'ଯୋଗାଡ଼' ଶବ୍ଦ ଶୁଣିବାକୁ ପାଇଲି । 'ଯୋଗାଡ଼' ଶବ୍ଦଟି କ୍ୟାମ୍ପରେ ଏକ ସାଧାରଣ ଶବ୍ଦ ହୋଇ ଯାଇଥିଲା । ସାରାଙ୍କର ତୀକ୍ଷ୍ଣ ସ୍ମୃତିଶକ୍ତିର ପରିଚୟ ଏଥିରୁ ମିଳେ । ଏଠାରେ ନାଟକୀୟ ସତ୍ୟ ବାସ୍ତବ ସତ୍ୟକୁ ଘୋଡ଼ାଇ ପକାଏ ।

କିଛିଦିନ ପରେ ସାରା ଯେତେବେଳେ ଫେଲାକୁ ଦେଖନ୍ତି, ସେତେବେଳେ ସେହି ତରୁଣୀଟି ଅଖାଭର୍ତ୍ତି ରୁଟି ନେଇକରି ଯାଉଥାଏ । ଆଉସ୍‌ଭିଡ୍‌ଜ୍‌ରେ ତାହା ଏକ ବିରଳ ଦୃଶ୍ୟ । ତାହା ଦେଖି ସାରା ସଙ୍ଗେ ସଙ୍ଗେ ସନ୍ଦେହ କରିଛନ୍ତି, ଯେ ଫେଲା ରୋଗୀମାନଙ୍କ ଠାରୁ ସେଗୁଡ଼ିକ ଚୋରି କରି ଆଣିଛି ଏବଂ ସେହି ଅଭିଯୋଗ ଫେଲା ଆଗରେ ପ୍ରକାଶ କରିଦିଅନ୍ତି । କିନ୍ତୁ ଫେଲା ଯାହାର ହୃଦୟ ସେ ପର୍ଯ୍ୟନ୍ତ କଠିନ ହୋଇ ନାହିଁ, ସେ ସାରାଙ୍କୁ ବୁଝାଇ ଦେଉଛନ୍ତି ଯେ ସେ ତ ଆଦୌ ଚୋରି କରି ନାହିଁ ବରଂ ରୋଗୀମାନଙ୍କଠାରୁ ସେମାନଙ୍କ ଶୁଖିଲା ରୁଟି ବଦଳରେ ସେମାନଙ୍କୁ ଆଳୁ ପିଆଜ ଝୋଳ ଯୋଗାଇ ଦେଇ ମହତ୍ ସେବା କରୁଛି କାରଣ ସେପରି ଶୁଖିଲା ରୁଟି ସେମାନେ ଚୋବାଇ ପାରନ୍ତି ନାହିଁ । ଏହିଭଳି ବର୍ଣ୍ଣନା କରି ସାରା ପାଠକମାନଙ୍କୁ ଶିବିର ଜୀବନର ଅର୍ଥନୀତିର ଏକ ପ୍ରାଞ୍ଜଳ ଚିତ୍ର ଦେଇଛନ୍ତି । ଆଳୁ ଓ ପିଆଜ ବଦଳରେ ରୁଟି ଦିଆଯାଏ ଓ ସେହି ଆଳୁ ପିଆଜ ଝୋଳ ଅଧିକ ରୁଟି ଅର୍ଜନ କରେ । ବହୁ ପରିମାଣରେ ରୁଟି ଏକାଠି ହେଲେ ତାହା ବଦଳରେ ସିଗାରେଟ୍ ଅଣାଯାଏ । ସିଗାରେଟ୍ ବଦଳରେ ସବୁପ୍ରକାର ଆବଶ୍ୟକ ଜିନିଷ ମିଳେ । ଏପରିକି ସିଗାରେଟ୍ ଲାଞ୍ଚ ଦେଲେ ଅଧିକାରୀମାନେ ଭଲ କାମ ଦିଅନ୍ତି । ଫେଲାର

ଔଦ୍ୟୋଗିକ ବର୍ଣ୍ଣନା କରିବାକୁ ଯିବାବେଳେ ସାରାଙ୍କ ମନରେ ନୈତିକତା ଓ ସାଧୁତାର ଦ୍ୱନ୍ଦ ମଧ ଉଦ୍ରେକ ହୁଏ । ଶିବିରର ଜୀବନଯାପନ ପ୍ରଣାଳୀ ସହିତ ତୁଳନା କଲେ ଫେଲାଙ୍କର ବିନିମୟ କାର୍ଯ୍ୟ ଯଦିଓ ଅତ୍ୟନ୍ତ କଦର୍ଯ୍ୟ ତାହା ଅପେକ୍ଷାକୃତ ଉପକାରୀ ଏବଂ ବୋଧହୁଏ ହିତକାରୀ । ''ମୁଁ ତାହା ମୁହଁକୁ ଅନେଇ ଠିଆ ହୋଇ ରହିଲି । ତାକୁ କ'ଣ କହିବି ଓ ତା'ର କଥାର କିପରି ପ୍ରତିକ୍ରିୟା ପ୍ରକାଶ କରିବି ଭାବି ପାରିଲି ନାହିଁ । ଅତ୍ୟନ୍ତ ରୋଗୀଣା ମହିଳାମାନଙ୍କ ମୁହଁରୁ ଖାଦ୍ୟ ନେଇଯିବା ନିଶ୍ଚୟ ଏକ କଦର୍ଯ୍ୟ ଉପାର୍ଜନ । କିନ୍ତୁ ତାହାହିଁ ସେମାନେ ଚାହୁଥିଲେ, ସେହି ଶୁଖିଲା ରୁଟି ଅପେକ୍ଷା ଘର ରନ୍ଧାର ବାସନା ବାହାରୁଥିବା ଆଳୁ ପିଆଜ ଝୋଳକୁ ସେମାନେ ଅଧିକ ପସନ୍ଦ କରୁଥିଲେ । ତେଣୁ ଫେଲାକୁ ହସ୍‌ପିଟାଲ୍‌ରୁ ତଡ଼ିଦେବା ଅର୍ଥ ଥିଲା ସାରାଦିନ ସେହି ଝୋଳଟିକକ ପାଇଁ ଅପେକ୍ଷା କରି ରହିଥିବା ମହିଳାମାନଙ୍କୁ ସେଥିରୁ ବଞ୍ଚିତ କରିବା । କାରଣ ଆଉ କେହି ସେହି ଝୋଳ ଟିକକ ଯୋଗାଡ଼ କରିବାକୁ ନଥିଲେ । ଯେଉଁ ରାକ୍ଷସ ରାଜ୍ୟରେ କେବଳ ଶୋଷକମାନେ ରହିବାକୁ ଅନୁମତି ପାଆନ୍ତି, ସେଠାରେ ଫେଲା ହୁଏତ ଜଣେ ହିତୈଷୀ ଶୋଷକ । ଆଉସ୍‌ଭିଟ୍‌ଜ୍‌ର ମାପକାଠିରେ ଫେଲାର ନୈତିକତାକୁ A+ ନମ୍ବର ଦିଆଯାଇପାରେ । କିନ୍ତୁ ବୃହତ୍ତର ଦୃଷ୍ଟିରୁ ତାକୁ କେତେ ନମ୍ବର ଦେବେ ? କେହି ତାକୁ ଏତେ ନମ୍ବର ଦେବାକୁ ସାହସ କରିବେ କି ?''

ପରେ ସାରା ଯେତେବେଳେ ଫେଲାକୁ ଭେଟିଲେ ସେ ସେତେବେଳକୁ ତା'ର ଲକ୍ଷ୍ୟ ସ୍ଥଳରେ ପହଞ୍ଚି ସାରିଥିଲା । ସମ୍ଭବତଃ ତା'ର ରୁଟି ସିଗାରେଟ୍ ବିନିମୟରେ ସେ କାନାଡା (ଗୋଦାମ୍ ଘର)ରେ କାମଟିଏ ପାଇ ଯାଇଥିଲା, ଯେଉଁଠାରେ ମୁମୂର୍ଷୁ ଓ ମୃତ ବ୍ୟକ୍ତିଙ୍କ ଦ୍ୱାରା ପରିତ୍ୟକ୍ତ ମୂଲ୍ୟବାନ ଓ ଆରାମ୍‌ଦାୟକ ବସ୍ତୁଗୁଡ଼ିକ ମିଳି ଯାଉଥିଲା । ସେହି ଗୋଦାମ୍‌ର କମାଣ୍ଡୋମାନଙ୍କର ସମ୍ପର୍କରେ ସାରାଙ୍କର ଗୋଟିଏ ବାକ୍ୟ ବିଶେଷ ଉଲ୍ଲେଖ ଯୋଗ୍ୟ ମନେ ହୁଏ । ସେମାନେ ଲାଲ୍ ରୁମାଲ୍ ମଥାରେ ଏବଂ ଅଣ୍ଟାରେ ବେଲ୍‌ଟ୍ ପିନ୍ଧିଥା'ନ୍ତି ଯାହାକି ସେହି ଝିଅମାନଙ୍କ ମାପରେ ତିଆରି ହୋଇଥାଏ । ଆଉସ୍‌ଭିଟ୍‌ଜ୍‌ର ଧୂସର ପୃଷ୍ଠଭୂମିରେ ଫେଲାଙ୍କର ସେହି ଲାଲ୍‌ରଙ୍ଗର ଝଲକ ବେଶ୍ ଆକର୍ଷଣୀୟ । ସେ ଲାଲ ରୁମାଲ୍ ହଲାଇ ସାରାଙ୍କର ଦୃଷ୍ଟି ଆକର୍ଷଣ କରନ୍ତି ତାଙ୍କର ବିବେକ ଦଂଶନ କରେ ନାହିଁ । ଏମିତି ଘଟିଲା ଯେ, ଫେଲାଙ୍କର ସଙ୍ଗଠନ ବା ଯୋଗାଡ଼ କରିବାର ସାମର୍ଥ୍ୟ ଆଉସ୍‌ଭିଟ୍‌ଜ୍‌ର ନିଷ୍ଠୁରତା ପାଖରେ ହାର ମାନିଲା ।

ଯେଉଁଦିନ ଗୋଦାମ ଘରର ଏକ ବ୍ୟାଗ୍ ଭିତରୁ ମୃତଶିଶୁର ଶବ ସେ ଦେଖିଲା ତା'ର ଛାତି ଥରି ଉଠିଲା । ସେହି ଶିଶୁମାନଙ୍କୁ ବଞ୍ଚାଇ ରଖିବା ପାଇଁ ତାଙ୍କ ପିତାମାତା

ବ୍ୟାଗ୍ ଭିତରେ ଲୁଚାଇ ରଖିଥିଲେ କିନ୍ତୁ ଆତଙ୍କବାଦୀମାନେ ସେମାନଙ୍କଠାରୁ ବ୍ୟାଗ୍ ଛଡ଼ାଇ ନେଇ ଗୋଦାମଘରେ ରଖିଦେବାରୁ ଶିଶୁମାନଙ୍କର ଶ୍ୱାସରୁଦ୍ଧ ହୋଇ ସେହି ବ୍ୟାଗଭିତରେ ମୃତ୍ୟୁ ହୋଇ ଯାଇଥିଲା । ତଥାକଥିତ ସୁଦୃଶ୍ୟ ପୋଷାକ ଓ ଜିନିଷଗୁଡ଼ିକ-ଯାହାକି ମୃତବ୍ୟକ୍ତିମାନଙ୍କର ଥିଲା ସେଗୁଡ଼ିକ ପ୍ରତି ଫେଲାଙ୍କର କୌଣସି ଆଗ୍ରହ ରହିଲା ନାହିଁ । ଅବଶ୍ୟ ଆଉସ୍‌ଭିଦ୍‌ଜ୍‌ର ଗୋଦାମ ଘର ମୃତ୍ୟୁ ଶିବିର ତଥା ଶିଶୁମାନଙ୍କର କଫିନ୍ ହୋଇଥିବା ବ୍ୟାଗ୍ ସମ୍ପର୍କରେ ପୂର୍ବରୁ ବହୁ ଲେଖକ ବର୍ଣ୍ଣନା କରି ଯାଇଛନ୍ତି କିନ୍ତୁ ସେଗୁଡ଼ିକ ସହ ବ୍ୟକ୍ତି ଚରିତ୍ରର ଯେଉଁ ସମ୍ପର୍କ ତାହାକୁ ନାଟକୀୟ ଶୈଳୀରେ ସାରା ଯେପରି ବର୍ଣ୍ଣନା କରିଛନ୍ତି, ସେଭଳି ଅନ୍ୟ କେହି କରି ପାରି ନାହାନ୍ତି ।

ଏହିଭଳି ଭାବରେ ଶିବିରର ବିଭୀଷିକାର ଦୃଶ୍ୟକୁ ବ୍ୟକ୍ତି ବିଶେଷଙ୍କ ମଧ୍ୟରେ ସୀମାବଦ୍ଧ ରଖି ଲେଖିକା ସାରା ଜଣେ ଦଲିଲ୍ ସଂଗ୍ରାହକ ଭୂମିକାରୁ ଜଣେ ଔପନ୍ୟାସିକା ହୋଇ ଯାଇଛନ୍ତି । ତାଙ୍କର ଏହି ଔପନ୍ୟାସିକା ଭୂମିକା ଆଉସ୍‌ଭିଦ୍‌ଜ୍‌ର ପଟ୍ଟଭୂମିରେ ସାଧୁତା ଓ ନୈତିକତାର ଯେଉଁ ଜଟିଳ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି ସେ ସମ୍ପର୍କରେ ପାଠକମାନଙ୍କୁ ସଚେତନ କରିବା ସାରା ନୋୟେଆର୍ଗଙ୍କର ଔପନ୍ୟାସିକା ଭୂମିକା ଦ୍ୱାରା ସମ୍ଭବ ହୋଇଛି । ଫେଲା ଜଣେ ରୁଚି ସମ୍ପନ୍ନା ମଣିଷ ଥିଲା । ନିଜ ପରିବାର ପ୍ରତି ଦାୟିତ୍ୱ ସେ ବୁଝୁଥିଲା, କେବଳ ସ୍ୱାଭାବିକ ପରିସ୍ଥିତିରେ ନୁହେଁ, ବସ୍ତିର କଠିନ କଠୋର ପରିବେଶରେ ମଧ୍ୟ । ଯେତେବେଳେ ଆଉସ୍‌ଭିଦ୍‌ଜ୍‌ରେ ସେ ସମ୍ପୂର୍ଣ୍ଣ ଏକୁଟିଆ ହୋଇଗଲା, ଯେ କୌଣସି ମୂଲ୍ୟ ବିନିମୟରେ ସେ ବଞ୍ଚିବାକୁ ସ୍ଥିର କଲା । ବଞ୍ଚି ରହିବାର ଆଶା ନିରାଶା ମଧ୍ୟରେ ସେ 'ଯୋଗାଡ଼'ରେ ଲାଗିଗଲା ଯାହାକୁ କି ଖୁବ୍ ଖରାପ ବୋଲି କୁହାଯାଇ ପାରିବ ନାହିଁ । ସେ ରୋଗୀମାନଙ୍କଠାରୁ ରୁଟି ସଂଗ୍ରହ କରୁଥିଲା ଓ ତା' ବଦଳରେ ସେମାନଙ୍କୁ ଆଳୁ ପିଆଜ ଝୋଳ ଦେଉଥିଲା । 'କାନାଡ଼ା'ରେ କାମ କରିବା ତା' ଅଧଃପତନର ନିଦର୍ଶନ । ଯଦିଓ ସେ କାହାରିକୁ ଶାରୀରିକ ଆଘାତ ଦେଉ ନ ଥିଲା ତା'ର ଭୂମିକାକୁ ସଢ଼ା ମାଂସର ଅଳ୍ପ ଦୂରରେ ବସିଥିବା ଗୃଧ୍ର ସହିତ ତୁଳନା କରାଯାଇ ପାରେ । କିନ୍ତୁ ତା' ସର୍ଶକାତର ହୃଦୟ ତା'କୁ 'କାନାଡ଼ା'ରେ ଅଧିକ ଦିନ ରଖାଇ ଦେଲା ନାହିଁ । ମନଃସ୍ତାତ୍ତ୍ୱିକ ବା ଅନ୍ତରସ୍ଥ ଅସ୍ତିତ୍ୱ ରକ୍ଷା କରିବା ପାଇଁ ତାକୁ ଅଧିକ ଶାରୀରିକ ବିପଦ ଭିତରକୁ ପ୍ରବେଶ କରିବା ପାଇଁ ପଡ଼ିଲା ।

ଏହିଠାରେ କେହି ମନେକରି ପାରନ୍ତି ଯେ ଗପଟି ଶେଷ ହୋଇଗଲା । କିନ୍ତୁ ସାରାଙ୍କ ଭଳି ଦକ୍ଷ ଗାଳ୍ପିକା 'ବେଲେ' ନୃତ୍ୟରେ ଯେପରି ସଙ୍ଗୀତର ଶେଷାଂଶକୁ ଟିକେ ବଢ଼େଇ ଦିଆଯାଏ, ଲୋକ ଗଳ୍ପ ପରମ୍ପରା ଅନୁସାରେ ସେ ଗଳ୍ପ ଭିତରେ ଗଳ୍ପ ଲେଖି ଦେଇଛନ୍ତି ।

ଆମକୁ କିଛି ସମୟ ପାଇଁ ସାରା ଫେଲା ନିକଟରୁ ଅନ୍ୟତ୍ର ନେଇ ଯାଇଛନ୍ତି ସଂହାର ପର୍ବର ବିରତି ଭଳି । ଅବଶ୍ୟ ତାହା ଠିକ୍ ବିରତି ନୁହେଁ, 'କାନାଡ଼ା' କମାଣ୍ଡୋମାନେ ଶିଶୁ ଶବଗୁଡ଼ିକ ଅନ୍ୟତ୍ର ପଠାଇଦେବାର ଦାୟିତ୍ୱ ନେଇଛନ୍ତି । ଏତିକିବେଳେ ନାତ୍‌ସୀ ଡ୍ରାଇଭର ଗୋଟିଏ ପାଉଁଶ ବୋଳା ଅଖାକୁ ଅକ୍ଷମଶାଳାରେ ଥୋଇ ଦେଇ ଯାଇଛି । ତାହା ପାଉଁଶବୋଳା ଅଖା ନୁହେଁ । ତାହା ଆପାଦମସ୍ତକ ପାଉଁଶ ବୋଳା ହୋଇଥିବା ଫେଲା । ସେ ତାହାର ନିଶ୍ଚିତ 'ମୃତ୍ୟୁ' ଓ ପୁନର୍ଜନ୍ମର ପ୍ରତୀକାତ୍ମକ ଗଳ୍ପଟି ଶେଷ କଲା । (ନାତ୍‌ସୀ ଡ୍ରାଇଭରଟି ଆପାଦମସ୍ତକ ପାଉଁଶରେ ବୋଳି ହୋଇଥିବା ଫେଲାକୁ ବୋଧହୁଏ ଏକ ଜାଗତିକ ଜୀବ ବୋଲି ବିଶ୍ୱାସ କରି ନାହିଁ) ଫେଲା ପୁଣି ଥରେ ନିଜ ଜୀବନକୁ ରକ୍ଷା କରିଦେଇଛି- ଅନ୍ୟ କାହାରି ଜୀବନ ବିନିମୟରେ ନୁହେଁ, ତାହା ସମ୍ଭବ ହୋଇଛି ତା'ର ପ୍ରତ୍ୟୁତ୍ପନ୍ନମତିତା ଓ ବିପଦର ଝୁଙ୍କି ନେବା ଯୋଗୁଁ ଏବଂ ସୌଭାଗ୍ୟ ଯୋଗୁଁ । ସେ ଡାକ୍ତର ମେଙ୍ଗେଲ ଦ୍ୱାରା ଗ୍ୟାସ୍ ପାଇଁ ବଛା ହୋଇ ଯାଇଥିଲା । ସେହି ଗ୍ୟାସ୍‌ରୁ ରକ୍ଷା ପାଇବା ପାଇଁ ପେଟ୍ରୋଲିୟମ୍ ଓ କାଠଧୂଆଁର ପାଉଁଶରେ ଭର୍ତ୍ତି ହୋଇଥିବା ଏକ ପରିତ୍ୟକ୍ତ ଚିମିନି ଭିତରେ ସେ ପଶିଗଲା । ନିଜ ଭାଷାରେ କହି ଯାଉଥିବା ତା'ର ଗପଶୁଣି ତାହାର ସେହି ଦୁର୍ଦ୍ଦଶାରେ ପାଠକମାନେ ସ୍ୱତଃ ତା' ପ୍ରତି ସହାନୁଭୂତି ପ୍ରକାଶ କରିଥିବେ ଓ ସେଥିରୁ ସେ ବଞ୍ଚି ଯାଇଥିବାରୁ ଆଶ୍ୱସ୍ତ ମଧ୍ୟ ହୋଇଥିବେ, ତଥା ଆଉସ୍‌ଭିଚ୍‌ଜ୍‌ରେ ଭୟାବହ ଜୀବନ ଯାତ୍ରାର ପ୍ରତ୍ୟକ୍ଷ ଦର୍ଶନ କରିଥିବେ ।

ଶ୍ରୀମତୀ ସାରାଙ୍କର ଏହି ନାଟକ ଏକ ସଂଶୟାଚ୍ଛନ୍ନ ପ୍ରଶ୍ନ ମଧ୍ୟ ମନରେ ଉଦ୍ରେକ କରେ । ନାତ୍‌ସୀ ଡ୍ରାଇଭର୍ ପରଦିନ ସକାଳେ ଫେଲାକୁ ପାଇବା ପରେ ତାକୁ ସଙ୍ଗେ ସଙ୍ଗେ ଶେଷ କରିଦେଲା ନାହିଁ କାହିଁକି ? ତାକୁ ଅକ୍ଷମଶାଳା ପର୍ଯ୍ୟନ୍ତ ନେବାର ଝଞ୍ଜଟ ସେ କାହିଁକି ମୁଣ୍ଡାଇଲା ? ସେ କ'ଣ ଜାଣି ନଥିଲା ଯେ ସେଠାରେ ସେ କେତେଦିନ ପାଇଁ ନିଶ୍ଚୟ ଆଶ୍ରୟ ପାଇଯିବ । ନାତ୍‌ସୀବାଦର ଆଦର୍ଶ ଦୃଷ୍ଟିରୁ ବିଶେଷତଃ ପୂର୍ବରାତ୍ରିରେ ଇହୁଦୀ ନିଧନ ଯଜ୍ଞରେ ଭାଗ ନେଇଥିବା ସେହି ନାତ୍‌ସୀ ଡ୍ରାଇଭର୍ କାହିଁକି ଫେଲାକୁ ବଞ୍ଚିବାକୁ ଛାଡ଼ିଦେଲା । ଜଣେ ଟ୍ରେନିଂ ପ୍ରାପ୍ତ ଗଣହତ୍ୟାକାରୀ ଭିତରେ ମାନବିକତାକୁ କିଭଳି ଆରୋପ କରାଯାଇପାରିବ ? ଏଭଳି ଘଟିଲା କି ଫେଲା ଗଣମୃତ୍ୟୁରୁ ରକ୍ଷା ପାଇ ଯାଇଥିବାରୁ ଡ୍ରାଇଭର୍ ତାକୁ ଜଣେ ବ୍ୟକ୍ତି ବିଶେଷ ଭାବରେ ବିଚାର କଲା । କିମ୍ବା ଏଭଳି ଘଟିଲା କି ଗ୍ୟାସ୍ ଚୁଲା କାମ କିଛି ସମୟ ପାଇଁ ବନ୍ଦ ଥିଲାବେଳେ ଅଯାଚିତ ଭାବରେ ସେ କାହିଁକି ଜଣକୁ ବା ହତ୍ୟା କରିଥା'ନ୍ତା ! ସଂହାର ଯନ୍ତ୍ର ବିଶ୍ରାମ ନେଉଥିଲା ବେଳେ କ୍ଷୁଦ୍ର ଯନ୍ତ୍ରାଂଶଟି ବି ବିଶ୍ରାମ ନେଉ ।

ଫେଲା ଗପଟିକୁ ଅସମ୍ପୂର୍ଣ୍ଣ ରଖି ଲେଖିକା ଠିକ୍ କରିଛନ୍ତି, ସାରା କହିଛନ୍ତି, ''ପରବର୍ତ୍ତୀ ପରିବହନରେ ସେ ଆଉସ୍‌ଭିଦ୍‌ଜ୍ ପରିତ୍ୟାଗ କଲା । ଆଉ ସଙ୍ଗଠନ କଲା କି ନା, ମୁଁ ତାକୁ ଆଉ ଦେଖି ନାହିଁ ।''

ସାରାଙ୍କର ବର୍ଣ୍ଣନାଗୁଡ଼ିକ ଏହିପରି ବହୁ ନାଟକୀୟ ବିବରଣୀରେ ପରିପୂର୍ଣ୍ଣ, ଉଦାହରଣ ସ୍ୱରୂପ ଶିବିର ଭିତରେ ମହିଳାଙ୍କ ପ୍ରସବ ଉପରେ ନାତ୍‌ସୀମାନଙ୍କ ନିଷେଧାଆଜ୍ଞାକୁ ବିଚାର କରାଯାଇପାରେ । ସେହିପରି ଆଉ ଏକ ଉଦାହରଣ ମା'କୁ ବଞ୍ଚାଇବାକୁ ଯାଇ ସଦ୍ୟଜାତ ଶିଶୁକୁ ହତ୍ୟା କରିବା ପାଇଁ ଶିବିର ଡାକ୍ତରମାନଙ୍କର ନିଷ୍ପତ୍ତି । (ଏ ସମ୍ପର୍କରେ ଅଧିକ ତଥ୍ୟ ଜାଣିବା ପାଇଁ OLGA LENGYELଙ୍କର Five Chimneys ଦେଖନ୍ତୁ) ନିର୍ବୋଧ ଇଗ୍ଲର ଯେ କି ନରହତ୍ୟାକାରୀ ମେଙ୍ଗେଲ୍ ଡାକ୍ତରର ପାଶବିକତା ବିଷୟରେ କିଛି ବୁଝିପାରେ ନାହିଁ ସାରା ନୋମେଆର୍ଗ ସେହି ଭୟାବହ ଘଟଣାକୁ ଔପନ୍ୟାସିକ ଶୈଳୀରେ ଉପସ୍ଥାପିତ କରିଛନ୍ତି ।

ସ୍ମୃତି କଥା ଓ କଳ୍ପନା ତଥା ଦଲିଲ ଓ ଉପନ୍ୟାସ ମଧ୍ୟରେ ଏକ ସୂକ୍ଷ୍ମ ସୀମାରେଖା ଆଙ୍କିବାରେ ସାରାଙ୍କର ସାମର୍ଥ୍ୟ ଇହୁଦୀ ହତ୍ୟା ସାହିତ୍ୟକୁ ନୂତନ ଭାବେ ବ୍ୟାଖ୍ୟା କରିବାର ବାଟ ଖୋଲି ଦେଇଛି । ଏହି ସାହିତ୍ୟର ବହୁ ଚିନ୍ତା ଦ୍ୟୋତକ ଅଧ୍ୟୟନ କରାଗଲାଣି କିନ୍ତୁ କୌଣସିଟି ସମ୍ପୂର୍ଣ୍ଣ ନୁହେଁ ବରଂ ଦିଶା ହୀନ । ଗବେଷକମାନେ ସେହି ସାହିତ୍ୟର ଉଚ୍ଚ ଶୈଳୀ କିମ୍ବା ତଥ୍ୟଗତ ସଠିକତା, ଐତିହାସିକ ଘଟଣାବଳୀ କିମ୍ବା ପ୍ରତିନିଧିସ୍ଥାନୀୟ ଘଟଣାବଳୀର ବର୍ଣ୍ଣନା- ଏଥି ମଧ୍ୟରୁ କେଉଁ ଦୃଷ୍ଟିକୋଣକୁ ଗ୍ରହଣ କରିବେ ତାହା ସ୍ଥିର କରି ପାରୁ ନାହାନ୍ତି । ଉଦାହରଣ ସ୍ୱରୂପ (LAWRENCE L LANGER) ଲରେନ୍ସ୍ ଏଲ୍ ଲାଙ୍ଗର୍ ତାଙ୍କର ପ୍ରଥମ ପୁସ୍ତକ (The Holocaust and the Literary Imagination) ଦି ହୋଲୋକଷ୍ଟ ଆଣ୍ଡ ଦି ଲିଟରାରୀ ଇମାଜିନେସନ୍‌ରେ ସେ ଆଭିଜାତ୍ୟ ଶୈଳୀର ସନ୍ଧାନ କରିଛନ୍ତି । ସେହି ସାହିତ୍ୟର ଚମତ୍କାରିତାକୁ ନବ୍ୟ ସମାଲୋଚନା ଅନୁସାରେ ତାହାକୁ ଶ୍ରେଣୀଭୁକ୍ତ କରିଛନ୍ତି । ସାମ୍ପ୍ରତିକ କାଳରେ ପ୍ରକାଶିତ ତାଙ୍କର Versions of Survival ପୁସ୍ତକରେ ସେ ଦି ହୋଲୋକଷ୍ଟ୍ ସାହିତ୍ୟର ତଥ୍ୟଗତ ସତ୍ୟତା ଓ ଦଲିଲ ଉପରେ ଅଧିକ ଗୁରୁତ୍ୱ ଦେଇଛନ୍ତି ଏବଂ ସେଥିରେ ନୈତିକତାର ମୂଲ୍ୟବୋଧକୁ ଅଧିକ ମର୍ଯ୍ୟାଦା ପ୍ରଦାନ କରିଅଛନ୍ତି । ନୈତିକ ମୂଲ୍ୟବୋଧକୁ ମଧ୍ୟ ସେ ଛାଡ଼ି ଦେଇନାହାନ୍ତି । Alvin Rosenfeld ତାଙ୍କର A double dying ପୁସ୍ତକରେ ଲେଖିଛନ୍ତି ଯେ ହୋଲୋକଷ୍ଟ ଲେଖକମାନଙ୍କୁ ପୁରାତନ ଶୈଳୀ ଓ ପାରମ୍ପରିକ ଆଳଙ୍କାରିକ ସାହିତ୍ୟ ଦେଖିବାକୁ ମିଳି ନଥିଲା । ତଥାପି ସେ ନିଜ ଲେଖାରେ ପୁରାତନ ଆଳଙ୍କାରିକ

ଶୈଳୀ ଉପରେ ଗୁରୁତ୍ୱ ଦେଇ ଅଛନ୍ତି (Terrence despres) ଟେରେନ୍ସ୍ ଡେସ୍ ପ୍ରେସ୍ ଅପର ପକ୍ଷରେ ଦଲିଲଗତ ବର୍ଣ୍ଣନାରେ ଜୀବନ୍ତ ଓ ବିଲୁପ୍ତ ମଣିଷମାନଙ୍କ ମଧ୍ୟରେ ପାର୍ଥକ୍ୟ ନିର୍ଦ୍ଧାରଣ କରିବାରେ ଚମତ୍କାରିତା ପ୍ରଦର୍ଶନ କରିଅଛନ୍ତି । ସଂହାର ଶିବିରର ଭୟାବହ ପରିବେଶ ଏବଂ ସେଥିରୁ ବଞ୍ଚିଯିବା ପାଇଁ ବନ୍ଦୀମାନେ ପ୍ରୟୋଗ କରୁଥିବା କୌଶଳର ସେ ସଂକ୍ଷିପ୍ତୀକରଣ କରିଅଛନ୍ତି । କିନ୍ତୁ ବର୍ଣ୍ଣନାରେ କାବ୍ୟିକ ଶୈଳୀ ପ୍ରତି ବିଶେଷ ଆଗ୍ରହ ପ୍ରକାଶ କରିନାହାନ୍ତି । ସାରାଙ୍କ ବିବରଣୀରେ ବିଶେଷ ଆବଶ୍ୟକ ତଥ୍ୟ ମିଳିଛି ତାହା ହେଉଛି ଶିବିର ଜୀବନରେ ବ୍ୟବହୃତ ଶବ୍ଦଗୁଡ଼ିକର ଭଣ୍ଡାର, ଅବଶ୍ୟ ଟେରେନ୍ସ୍ ତାଙ୍କ ପୁସ୍ତକରେ ଶିବିରରେ ବ୍ୟବହୃତ ଶବ୍ଦଗୁଡ଼ିକର ଅଳ୍ପ କିଛି ଉଲ୍ଲେଖ କରିଅଛନ୍ତି । କିନ୍ତୁ ସେ ବନ୍ଦୀମାନେ ସେହି ନିର୍ଦ୍ଦୟ ଓ କିମ୍ଭୂତ କିମାକାର ପରିବେଶରେ ଯେଉଁ କୌଶଳ ଅବଲମ୍ବନ କରୁଥିଲେ ସେସବୁ ବିଷୟ ଅପେକ୍ଷା ବନ୍ଦୀମାନଙ୍କର ମନଃସ୍ତତ୍ତ୍ୱକୁ ଅଧିକ ବର୍ଣ୍ଣନା କରିଛନ୍ତି । ଯେଉଁ ପାଠକ ବା ଦର୍ଶକମାନେ ସମାଜରେ ସାଧାରଣତଃ ପାରମ୍ପରିକ ଭାବେ ଯେଉଁ ନିଷ୍ଠୁରତା ବିଷୟରେ ଅବହିତ ଓ ପରିଚିତ ସେମାନେ ଇହୁଦୀ ସଂହାର ଶିବିରରେ ପ୍ରୟୋଗ ହେଉଥିବା ଅବର୍ଣ୍ଣନୀୟ ଅମାନୁଷିକତା ଏବଂ ଅକଳ୍ପନୀୟ ନରସଂହାରର ବର୍ଣ୍ଣନାକୁ ବିଶ୍ୱାସ କରିବା ସହଜ ନୁହେଁ । ଏଠାରେ ସ୍ଥାନାଭାବ ଦୃଷ୍ଟିରୁ ଶିବିରରେ ବ୍ୟବହୃତ ଶବ୍ଦଗୁଡ଼ିକ ମଧ୍ୟରୁ ଅଳ୍ପ କିଛିର ବର୍ଣ୍ଣନା କରୁଅଛି । 'ସଙ୍ଗଠନ' ଯାହାକି ଶିବିର ଜୀବନରେ ବାରମ୍ବାର ବ୍ୟବହୃତ ହୁଏ ଅଥଚ ସେହି ଶବ୍ଦର ଅସାଧାରଣ ବ୍ୟବହାର ସଭ୍ୟ ସମାଜରେ ସମ୍ପୂର୍ଣ୍ଣ ଅଜଣା, ଅଶୁଣା ଓ ଅବାସ୍ତବ । ତାହା ସେହି ଗଣସଂହାର ସମ୍ବନ୍ଧରେ ସାଧାରଣ ବିବରଣୀ ଓ ପ୍ରଭାବଶାଳୀ ବିବରଣୀରେ ମଧ୍ୟ ବର୍ଣ୍ଣିତ ହୋଇଅଛି । ସେହି ରୀତି ବା ପ୍ରଥାଗୁଡ଼ିକ ଏପରି ନିର୍ଦ୍ଦୟ, ନିଷ୍ଠୁର ଓ କଠୋର ଯେ ତାହାକୁ ଜନସାଧାରଣ ଭଲଭାବରେ ଜାଣିଛନ୍ତି । ଏପରିକି ଯେଉଁମାନେ ନାତ୍‌ସୀ ନିଷ୍ଠୁରତା ସମ୍ପର୍କରେ ବିଶେଷ ଆଗ୍ରହୀ ନୁହଁନ୍ତି ସେମାନଙ୍କୁ ମଧ୍ୟ ତାହା ଅବିଦିତ ନୁହେଁ । ଉଦାହରଣ ସ୍ୱରୂପ ସେମାନେ ଇହୁଦୀ ନାରୀ, ପୁରୁଷ ଓ ଶିଶୁମାନଙ୍କୁ ପଶୁ ପରିବହନ ରେଳ ଡବା ଗୁଡ଼ିକରେ ଖୁନ୍ଦି ଦେଉଥିଲେ ଏବଂ ବିନା ଖାଦ୍ୟ, ବିନା ଜଳରେ ଯଥେଷ୍ଟ ବାୟୁ ଚଳାଚଳ କରୁ ନଥିବା ସେହି ଡବାଗୁଡ଼ିକରେ ଏକାଧିକ ଦିନ ସେମାନଙ୍କୁ ରହିବାକୁ ପଡୁଥିଲା । ଜନସାଧାରଣ ଏକଥା ଭଲଭାବରେ ଜାଣନ୍ତି । ଏତଦ୍ ବ୍ୟତୀତ ବଡ଼ ପଥର, ଗୋଡ଼ି ଜମା ହୋଇଥିବା ପାହାଡ଼ର ଖସଡ଼ା ଡାଲୁ ଜାଗାରେ ଗାଡ଼ିରୁ ଲୋକମାନଙ୍କୁ ଓହ୍ଲାଇଦେବା, ଶିବିରରେ ରୋଲ୍ କଲ୍, ଡିସେଣ୍ଟ୍ରି, ବଛାବଛି, ପ୍ଲେଗ୍ ଉକୁଣୀ, ସଙ୍ଗଠନ, କାନାଡ଼ା ଓ ପାଣିଆ ଝୋଳ ଆଦି ଶବ୍ଦ ଆଉସ୍‌ଭିତ୍‌ଜ୍ ସମ୍ପର୍କୀୟ ସମସ୍ତ ବିବରଣୀରେ ମଧ୍ୟ ଉଲ୍ଲେଖ ରହିଛି, ସେ ସେହି ବାସ୍ତବ ଘଟଣାଗୁଡ଼ିକୁ ନାଟକୀୟ ଶୈଳୀରେ ବିଶ୍ୱାସଯୋଗ୍ୟ ବର୍ଣ୍ଣନା

କରିଛନ୍ତି । ଶିବିରବାସୀମାନଙ୍କର ଦୈନନ୍ଦିନ ଜୀବନରେ କ୍ଷୁଧା, ତୃଷା, ଆବର୍ଜନା ପ୍ଲେଗ ଜୀବାଣୁ ଆକ୍ରମଣ ଓ ପ୍ରହାର ଭଳି ଯେଉଁ ନିର୍ଯାତନା ସହ୍ୟ କରିବାକୁ ହୁଏ ସେଥି ମଧ୍ୟରୁ କେତେକ ଘଟଣା ବିସ୍ମୟଜନକ ଭାବରେ ନାଟକୀୟ ଏବଂ ତାହା ଶିବିରର ନିରାନନ୍ଦ ଓ ନିରସ ଜୀବନ ଯାତ୍ରାର ଏକ ବ୍ୟତିକ୍ରମ । ସେଗୁଡ଼ିକ କେତେକ ସମୟରେ ବ୍ୟକ୍ତି ବିଶେଷଙ୍କର ପ୍ରତିବାଦ କେବେ ବା ସାମୁହିକ କାର୍ଯ୍ୟକଳାପ । ସେଥି ଭିତରୁ ସବୁଠାରୁ ଉଲ୍ଲେଖଯୋଗ୍ୟ ଏବଂ ବାରମ୍ବାର ଆଲୋଚିତ ହେଉଥିବା ଘଟଣା, ଯେଉଁ ଘଟଣାରେ ଜଣେ ଉଲଗ୍ନ ମହିଳାକୁ ଗ୍ୟାସ୍‌କୁ ଠେଲୁଥିବା ଜଣେ ନାତ୍‌ସୀ ପୋଲିସ୍ ହାତରୁ ସେ ବନ୍ଧୁକ ଛଡ଼ାଇ ନେଇ ତାକୁ ଗୁଳି କରିଦେବା ଏବଂ ଗ୍ୟାସ୍‌ରେ ନିଜର ଅସମ୍ମାନଜନକ ମୃତ୍ୟୁ ଅପେକ୍ଷା ଆତ୍ମହତ୍ୟା ଶ୍ରେୟସ୍କର ମନେ କରି ନିଜକୁ ଗୁଳି କରି ଦେଇଥିଲା । ଏହି ଗଳ୍ପକୁ Brunoa Betteltheim ବ୍ରୁନୋ ବେଟ୍ଟେଲ୍‌ହାଇମ୍- ଅନ୍ୟ ଜଣେ ଲେଖକ, Eugen KOGON- ଇଉଜେନ୍ କଗନ୍‌ଙ୍କର ଗଳ୍ପକୁ ପୁନଃଲିଖିତ କରି ପ୍ରସିଦ୍ଧ କରି ଦେଇଅଛନ୍ତି । କଗନ୍ ମାତ୍ର ତିନିଗୋଟି ବାକ୍ୟରେ ବର୍ଣ୍ଣନା କରିଅଛନ୍ତି ଯେ, ନାତ୍‌ସୀ ପୋଲିସ୍ ଜଣେକା ଇଟାଲୀୟ ନର୍ତ୍ତକୀକୁ ତା' ଆଗରେ ଉଲଗ୍ନ ହୋଇ ନାଚିବାକୁ ନିର୍ଦ୍ଦେଶ ଦେଇଛି । ନର୍ତ୍ତକୀଟି ତା'ପାଖକୁ ଲାଗି ଯାଇଛି ଏବଂ ହଠାତ୍ ତା'ଠାରୁ ପିସ୍ତଲ୍ ଛଡ଼ାଇ ନେଇ ତା'କୁ ଗୁଳି କରି ଦେଇଛି । ଏହାର ପରିଣତି ସ୍ୱରୂପ ସେତେବେଳେ ଯେଉଁ ଗଣ୍ଡଗୋଳ ସୃଷ୍ଟି ହୋଇଯାଇଛି, ସେଥିରେ ସେ ନର୍ତ୍ତକୀଟି ମଧ୍ୟ ଗୁଳିରେ ମରିଛି । ଅବଶ୍ୟ ତାହା ଫଳରେ ଗ୍ୟାସ୍‌ର କଷ୍ଟଦାୟକ ମୃତ୍ୟୁରୁ ସେ ରକ୍ଷା ପାଇ ଯାଇଛି । ପ୍ରୋକ୍ତ ନର୍ତ୍ତକୀ ଜଣକ ବୋଧହୁଏ ନୃତ୍ୟ ଅଭ୍ୟାସ କରୁଥିଲା ବୋଲି ବେଟ୍ଟେଲହମ୍ ଅନୁମାନ କରିଛନ୍ତି ଯାହା ଫଳରେ କି ନର୍ତ୍ତକୀଟି ମନରେ ପୂର୍ବ ମଣିଷ ପଣିଆ ଜାଗ୍ରତ ହୋଇଛି ଏବଂ ନିଜର ମରିବାରେ ଆଶଙ୍କା ଥିଲେ ବି ତାକୁ ହତ୍ୟା କରିବା ପାଇଁ ଥିବା ନାଜୀ ପୋଲିସ୍‌କୁ ସେ ମାରି ଦେଇଛି । ବେଟ୍ଟେଲହାଇମ୍ ଏହି ଘଟଣାଟିକୁ ଏୟା ଭାବି ଉଲ୍ଲେଖ କରିଅଛନ୍ତି ଯେ ଶିବିରର ଅନ୍ୟାନ୍ୟ ବନ୍ଦିନୀମାନଙ୍କ ମଧ୍ୟରେ ଏକ ଦୃଷ୍ଟାନ୍ତ ସ୍ୱରୂପ କାମ କରିବ ଏବଂ ସେମାନେ ମଧ୍ୟ ନାତ୍‌ସୀ ଅତ୍ୟାଚାରର ପ୍ରତିରୋଧ କରିବେ । କିନ୍ତୁ ବେଟ୍ଟେଲ୍‌ହାଇମ୍‌ଙ୍କର ସେହି ବକ୍ତବ୍ୟ ଏପରି ବିତର୍କ ସୃଷ୍ଟି କରିଅଛି ଯେ, ସେ ସମ୍ପର୍କରେ ଏଠାରେ ଆଲୋଚନା କରିବା ସମ୍ଭବ ନୁହେଁ । ଏତିକି କହିଲେ ଯଥେଷ୍ଟ ହେବ ଯେ, କୋଗନ୍ ସେହି ତଥ୍ୟର ଉତ୍ସ ସମ୍ପର୍କରେ କିଛି ଉଲ୍ଲେଖ କରି ନାହାନ୍ତି କାରଣ ଯେହେତୁ ଘଟଣାଟି ଗ୍ୟାସ୍ ଚୁଲା ନିକଟରେ ଘଟିଥିଲା ତେଣୁ ଗ୍ୟାସ୍ ଚୁଲା ପରିଚାଳକ ନାତ୍‌ସୀ କମାଣ୍ଡୋ ଏବଂ ଗ୍ୟାସ୍‌ରେ ପ୍ରାଣ ହରାଇଥିବା ବନ୍ଦିନୀମାନେ ହିଁ ପ୍ରମାଣ ଦେଇ ପାରିଥାନ୍ତେ ।

Tadeusz Borowski - ଏହି ଗଳ୍ପଟିକୁ ଟିକେ ଭିନ୍ନ ଭାବରେ ଏବଂ ଅଧିକ

ବିସ୍ତୃତ ତଥା କଳାତ୍ମକ ଶୈଳୀରେ ବର୍ଣ୍ଣନା କରିଅଛନ୍ତି । ସେହି ବର୍ଣ୍ଣନାରେ ତାହା ଟିକିଏ ଦୂରରେ ଘଟିଥିଲା, ଅର୍ଥାତ୍ ସେ ନିଜେ ତାହା ଦେଖି ନଥିଲେ । କାରଣ, ସେ ଜଣେକ ବିଦ୍ୟୁତ୍ ଚୁଲା ଫୋରମ୍ୟାନ୍‌ଠାରୁ ଶୁଣିଥିଲେ । ଅବଶ୍ୟ ସେହି ଫୋରମ୍ୟାନ୍ ଜଣକ ଉକ୍ତ ଘଟଣାଟିକୁ ନିଜ ଆଖିରେ ଦେଖିଥିଲା ବୋଲି କହେ । ବୋରୋସ୍କିଙ୍କର ସେହି ଗଳ୍ପ ଭିତରେ କୁହାଯାଇଛି ଯେ, ସେହି ନାତ୍‌ସୀ କର୍ମଚାରୀ ସିଲିଞ୍ଜରକୁ ଗୁଳିକରି ମାରିଥିବା ମହିଳା ଜଣକ ଇଟାଲୀୟ ନର୍ତ୍ତକୀ ନୁହେଁ ସେ ଜଣେ ସାଧାରଣ ପୋଲାଣ୍ଡୀୟ ଇହୁଦୀ ମହିଳା । ନାତ୍‌ସୀ ଫୋରମ୍ୟାନ୍ କହିବା ଅନୁସାରେ, ''କ'ଣ ହେବାକୁ ଯାଉଛି ତାହା- ସେହି ଇହୁଦୀ ମହିଳାଜଣକ ଜାଣିଥିଲେ । ତେଣୁ ନାତ୍‌ସୀ ସିଲିଞ୍ଜର ଯେତେବେଳେ ସେହି ମହିଳାଙ୍କ ବାହୁକୁ ଧରିଲା ସେହି ଉଲଗ୍ନ ମହିଳାଟି ନଇଁ ପଡ଼ି ତଳୁ ଭଙ୍ଗା ପଥର ଗୋଟେଇ ଆଣିଲା ଓ ତା'ର ମୁହଁକୁ ଫୋପାଡ଼ିଲା । ପଥର ବାଜି ସିଲିଞ୍ଜରର ମୁହଁ ଫାଟିଯିବାରୁ ସେ ଚିତ୍କାର କରି ତଳେ ପଡ଼ିଗଲା ଓ ତା'ର ରିଭଲ୍‌ଭରଟି ଖସି ପଡ଼ିଲା ଇହୁଦୀ ମହିଳା ଜଣକ ରିଭଲଭର୍‌ଟି ହଠାତ୍ ଉଠାଇ ଆଣି ସିଲିଞ୍ଜରର ପେଟକୁ ଲକ୍ଷ୍ୟ କରି ବାରମ୍ବାର ଗୁଳି କଲା । ବୋରୋସ୍ତିକ୍‌ରେ ଏହି ବର୍ଣ୍ଣନା ଅନୁସାରେ ସେହି ମହିଳାଜଣକୁ କଠୋର ଦୁର୍ଦ୍ଧାନ୍ତ ଏବଂ ହତାଶା ଜର୍ଜରିତ ବୋଲି କୁହାଯାଇପାରେ । ପୋଲାଣ୍ଡୀୟ ଉପନ୍ୟାସରେ ଶ୍ଳେଷୋକ୍ତିର ବ୍ୟବହାର ଏକ ସାଧାରଣ କଥା । ବୋରୋସ୍କିଙ୍କର ବର୍ଣ୍ଣନାରେ ତାହାହିଁ ରହିଅଛି ଏବଂ ତାହାହିଁ ତାକୁ ଏକ ଆଖ୍ୟାୟିକା ବା ଉପନ୍ୟାସରେ ପରିଣତ କରିଛି । ଅଥଚ ଗଳ୍ପଟିକୁ ସେ ଅଧିକ ପ୍ରତ୍ୟକ୍ଷ ଘଟଣା ଭାବରେ ବର୍ଣ୍ଣନା କରି ପାରିଥା'ନ୍ତେ । ବେରୋସ୍କିଙ୍କର ବର୍ଣ୍ଣନା ଅନୁସାରେ ସିଲିଞ୍ଜର ତଳେ ପଡ଼ିଯାଇ ଚିତ୍କାର କରୁଥିବା, ''ହେ ଭଗବାନ ! ମୁଁ କି ଅପରାଧ କଲି ଯେ, ମୋତେ ଏଭଳି ଦଣ୍ଡ ଦେଉଅଛ ।'' ଏହି ଉକ୍ତି ଗଳ୍ପଟିକୁ ଏକ ମନଗଢ଼ା କାହାଣୀରେ ପରିଣତ କରିଛି । ସେଥିରେ ବେଟ୍ଟେଲ୍‌ହାଇମ୍‌ଙ୍କର ପୂର୍ବ ବର୍ଣ୍ଣିତ ଭବିଷ୍ୟତ ବାଣୀ ଯେ ''ବନ୍ଦିନୀମାନେ ବିଦ୍ରୋହ କରିବେ'' ଏହା ପ୍ରମାଣ ଦେଉ ନାହିଁ । ତାଙ୍କର ବର୍ଣ୍ଣନାରେ ବିରୋଧାଭାସ ଓ ଛନ୍ଦ ପତନ ଗ୍ୟାସ୍ ଚୁଲା ପାଖରେ ଚୁଲା ପରିଚାଳକମାନଙ୍କର ବିଦ୍ରୋହ ଘୋଷଣା ଭଳି ଏକ ଇତିହାସ ବିଖ୍ୟାତ ଗୁରୁତ୍ୱପୂର୍ଣ୍ଣ ଘଟଣାକୁ ଲଘୁ କରି ଦେଇଛି ।

Wieslaw Kailear ଭିସେଲ୍ କେଲାରଙ୍କର ରଚିତ ଆଉସ୍‌ଭିଟ୍‌ଜ୍ ବିବରଣୀ ସମ୍ବଳିତ ପ୍ରଖ୍ୟାତ ପୁସ୍ତକ Anus Mundi 'ଅନସ୍ ମୁଣ୍ଡି'ରେ ସେ ଯାହା ଲେଖିଛନ୍ତି ତାହା ବୋରୋସ୍କିଙ୍କର ବର୍ଣ୍ଣନାର ପାଖାପାଖି ହୋଇଥିଲେ ମଧ ସମ୍ପୃକ୍ତ ମହିଳାଙ୍କର ଜାତୀୟତା ସମ୍ପର୍କରେ ସେ କିଛି ନ କହି ତାକୁ ଜଣେ ସୁନ୍ଦରୀ ବୋଲି ବର୍ଣ୍ଣନା କରିଛନ୍ତି । ତାଙ୍କ ବର୍ଣ୍ଣନା ଅନୁସାରେ ଯେତେବେଳେ ନାତ୍‌ସୀ ସିଲିଞ୍ଜର ମହିଳାଙ୍କର ବକ୍ଷ ବନ୍ଧନୀ

ବା ବ୍ରେସିଅର୍‌କୁ ଖୋଲିବାକୁ ଚେଷ୍ଟା କରିଛି ସେତେବେଳେ ସେ ମହିଳାଜଣକ ତା'ଠାରୁ ବନ୍ଧୁକ ଛଡ଼ାଇ ଆଣି ଗୁଳି କରିଛି । ବୋରୋସ୍କିଙ୍କ ଠାରୁ କେଲାର୍ ଉପରୋକ୍ତ ଘଟଣାରୁ ଭିନ୍ନ ଉପସଂହାରରେ ପହଞ୍ଚିଛନ୍ତି । ସେ କହୁଛନ୍ତି ଘଟଣାଟି ଲୋକମୁଖରେ ପ୍ରଚାରିତ ହେବା ଫଳରେ ତାହା ଏକ କିମ୍ବଦନ୍ତୀ ବା ଲିଜେଣ୍ଡରେ ପରିଣତ ହୋଇଛି । ଏହା ନିଃସନ୍ଦେହରେ କୁହାଯାଇପାରେ ଯେ ନିଶ୍ଚିତ ମୃତ୍ୟୁର ସମ୍ମୁଖରେ ସେହି ଦୁର୍ବଳ ମହିଳାର ବୀରତ୍ୱପୂର୍ଣ୍ଣ କାର୍ଯ୍ୟଯୋଗୁଁ ବନ୍ଦିନୀମାନେ ପ୍ରତି ପାଠକର ନୈତିକ ସମର୍ଥନ ଲାଭ କରିଛି ।

ସାରା ନୋମ୍ୱେଆର୍ଗଙ୍କର ସେହି ଗଳ୍ପଟି ସାମାନ୍ୟ ଭିନ୍ନ ଏବଂ ଭିନ୍ନ ପରିବେଶରେ ଭିନ୍ନ ଚରିତ୍ରମାନଙ୍କ ଦ୍ୱାରା ଘଟିଅଛି । ବୋରୋସ୍କିଙ୍କ ଭଳି ସେ ମଧ୍ୟ ଅନ୍ୟ କାହାଠାରୁ ଗଳ୍ପଟି ଶୁଣିଛନ୍ତି । ତାଙ୍କର ବିବରଣୀ ଅନୁସାରେ ମହିଳାଜଣକ ଏକ ଫରାସୀ ନର୍ତ୍ତକୀ ଏବଂ ଘଟଣାଟି ଘଟିଛି, ରେଳ ପ୍ଲାଟ୍ ଫର୍ମରେ ଯେଉଁଠାରେ ବନ୍ଦିନୀମାନେ ରେଳରୁ ଓହ୍ଲାଇଛନ୍ତି । ଅନ୍ୟ ଗାନ୍ଥିକଙ୍କ ଅନୁସାରେ ଗ୍ୟାସ୍ ଚୁଲା ପାଖରେ ନୁହେଁ । ସାରାଙ୍କ ବର୍ଣ୍ଣନା ଅନୁସାରେ ରେଳ ଡବା ଭିତରେ ଥିବା ଅନ୍ୟାନ୍ୟ ମହିଳାମାନଙ୍କ ଭିତରେ ସେ ଫରାସୀ ନର୍ତ୍ତକୀଟି ଏକମାତ୍ର ମହିଳା ଯେ କି ନାତ୍‌ସୀ ପୋଲିସ୍‌ର ନିର୍ଦ୍ଦେଶ ସତ୍ତ୍ୱେ ଉଲଗ୍ନ ହୋଇ ନାହିଁ । ଯେତେବଳେ ନାତ୍‌ସୀ ପୋଲିସ୍ ତା' ପାଖକୁ ଚାଲି ଆସି ଗାଧୁଆ ପୋଷାକ ଓହ୍ଲାଇ ଦେବାକୁ କହିଛି ନର୍ତ୍ତକୀ ଜଣକ ହଠାତ୍ ପୋଲିସ୍ ପକେଟରୁ ତା ପିସ୍ତଲ ଟାଣି ଆଣି ତାକୁ ଗୁଳି କରିଛି । ଏହା ମଧ୍ୟ ହୋଇପାରେ ଯେ, ସାରାଙ୍କର ଏହି ଗଳ୍ପଟି ପୂର୍ବାଲୋଚିତ ତିନିଗୋଟି ଗଳ୍ପଠାରୁ ଭିନ୍ନ । କିନ୍ତୁ ସାରାଙ୍କର ଗଳ୍ପର ନାଟକୀୟ କ୍ରିୟା ପ୍ରତିକ୍ରିୟା ଅତ୍ୟନ୍ତ ସୁସଂହତ ଯାହାକି ଏକ ନୈତିକ ମୂଲ୍ୟବୋଧ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରୁଅଛି । ଏଥିରେ ମହିଳାଜଣଙ୍କର ବ୍ୟବହାର ଆତ୍ମରକ୍ଷା ଦୃଷ୍ଟିରୁ ଅତ୍ୟନ୍ତ ଯୁକ୍ତିଯୁକ୍ତ ଏବଂ ମଣିଷର ସମ୍ମାନ ରକ୍ଷା କରିବା ପାଇଁ ଏକ ସଚେତନ ସୁଦୃଢ଼ ପଦକ୍ଷେପ । ବନ୍ଧୁକର ଶେଷ ଗୁଳିଟିକୁ ନିଜ ପାଇଁ ରଖିଦେଇ ସେ ତା'ର ପାଶବିକ ହତ୍ୟାକାରୀମାନଙ୍କୁ ପରାଜିତ କରିଦେଇ ପାରିଛି । ଅବଶ୍ୟ ଲେଖିକା ଘଟଣାଟିର ନେତିକ ମୂଲ୍ୟବୋଧ ସମ୍ପର୍କରେ କୌଣସି ଟିପ୍‌ପଣୀ ଦେଇ ନାହାନ୍ତି । ''ତୁମ୍ଭମାନଙ୍କୁ ଏହିଭଳି ଭାବରେ ମରିବାକୁ ହେବ'' ମାଗ୍‌ଦାର ଉପରୋକ୍ତ କଥାକୁ ପାଠକମାନଙ୍କୁ ଚିନ୍ତା କରିବାକୁ ହେବ । ପୁନଶ୍ଚ, ଜଣେ ଶୋଷକ ଓ ଅତ୍ୟାଚାରୀ ପାଖରୁ ଯେଉଁ ବ୍ୟବହାର ଅନନ୍ୟ ଓ ଅବିଶ୍ୱାସ୍ୟ ତାହା ଆମ୍ଭେ ଜଣେ ନାତ୍‌ସୀ ପୋଲିସ୍‌ଠାରେ ଦେଖିବାକୁ ପାଉ । ସେ ଦୟାପରବଶ ହୋଇ ଫରାସୀ ତରୁଣୀଟିକୁ ନିଶ୍ଚିତ ମୃତ୍ୟୁରୁ ରକ୍ଷା କରିଦେଇ ଥିବାରୁ ମାଗ୍‌ଦା ସମ୍ପୂର୍ଣ୍ଣ ଘଟଣାଟି ସାରା ନୋମ୍ୱେଆର୍ଗଙ୍କୁ କହିଥିଲା ଏବଂ ସାରା ସେହି ବିବରଣୀକୁ ତାଙ୍କ ରଚନାରେ ଉଲ୍ଲେଖ କରି ପାଠକମାନଙ୍କୁ ଜଣାଇ ଦେଇ ପାରିଥିଲେ ।

ଆଉ ଏକ ସମ୍ପୂର୍ଣ୍ଣ ପୃଥକ୍ ସାଧାରଣ ଘଟଣା ଯାହାକି ବିସ୍ତୃତ ଭାବରେ ବର୍ଣ୍ଣନା କରା ଯାଇଅଛି ଏବଂ ଆଉସ୍‌ଭିଦ୍‌ଜ୍‌ର ମୃତ୍ୟୁ ଶିବିର ସହ ଅଭ୍ୟସ୍ତ ବ୍ୟକ୍ତିମାନଙ୍କ ହୃଦୟରେ ଦାରୁଣ ଆଘାତ ଦେଇଅଛି ତାହା ହେଉଛି ସମଗ୍ର ଜିପ୍‌ସୀ କ୍ୟାମ୍ପ୍‌ର ବିଲୋପ ସାଧନ । ନର୍ତ୍ତକୀ ଓ ମାଲା ଏଡେକ୍‌ଙ୍କର ବିବରଣୀଠାରୁ ଏହା ସମ୍ପୂର୍ଣ୍ଣ ପୃଥକ । ତାହା ମହାସଂହାର ବା ଖଣ୍ଡ ପ୍ରଳୟ ସହିତ ତୁଳନୀୟ । ବନ୍ଦୀ ଜିପ୍‌ସୀମାନଙ୍କୁ ସେମାନଙ୍କ ପରିବାର ସହ ରହିବାର ସୁଯୋଗ ଦେଇ ସେମାନଙ୍କ ଭିତରେ ଭୁଲ ଧାରଣା ସୃଷ୍ଟି କରାଯାଇ ଥିଲା ଯେ ସେମାନଙ୍କୁ ଆଉସ୍‌ଭିଦ୍‌ଜ୍‌ରେ ବିଭିନ୍ନ କାର୍ଯ୍ୟରେ ନିୟୋଜିତ କରିବା ପାଇଁ ଏଭଳି ରଖାଯାଇଛି । ଅନ୍ୟ ବନ୍ଦିନୀମାନଙ୍କର ମଧ୍ୟ ସେହିଭଳି ଧାରଣା ହୋଇଥିଲା । ୧୯୪୪ ମସିହା ଅଗଷ୍ଟ କିମ୍ବା ଅକ୍ଟୋବର ମାସରେ ଗୋଟିଏ ରାତି ଭିତରେ ଜିପ୍‌ସୀ କ୍ୟାମ୍ପ୍‌ରେ ସମସ୍ତଙ୍କୁ ଗ୍ୟାସ୍‌ରେ ହତ୍ୟା କରାଯାଇଥିଲା । ୧୯୪୩ ମସିହା ଫେବୃୟାରୀ ୨୬ ତାରିଖରେ ୨୨ ହଜାର ଜିପ୍‌ସୀଙ୍କର ଗୋଟିଏ ଦଳ ଆଉସ୍‌ଭିଦ୍‌ଜ୍‌କୁ ପଠାଯାଇଥିଲା । ସେଥି ମଧ୍ୟରୁ ୧୫ ହଜାର ଜିପ୍‌ସୀଙ୍କୁ ୧୯୪୪ ମସିହା ଅଗଷ୍ଟ ପହିଲା ସୁଦ୍ଧା ହତ୍ୟା କରାଯାଇଥିଲା । ପୂର୍ବ ବର୍ଣ୍ଣିତ ଶେଷ ଦଫାରେ ଯେଉଁ ଇହୁଦୀମାନଙ୍କ ହତ୍ୟା କରାଯାଇଥିଲା ତା'ର ସଂଖ୍ୟାକୁ ନେଇ ଭିନ୍ନ ମତ ରହିଛି । ସାରାଙ୍କ ହିସାବ ଅନୁଯାୟୀ ତାହା ପଚିଶି ହଜାର ହୋଇପାରେ । କିନ୍ତୁ ସାରା ବୋଧହୁଏ କୋଡ଼ିଏ ମାସ ମଧ୍ୟରେ ହତ୍ୟା କରାଯାଇଥିବା ଇହୁଦୀ ସଂଖ୍ୟାକୁ ହିସାବ କରିଅଛନ୍ତି । ମିକ୍ଲୋସ୍ ନାଇବ୍‌ଲୀଙ୍କ ହିସାବ ଅନୁସାରେ (Miklos Nylszil) ଗୋଟିଏ ରାତିରେ ୪,୫୦୦ ମରିଥିବା ବେଳେ ଡାନ୍ୟୁଟା ଚେକ୍ (Danuta Czech) ଏହି ସଂଖ୍ୟାକୁ ୨୮୯୭ ବୋଲି ଲେଖିଛନ୍ତି । ଉପରୋକ୍ତ ଯେଉଁ ଲେଖକମାନେ ଭିନ୍ନ ଭିନ୍ନ ସଂଖ୍ୟା ଉଲ୍ଲେଖ କରିଅଛନ୍ତି ସେମାନେ ସେହି ରାତିରେ ଗ୍ୟାସ୍ ଚୁଲା ଇଞ୍ଜିନ୍‌ର ଶବ୍ଦରୁ ତାହା ଅନୁମାନ କରିଥାଇ ପାରନ୍ତି । ଅକଳ୍ପନୀୟ ଗଣ ସଂହାର ସହିତ ଜିପ୍‌ସୀ ବାଳକର ହୃଦୟ ବିଦାରକ ମୃତ୍ୟୁକୁ ଯୋଡ଼ି ସାରା ତାଙ୍କର ଗାଳ୍ପିକ ପ୍ରତିଭାର ଶ୍ରେଷ୍ଠ ନିଦର୍ଶନ ରଖିଅଛନ୍ତି । ଗ୍ୟାସ୍ ଚୁଲାର ଜଣୈକ କର୍ମଚାରୀ ନିଜେ ସାରାଙ୍କୁ କହିଛନ୍ତି ଯେ ସ୍ୱୟଂ ଡାକ୍ତର ମେଞ୍ଜେଲ୍ ଇହୁଦୀ ଶିଶୁଟିକୁ ଗ୍ୟାସ୍ ଭିତରକୁ ଠେଲି ଦେଇଥିଲା । ଫାନିଆ ଫିନେଲୋନ୍ ''Mangel and the child'' ପୁସ୍ତକରେ ମଧ୍ୟ ସେହି କଥା ଉଲ୍ଲେଖ କରିଛନ୍ତି । ଜିପ୍‌ସୀ ଶିଶୁ ସମ୍ପର୍କରେ ସାରା ଯାହା ଲେଖି ଅଛନ୍ତି ଆମେ ସେଥିରେ ଅଧିକ କିଛି ଯୋଡ଼ିବାକୁ ଚାହୁଁ ନାହୁଁ । ସାରା ଯେଉଁଳି ଗଭୀର ଭାବରେ କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପ୍‌ର ଭୟାବହ ଜୀବନ ବିଷୟରେ ମର୍ମସ୍ପର୍ଶୀ ବର୍ଣ୍ଣନା କରିଅଛନ୍ତି ତାହାକୁ ଅଧିକ ଶକ୍ତି ପ୍ରଦାନ କରିବା ପାଇଁ ଆଲେକ୍‌ଜାଣ୍ଡାର କୁଲେସ୍ୱିଚ୍ (Aleksander Kulisiewicz) ପ୍ରଦତ୍ତ ରୋମାନ୍ ଫ୍ରେଡ୍‌ଲୀନ୍ (Ro-

man Friedlein ) ନାମକ ଜନୈକ କ୍ରାକୋ ଛାତ୍ରର କବିତାଟିକୁ ଉଲ୍ଲେଖ କରୁଅଛୁ:-

ଲୁହା କଣ୍ଟା ତାର ବାଡ଼ର ଅପର ପାର୍ଶ୍ୱରେ- ନୃତ୍ୟରତା ଜଣେ ଜିପ୍‌ସୀ ଝିଅକୁ ଲକ୍ଷ୍ୟ କରି କବିତାଟି ରଚନା ହୋଇଅଛି । ନାଚିବା ଭିତରେ ସେ ଛାତ୍ରଟିକୁ ମାଗୁଛି ଖଣ୍ଡେ ରୁଟି, କିନ୍ତୁ କବି ବିଚରା ସେତେବେଳେ ମରୁଛି ଯକ୍ଷ୍ମା ରୋଗରେ । ମୃତ୍ୟୁ ପୂର୍ବରୁ ସେ ଦେଖିଯାଇଛି ଗ୍ୟାସ୍‌ରେ ଜିପ୍‌ସୀମାନଙ୍କର ଗଣ ସଂହାର ।

I don't have anybody,
I spit blood in my filthy bunk.
Your beautiful feet are dancing a czardas.
Tell me, my God, Why am I croaking here ?
I curse you, Vile Birkenau.
Feet are dancing, dancing.
Death is lulling me to sleep.
You will go into the fire with me, Maryka.

- Elli Pfefferkorn

- David H. Hirsch

ମୋ'ର କେହି ନାହିଁ,
ମୋ'ର ଅପରିଷ୍କାର ବଙ୍କର୍‌ରେ ମୁଁ କରୁଛି ରକ୍ତବାନ୍ତି,
ତୋ'ର ସୁନ୍ଦର ପଦଯୁଗଳ ନାଚୁଛି ତ ନାଚୁଛି ।
କୁହ ମୋତେ ଭଗବାନ୍ ! କାହିଁକି ମୁଁ ଚିତ୍କାର କରୁଛି ଏଠି ?
ରେ ଦୁର୍ଗନ୍ଧ ବର୍କେନ୍ୟୁ, ମୁଁ ଦେଉଛି ଅଭିଶାପ ତୋତେ ।
ପଦଯୁଗଳ ନାଚୁଛି ତ ନାଚୁଛି,
ମୃତ୍ୟୁ ମୋତେ କରୁଛି ନୀରବ,
ରେ ମାରିକା ! ତୁ ବି ମୋ ସହ ଯିବୁ ନିଆଁ ଭିତରକୁ ।

— ଏଲି ଫେପରକ୍ରୋନ୍

— ଡେଭିଡ୍ ଏଚ୍.ହର୍ଚ






ପ୍ରଥମ ମହାଯୁଦ୍ଧ (୧୯୧୪-୧୮) ପରେ ପରାଜିତ ଜର୍ମାନୀକୁ ପୁନର୍ବାର ଏକ ଶକ୍ତିଶାଳି ଜାତି ଭାବରେ ଗଢ଼ିବାରେ ଯେଉଁ ଇହୁଦୀମାନେ ବହୁ ଗୌରବମୟ ଭୂମିକା ଗ୍ରହଣ କରିଥିଲେ ସେହିମାନଙ୍କୁ ହିଟଲର୍ (ଜର୍ମାନୀ ଶାସକ) ପୃଥିବୀ ବକ୍ଷରୁ ନିଶ୍ଚିହ୍ନ କରି ଦେବାକୁ ହୋଇଥିଲା ଦୃଢ଼ ପ୍ରତିଜ୍ଞ ! ନିଜକୁ ଜଣେ ବିଶୁଦ୍ଧ ଆର୍ଯ୍ୟ ଏବଂ ଇହୁଦୀମାନଙ୍କୁ ଘୃଣ୍ୟ ଅନାର୍ଯ୍ୟ ବୋଲି ଘୋଷଣା କରି ଜର୍ମାନୀର ଆତଙ୍କ 'ସ୍ୱସ୍ତିକ' ପ୍ରତୀକଯୁକ୍ତ ନାତ୍‌ସୀ 'ଏସ୍.ଏସ୍.ମ୍ୟାନ'ଙ୍କ ଦ୍ୱାରା ଲକ୍ଷ ଲକ୍ଷ ଇହୁଦୀଙ୍କୁ ନିର୍ମମ ଭାବେ ହତ୍ୟା କରିଛି । ୬ ବର୍ଷ (୧୯୩୯-୧୯୪୫) କାଳ ହିଟଲର ଅଧିକୃତ ରାଷ୍ଟ୍ରମାନଙ୍କରେ ସେହି ଇହୁଦୀ ସଂହାର ଲୀଳା ସଙ୍ଗଠିତ ହୋଇଛି । ସ୍ୱଳ୍ପ ସମୟ ଓ ସ୍ୱଳ୍ପ ବ୍ୟୟରେ ବହୁ ସଂଖ୍ୟକ ଇହୁଦୀଙ୍କୁ ହତ୍ୟା କରିବା ପାଇଁ ବିଭିନ୍ନ ପରୀକ୍ଷା ନିରୀକ୍ଷା ହୋଇ ଶେଷରେ ଗ୍ୟାସ୍ ଚ୍ୟାମ୍ବରରେ ମାରିଦେଇ ସେହି ମୃତ ଓ ମୁମୂର୍ଷୁମାନଙ୍କୁ ବିଦ୍ୟୁତ୍ ଚୁଲାରେ ଜଳାଇ ଦିଆଯାଇଛି । ସେହି ଉପାୟରେ ଏକ ସଙ୍ଗେ ହଜାର ହଜାର ଲୋକଙ୍କୁ ଧରାପୃଷ୍ଠରୁ ନିଶ୍ଚିହ୍ନ କରି ଦିଆଯାଇଛି । ମାନବ ସମାଜ ଇତିହାସରୁ ସେହି ଜଘନ୍ୟତମ ଅପରାଧକୁ ଲୁଚାଇ ରଖିବାକୁ ନାତ୍‌ସୀ ସରକାରଙ୍କ ସମସ୍ତ ଉଦ୍ୟମ ସତ୍ତ୍ୱେ ତାହା ଲୁଚି ପାରି ନାହିଁ ।

ଲୋହିଆ ଏକାଡେମୀ ଟ୍ରଷ୍ଟ